ପଦ୍ମଲଭ ରାଜାଙ୍କୁ କହିଲେ ଯାଇଂ ସ୍ଵର
ସ୍ୱେ ଦେବ ନାଶ ଗଲା ତୋହୋର ସ୍ୱୟମ୍ବର । ୪୯୯ ।

ଆମ୍ଭେ ଅନେକ ଦେଶ ଦେବ ନିମନ୍ତେ ଗଲୁଂ
କୁଣ୍ଡଳ ଦେଶେ ଯାଇଂ ପ୍ରବେଶ ହୋଇଲୁଂ । ୫୦୦ ।

ସାମ୍ୱେନ୍ଦ୍ରଙ୍କୁ ନିମନ୍ତ୍ରଣ କରନ୍ତେ ମାଳା ଦେଇ
ଶ୍ରେଷ୍ଠ ବୋଇଲେ ଯେ ଅମ୍ଭନ୍ତ ବସାଇ । ୫୦୧ ।

ଅମ୍ବିକା ଅମ୍ବାଳିକା ଚନ୍ଦ୍ର ବିଚିତ୍ରଙ୍କୁ ଦିଲ
ଆବର କନ୍ୟାଏ ଅଛୁ ଯେବେ ମୋତେ କମ୍ପାଇଂ ନ ବଣିଲ । ୫୦୨ ।

ଆହୋ ସ୍ଵରଗଣେ ତୁମ୍ଭେ ବେଗେ କହ ଯାଇଂ
ଅମ୍ବା କନ୍ୟାକୁ ସେ ଅମ୍ଭକୁ ଦେବାର ପାଇଂ । ୫୦୩ ।

ଶୁଣିଣ ବିରସ ଯେ ହୋଇଲେ ନୃପତି
ଆଗହୁଂ ନ ଫୁଟାଅରେ ଗୋପ୍ୟାନ କର ଝାଟି । ୫୦୪ ।

ଲକ୍ଷେ ରାଜା ବିଜଏ କରିଛନ୍ତି ସ୍ୱୟମ୍ବରେ
ଅନେକ ଆଶ୍ରମେ ବସିଛନ୍ତି ନୃପବରେ । ୫୦୫ ।

ଯତ୍ନେ ଆଣିଲଇଂ ସ୍ୱୟମ୍ବର ନିମନ୍ତେ
ନାସ୍ତି କଲେ ରାଜାଏ ଜୀଆଇବେ କି ମୋତେ । ୫୦୬ ।

ଶୁଣିଣ ସ୍ଵରଗଣ ହୋଇଲେ ମନେ ତୁଷ୍ଟି
ବହନ କରି ଆଣିଲେ ସଭାକୁ କନ୍ୟା ଗୋଟି । ୫୦୭ ।

କନ୍ୟାକଇ କହନ୍ତି ସ୍ୱୟମ୍ବର ବିଧାନ
ମାଳା ଦେଇ ବର ଗୋ ଯାହାକୁ ତୋହର ମନ । ୫୦୮ ।

ମା ଗୋ ରାଜାନ୍ତ ବରିଲୁ ତୋହୋର ନିମନ୍ତେ
ବର ବେଶ ହୋଇ ବସିଲେ ନରନାଥେ । ୫୦୯ ।

ଏସନେକ ସମସ୍ତେ ଭୀଷ୍ମଙ୍କର ଦୂତ
ମନୁମଥ ସେନାପତି ଘେନି ଶତେ ରଥ । ୫୧୦ ।

ସ୍ୱୟମ୍ବର ଥାନେ ପ୍ରବେଶ ମନୁମଥ
ବୋଲନ୍ତି ସ୍ଵରଗଣେ ଆମ୍ଭେ ଭୀଷ୍ମଙ୍କର ଦୂତ । ୫୧୧ ।

ଯେବଣ କନ୍ୟାକୁ ରାଜା କରିଛୁ ସ୍ୱୟମ୍ବର
ଅମ୍ବା କନ୍ୟାକୁ ତୁ ଭୀଷ୍ମଙ୍କୁ ପ୍ରଦାନ କର । ୫୧୨ ।

ପଦ୍ମଲଭ ବୋଇଲେ ସେ ଗାଙ୍ଗେୟ ମହାକ୍ଷେତ୍ରି
ଆଗହୁଂ ଜାଣିଲେ କମ୍ପା ମୁଂ ସ୍ୱୟମ୍ବର କରନ୍ତି । ୫୧୩ ।

ଦେଖ ସ୍ୱେବେ ସ୍ୱୟମ୍ବର କଲଇଁ ଲକ୍ଷେ ରାଜା ଆଣି
ସେହ୍ବା ରାଜକ୍ରିକ ପାଶରେ ଏହୁକ୍ଷଣି । ୫୧୪ ।
ମନୁମଥ ବୋଇଲା ଶୁଣ ହୋ ରାଜାମାନେ
ତୁମ୍ଭେ ଯେ ଅଛିଲ ସ୍ୱୟମ୍ବର ବିଧାନେ । ୫୧୫ ।
ଏ ପଦ୍ମଲଭ ରାଜାର ଦେନ କୁମାରୀ
ଚନ୍ଦ୍ରବଦନୀ ବିଚିତ୍ରବଦନୀ ଦେବ ଶ୍ରୀଇଙ୍କି ପ୍ରଦାନ କରି । ୫୧୬ ।
ଅମ୍ଭେ କନ୍ୟାକରି ଶ୍ରୀକୃଷ୍ଣଙ୍କରି ଦେବ
ଏ କନ୍ୟାକରି ପ୍ରଦାନ ହୋଇବେ ଗାଙ୍ଗେବ । ୫୧୭ ।
ତୁମ୍ଭେ ହୋ ଏଥିର ସମସ୍ତ ରାଜାଗଣ
ଶ୍ରୀକୃଷ୍ଣ ଛଳେ ଆସି କରିବେ ଏହୁକ୍ଷଣ । ୫୧୮ ।
ଯେ ଅବା ତୁମ୍ଭେମାନେ କରିବ ଅବଗ୍ୟାଂ
ଶ୍ରୀକୃଷ୍ଣଙ୍କର ନେକଲୁ ତୁମ୍ଭର କସ ପ୍ରତଗ୍ୟାଂ । ୫୧୯ ।
ରାଜାଗଣ ଶୁଣିଣ ସମସ୍ତେ ଭୟ କଲେ
କୃଷ୍ଣଙ୍କର ଆଗତ ଶୁଣି ସଭାରୁ ଉଠଗଲେ । ୫୨୦ ।
ସମସ୍ତେ ବୋଇଲେ ପଦ୍ମଲଭକରି ରାଜ
ଆମ୍ଭେ ଯାଉଅଛୁଂ ଯେ ଯାହା ଭୁବନକରି । ୫୨୧ ।
କନ୍ୟା ପ୍ରଦାନ ତୁ କର ଶ୍ରୀକୃଷ୍ଣଙ୍କି
ଟାଙ୍କବର ଭୟ ଯେ ଲଗିଲା ଅମ୍ଭଙ୍କି । ୫୨୨ ।
ପଦ୍ମଲଭ ବୋଇଲା ମୁଁ ଯେ ବରିଲା ତୁମ୍ଭକୁ
ଅବଶ୍ୟ ପ୍ରଦାନ କରିବି ଦୋହିତ । ୫୨୩ ।
ରାଜାଏ ବୋଇଲେ ହୋ କାହାର ସାହସ
ଜଳନ୍ତା ଅନଳେ କେ ଅବା ଦେବ ଝାସ । ୫୨୪ ।
ଏମନ୍ତେ ବୋଲି ରାଜାଙ୍କୁଇ ଲଗିଲା ବଡ଼ ଭୟେ
ସ୍ୱୟମ୍ବର ଭଗ୍ନ କରି ପଳାଇଲେ ସର୍ବ ରାୟେ । ୫୨୫ ।
ଅନେକ ଅପମାନ ପାଇଲେ ନୃପତି
ସଭା ଭଗ୍ନ କରି ପଳାଇଲେ ମହୀପତି । ୫୨୬ ।
ପଦ୍ମଲଭ ରାଜା ଅନେକ ସାନନ୍ଦେ
ଶ୍ରୀକୃଷ୍ଣଙ୍କି କନ୍ୟା ଦେବି ବୋଇଲେ ଆନନ୍ଦେ । ୫୨୭ ।
ଗଙ୍ଗାର ନନ୍ଦନ ହୋଇବେ ମୋହର ଜ୍ୱାଇଁ
ସେହିହାଙ୍କ ସରିଗ୍ୟ ପାଇବି ଆଉ କାହିଂ । ୫୨୮ ।

ଦୋହିତାଙ୍କୁ କୋଳେ ଧରି ବୋଲଇ ପଦ୍ମନାଭ ରାଜନ
ଅନେକ ପୁଣ୍ୟ ତୋହର ସାଧୁ ଜୀବନ । ୨୯ ।
ଗଙ୍ଗା ନନ୍ଦନ ହୋଇବେ ତୋହୋର ବର
ପଞ୍ଚୁ କଣ୍ଟକରେ ଯେ ଅଟଇ ଠାକୁର । ୩୦ ।
ଅମରବର ମୁରୁ ଯାହାର ଇଚ୍ଛା
ଜଗତଜିତା ନାଥ ଅଭୟେ ବରଦାତା । ୩୧ ।
ଅନେକ ଉଚ୍ଛବ ଯେ କରଇ ରାଜସାଇଂ
ମନୁମଥ ସେନାପତିଙ୍କ ଚନ୍ଦ୍ରବ୍ରତ ବୋଲଇ । ୩୨ ।
ଆହୋ ବନ୍ଧନ ହୋଇ କହ ସାମନ୍ତେନ୍ଦ୍ରଙ୍କୁ
ସତ୍ୟ କଲଇଂ କନ୍ୟା ଦେବଇଂ ଭୀଷ୍ମଙ୍କୁ । ୩୩ ।
ପ୍ରତକ୍ଷେ ଦେଖିଲୁନ ଭାଞ୍ଜିଲ ସୟେମ୍ବର
ଭୀଷ୍ମେ ଦେବଇଂ ଦୋହିତା ସତ୍ୟ ସତ୍ୟ ମୋହୋର । ୩୪ ।
ଆଗ୍ୟାଂ ପ୍ରମାଣେ ଗଲେକ ଦୂତପତି
ଭୀଷ୍ମଙ୍କ ଗୃମୁରେ ଯାଇଂ ପ୍ରବେଶ ତଡ଼ତି । ୩୫ ।
ଭରପର ଯୋଡ଼ି ସେନାପତି ବୋଇଲ
ତୋହୋର ଆଗ୍ୟାଂସେ ଦେବ ସୟେମ୍ବର ଭାଞ୍ଜିଲ । ୩୬ ।
ଅନେକ ହରଷ ରାଜା ହୋଇଲେ ତୋର ନାସେଂ
ବହୁତ ଆନନ୍ଦେ ଅନେକ ଉଛବ କରାସେ । ୩୭ ।
ସ୍ୱାମି ବନ୍ଧନ ଯିବା ସାଜ ସାଜ ସଇନ
ପ୍ରୋହିତ ହକାରଣ ଅନୁକୂଳ ଘେନ । ୩୮ ।
ମକର ଶୁକ୍ଲ ତିଥି ସପତମୀ
ଅନୁକୂଳ କଲେ ସେ ଦିନକୁ କୁରୁରାଜ ସ୍ୱାମି । ୩୯ ।
ସ୍ୱରଗଣେ କହିଲେ ପଦ୍ମନାଭ ଆଗେ
ମଙ୍ଗଳ ଘେନିଲେ ରାଜା ଅମୃତର ଯୋଗେ । ୪୦ ।
ବଟବେଶ ହୁଅନ୍ତି ଭୀଷ୍ମ ମାହାରଥି
ଗଙ୍ଗାର ନନ୍ଦନ ଅନେକ ବିଦ୍ୟା ଯେ ଭଗତି । ୪୧ ।
ଅଣଖଡ଼ି ଶିଖିଲେ ଅକ୍ଷର ଲେଖନ
ଗୁରୁ ବହୁନେ ଶିଖିଲେ ଅନେକ ବିଦ୍ୟାମାନ । ୪୨ ।
ମନ୍ତ୍ରେଣ ଶାସ୍ତ୍ରେଣ ହୁଅନ୍ତି ଭଗତି
ଅହେ ଅଣଗୁରୁ ବିଦ୍ୟା ଶିଖିଲେ ଭୀଷ୍ମ ମାହାରଥି । ୪୩ ।

ବିଷ୍କ ଯୋଗ ଯେନ ହଳ ଦ୍ୱୋଅନ୍ତି କୃତ୍ତିକାରେ
ଶୁଭ ମଙ୍ଗଳ ଯୋଗ ଦିଅନ୍ତି ପାରେଶ୍ୱରେ । ୫୪୪ ।
ସ୍ୱପ୍ନେ ଅଣାଇଲେ ପ୍ରଶୁରାମ ସନ୍ଧତେ
ହଳରାମ ବଳରାମ ରଘୁରାମ ସୁଶଭ୍ରାଏ । ୫୪୫ ।
ବିଶ୍ୱାମିତ୍ର ଆଦିକରି ସକଳ ବ୍ରହ୍ମଋଷି
ଯଦୁରାମ ସନ୍ଧତେ ପ୍ରବେଶ ବାରୁଣାବନ୍ତି ପୃଷ୍ଠ । ୫୪୬ ।
କାଶୀରାଜା ନର୍ତ୍ତର ଗଣପତି
ଶରୂପନ ସଦାନନ୍ଦ ସାରବର ଚନ୍ଦ୍ରବ୍ରତ । ୫୪୭ ।
ନୀଳସେନ ମାଧବସେନ ଶିକଣ୍ଠିସେନ ରାସ୍ତେ
ବନ୍ଧୁ ଯୋଗେ ଯେ ଯାଦ୍ୱାର ସନ୍ୟ ଘେନି ଆସ୍ତେ । ୫୪୮ ।
ଏସନେକ ସମ୍ଭଟେ ବାଜଇ ସାରତୁର
ଅନେକ ଥାଠ ସନ୍ୟ ମାଦ୍ୱା ହମ୍ଭର । ୫୪୯ ।
ଅନେକ ଅପଛରା କରନ୍ତି ନୃତ୍ୟଗୀତ
ମଙ୍ଗଳ ଧ୍ୱନି କରି ଡାକନ୍ତି ଚଣ୍ଡିପୁତ୍ର । ୫୫୦ ।
ରଥ କୋଟିଏ ଗଜ ପାଞ୍ଚ ଖର୍ବ
ବାର ପରାର୍ଦ୍ଧ ଖୁରୁସାଣି ସ୍ୱେଖାର ତୁରଙ୍ଗ । ୫୫୧ ।
ଛଦଣ୍ଡି ପାଟଛତ୍ର ଆଳମ୍ବୁ ପାଞ୍ଚ ଲକ୍ଷି
ଉଭାରଲେ ସନ୍ୟ ଯେଣ୍ଟେ ଗଗନେ ସୂର୍ଯ୍ୟ ନ ଦିଶି । ୫୫୨ ।
ଟମକ ନିଶାଣ ମର୍ଦ୍ଦଳ ତୂରି ଶଙ୍ଖ ନାଦେ
ଆକାଶ ଉଛୁଳଇ ଗହଳ ଶବଦେ । ୫୫୩ ।
ଲକ୍ଷେକ ଗୋଦୋହନ କଲେ ଶିବ ଆଳେ
ବ୍ରାହ୍ମଣ ତିନି ଲକ୍ଷ ଜପନ୍ତି ମନ୍ତ୍ରବଳେ । ୫୫୪ ।
ଦେବୀଙ୍କି ଅନେକ ଶୀତଳ ଯୋଗାଡ଼ ପୂଜା
ପୋଡ଼ୁହ୍ଲ ମେଷ ଛାଗଳ ଦିଅନ୍ତି ବଳି ସ୍ୱେଜା । ୫୫୫ ।
ରୁଦ୍ର ଶାନ୍ତି ମନ୍ତ୍ର ଯେ ପଢ଼ନ୍ତି ଗଣକେ
ସିଂହଦ୍ୱାରେ ଅଷ୍ଟ ଛତ୍ର ଦିଅନ୍ତି ଅନେକେ । ୫୫୬ ।
ମୃଦଙ୍ଗ କଂସାଳ ତାଳ ବୀରବେଣୀ
ସହସ୍ରଗୁଣା ବାଦ୍ୟେଂଶି ଭିର ଦ୍ୱରଷ ରାଦ୍ୟେଣି । ୫୫୭ ।
ଭିତରେ ଦେବ ପୂଜା ସାରଣ ରାଙ୍ଗବେ
ବ୍ରାହ୍ମଣ ବରଣ ପୂଜା କରନ୍ତି ସମସ୍ତ ଦେବେ । ୫୫୮ ।

ବର ବେଶ ହୋଇଣ ସେ ଧବଳାଙ୍ଗୀର ବଳା
ଅନେକ ସ୍ତୁତି କରନ୍ତି ଦେବୀ ସର୍ବ ମଙ୍ଗଳା । ୫୫୯ ।
ନମୋ କାତ୍ୟାନ ଗୋ କୈଳାସ ବାସି
ଦେବଙ୍କର ତେଜ ଘେନ ଯାହାର ଶରୀର ପରକାଶି । ୫୬୦ ।
ସହସ୍ର ଭୁଜେ ତୋହୋର ସହସ୍ରେ ଆୟୁଧ
ମାନେମା ରୂପ ଧରି ଅସୁରନ୍ତ କଲୁ ବଧ । ୫୬୧ ।
ଅଭସ୍ତେ ପିଙ୍ଗଳାକ୍ଷୀ ଅସୁର ଗର୍ବ ଗଞ୍ଜି
ନବକୋଟି କାତ୍ୟାମା ଯାହାର ଶରୀରୁ ଉପୁଜି । ୫୬୨ ।
ଅଘୋର ମୂରତି ଗୋ କହକହମୁଖି
ଆକାଶ କ୍ଷେପଣି ଗୋ କମ୍ପିତ ବେନ ଆଖି । ୫୬୩ ।
ଡବ ଡବ ବାଦ୍ୟ ଶ୍ରୀଭୁଜେ ଡମ୍ବରୁ
ଶମଶାନ ବାସି ଗୋ ଅସ୍ଥିମାଳ କଣ୍ଠେ ଭରୁ । ୫୬୪ ।
ହାଣ ହାଣ ମାର ମାର ଡାକେଶ୍ୱରୀ ଡାକ ତୋଳି
ତାମସେ ରଣରଙ୍ଗେ ନାଚନ୍ତି କୁତୋହଳ । ୫୬୫ ।
ଛବସନସାହ୍ନ ଗୋ ତମ ତମ ମାତାଙ୍ଗୀ
ରସାଣ ଝଲକଇ ବିହଡ଼ ଦାଢ଼ ଲାଗି । ୫୬୬ ।
ଆକାଶେଣ ଓଷ୍ଠ ଗୋ ପାତାଳେଣ ହୃଷ୍ଟି
ବାହାନ ଇଚ୍ଛାଲୁ ଗୋ ଗଜ ରିପୁ ପିଠି । ୫୬୭ ।
କାଳକାମ ନନ୍ଦା ଗୋ ମୋହନ କାମସେଣି
ଉରଗଭରହାର ବାହୁଟି କଙ୍କଣି । ୫୬୮ ।
ଘଣ୍ଟ କୁଣ୍ଡଳୀ ଗୋ ଘର୍ଘର ଘୁମୁରି
ବକ୍ଷ ସ୍ଥଳେ ଲମ୍ବଇ ମନ୍ଦାର ପୁଷ୍ପମାଳା । ୫୬୯ ।
ଚଣ୍ଡପୁଟ ଖଣ୍ଡପୁଟ ନୃତ୍ୟରଙ୍ଗେ ଖେଳି
ଡାକେଣୀ କ୍ଷେପଣୀ ଗୋ ରଣରଙ୍ଗେ କୁତୋହଳୀ । ୫୭୦ ।
ଚନ୍ଦ୍ରଘଣ୍ଟା ମହାମାୟା ଵିଜୟା ଵିରୂପା
ଟହ ଟହ ହାସି ଗୋ ପିଙ୍ଗଳାକ୍ଷି ମାତା । ୫୭୧ ।
ଯୋଗେଣ ଯୋଗେଶ୍ୱରୀ ଗୋ ଜଗ୍ଗ ଗୋସାମଣି
ଆପାଦ ଖଣ୍ଡଣି ଗୋ ସୁରଲୋକ ରକ୍ଷଣି । ୫୭୨ ।
ଶ୍ରୀ ଚଣ୍ଡୀ ସାରେଳା ଶ୍ରୀ ମଙ୍ଗଳା ପରସାଦେ
ଶ୍ରୀ ମହାଭାରଥ ଆଦ ପର୍ବ ସବାଦେ । ୫୭୩ ।

ସର୍ବ ମଙ୍ଗଳା ନାମ ଗୋଟି ସତ ଲୟେ କର ଧ୍ୟାୟେ
ଶୁଦ୍ରମୁନି ସାରୋଳା ଦାସକୁ ପ୍ରସନ ହୋଅସି ଗୋ ମାୟେ । ୫୭୪ ।

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଦେବୀଙ୍କି ଅନେକ ସ୍ତୁତି କଲେ ଗାଙ୍ଗେବ ମହାକ୍ଷେତ୍ରି । ୫୭୫ ।

ବାଞ୍ଛା କରନ୍ତି ଗଙ୍ଗାର ନନ୍ଦନ ମାହାରଥୀ
ବଶ୍ୱକୁ ଅନୁକୂଳ ମୋତେ ଦେବା ଗୋ ମାତା । ୫୭୬ ।

ଯେ ତୋତେ ଆରାଧନା କରଇ ଅବଶ୍ୟ କରୁ ରକ୍ଷା
ଭକତବତ୍ସଳ ଗୋ ପୂରଅ ମନବାଞ୍ଛା । ୫୭୭ ।

ଶିରେଣ ରତ୍ନମଣି ମୁକୁଟ ଝଳହଳ
ହୃଦେଣ ଭୂଷଣ କଣ୍ଠେଣ ରତ୍ନମାଳ । ୫୭୮ ।

ତାଡ଼ ତୋଡ଼ର ସିମନ୍ତନୀ କଣ୍ଠେ କର୍ଣ୍ଣାଞ୍ଚଳ
ଖେଳନ୍ତି ସିଙ୍ଘ ଜାଣି ଦଣଇ ଗଙ୍ଗାର ବାଳ । ୫୭୯ ।

ନୟନେ ଅଞ୍ଜନ ପାଦରେ ଅଳତା
ଦିବ୍ୟ ବସନ ଭୂଷଣ ହୃଦେ ରତ୍ନସୂତା । ୫୮୦ ।

ଦଧିମାଛ ଅନୁକୂଳ ଶୁଭ ଯୋଗେ ତୋଳ
ଗଣିକା ଗଣମାନେ ଦିଅନ୍ତି ହୁଳହୁଳି । ୫୮୧ ।

ବେଜ ଲକ୍ଷ ଭ୍ରମର ଡାଳନ୍ତି ସନ୍ନିଧାନେ
ବଜାୟେ ଗାଙ୍ଗେବ ଯାଇଂ ସାମ୍ୟେନ୍ଦ୍ରନୁଙ୍କ ଭୁବନେ । ୫୮୨ ।

ପାଦେ ପାଦ୍ୟ ଅର୍ଘ୍ୟ ଦେଇଣ ପ୍ରଣାମି
ବଶ୍ୱ କାର୍ଯ୍ୟ କଇ ଆଗ୍ୟାଂ ଦେବା ଦେବ ସ୍ୱାମୀ । ୫୮୩ ।

ଦଧିବାମନ ସ୍ୱମର ଅନୁକୂଳ କରିବା
ପଦଲବ୍ଧ ରାଜା ରାଜ୍ୟକୁ ଦେବ ଯିବା । ୫୮୪ ।

ଭୀଷ୍ମଙ୍କର ମୁଖୁ ଏସନ ବାକ୍ୟ ଶୁଣି
ସାଏନ୍ତ୍ରନୁ ଅମ୍ଭୀଭୂତ କଷ୍ଟଳ ଅସ୍ପାଜାଣି । ୫୮୫ ।

ହେଟମାଥ ହୋଇଣ ବସିଲେ ତପନଷ୍ଟି
ବେନ ଲୋଚନୁ ହୋୟେ ଅଶ୍ରୁଜଳ ବୃଷ୍ଟି । ୫୮୬ ।

ପିତାର କ୍ରୋଧ ଦେଖି ପଶ୍ଚରନ୍ତି ମାହାରଥୀ
ଆନନ୍ଦେ ଅଶ୍ରୁଜଳ କ ଝଷାଦେ କ୍ରୋଧ ପିତା । ୫୮୭ ।

ସାଏନ୍ତ୍ରନୁ ବୋଇଲେ ଭୀଷ୍ମଙ୍କ ମୁଖ ଚାହିଂ
ବାବୁ ଆନନ୍ଦ ହୋଇଲି ତୋହୋର ମଙ୍ଗଳ କାର୍ଯ୍ୟ ପାଇଂ । ୫୮୮ ।

ବିଷାଦ ହୋଇଲା ପୂର୍ବର କଥା ଜାଣି
ଚକ୍ଷୁକେ ଆନନ୍ଦେ ଚକ୍ଷୁକେ ବିଷାଦେ ବହଇ ପାଣି । ୫୮୯ ।
ଭୀଷ୍ମ ବୋଇଲେ ଆନନ୍ଦ ହୋଇଲ ମୋତେ ଦେଖି
ବିଷାଦ ହୋଇଲ କର୍ମ ଧର୍ମ ଉପେଖି । ୫୯୦ ।
ସାନ୍ତନୁ ବୋଇଲେ ବାବୁ ତୋହର ମାତା ଗାଙ୍ଗୀ
ତୋତେ ନାଶ କରନ୍ତେ ଆମ୍ଭେ ହୋଇଲୁଂ ବଡ଼ ଘରି । ୫୯୧ ।
ଘରେ ତାଙ୍କୁ ଆମ୍ଭେ ବୋଇଲୁଂ ଭୁଞ୍ଜନା
ନସନ୍ତୁ ଯାଉଅଛୁ ସେ ଅନାଦ ଅପର୍ଣ୍ଣା । ୫୯୨ ।
ଆମ୍ଭେ ଯାଇଂ ଗଙ୍ଗାଙ୍କୁ କୋଳ କଲୁଂ
ପ୍ରସବ କର୍ମ ତୁ ପୁତ୍ରକୁ ଉପେଖିଲୁ । ୫୯୩ ।
ଗଙ୍ଗା ବୋଇଲା ମୁଁ ତୋହୋର ପରମ ଗୁରୁ
ବ୍ରତ ପୂଣଲା ଆବର କର୍ମ ମୋତେ ଧରୁ । ୫୯୪ ।
କୋପେ ଶାପ୍ୟ ମୋତେ ଦେଲାକ ଧବଳୀ
ଏ ପୁତ୍ରର ପୁତ୍ର ହାତେ ହୋଅ ବିଷାବଳ । ୫୯୫ ।
ବାବୁ ତୁ ଯେବେ ଜନ୍ମ ହୋଇବୁ ରେ ନନ୍ଦନ
ଅବଶ୍ୟ ପୁତ୍ର ତୋର ହୋଇବ ଉତପନ । ୫୯୬ ।
ତୋର ମାତା ଶାପ୍ୟ ଦେଇଅଛୁ ମୋତେ
ଅବଶ୍ୟ ଶିର ଛେଦନ ହୋଇବ ତୋର ପୁତ୍ର ହାତେ । ୫୯୭ ।
ପିତାର ବଚନ ଶୁଣି ଭୀଷ୍ମ ମୁକୁଟ
ଧାଡକାରେ କାଢ଼ି ପକାଇଲା ମଥାର ମୁକୁଟ । ୫୯୮ ।
ବରବେଶ ଛାଡ଼ିଣ ବସିଲା ମାହାତମା
ବାଦ୍ୟମାନ ରୁହାଇ ବିଷାଦ ସର୍ବ ଆତ୍ମା । ୫୯୯ ।
ପ୍ରଦ୍ୟୁମ୍ନ ବୋଇଲେ ଭୀଷ୍ମ ତୁ କର୍ମ ବସିଲୁ
ବରବେଶ ଛାଡ଼ି କର୍ମ ମୁକୁଟ ପକାଇଲୁ । ୬୦୦ ।
ଗାଙ୍ଗେବେ ବୋଲନ୍ତି ଶୁଣ ଯଜଦେବେ
ମୋହୋର ଜନ୍ମ ବିଭା ପିତାର ଅଭାବେ । ୬୦୧ ।
ଅନେକ ବାଗେ ପିତା ଅରଜଇ ପୁତ୍ରେ
କୁଳବଂଶ ରକ୍ଷା ହୋଇବାର ନିମିତ୍ତେ । ୬୦୨ ।
ମୋହୋର ପୁତ୍ର ହୋଇଲେ ଯେବେ ପିତା ନାଶ ଯିବ
ସେ ବିଷ୍ଟରେ ମୋର କସ ଧର୍ମ ଉପୁଜିବ । ୬୦୩ ।

ସୁତ ସେ ରକ୍ଷା କରଇ ନିଜ ବଂଶ
ମୋହୋର ସୁତ ଯୋଗେ ସେବେ ସାପେଂକ୍ଷନ୍ତ ପ୍ରାପ୍ତେ ପିତା ପିବେ ନାଶ ।୭୦୪ ।
ଆବର ଶାସ୍ତ୍ରେ ମୋର କହ ପ୍ରୟୋଜନ
ଗ୍ରହିଲ ମାୟାମୋହ ନୋହୁ ନୋହୁ ସନ୍ତାନ । ୭୦୫ ।
ତାହାଣ ବ୍ରତେକ ଶଙ୍ଖେ ଧଳ ନଳ ଲଚ
ଦାସ୍ୟ ସନ୍ଧଣଲେ ଭୀଷ୍ମ ସଂକଲ୍ପ କଣ୍ଠଇ । ୭୦୬ ।
ଶୁଣର ଆଇ ମୋହୋର ଯେତେ କାଳ ପଣଯନ୍ତ
ସତ୍ୟ ସତ୍ୟ ତ୍ରିଚାର ଅଲଙ୍ଘିତ ନିଅମ ମୋତେ । ୭୦୭ ।
ନୋହୁ ନୋହୁ ସ୍ତ୍ରଶଯା ସୁତ ସନ୍ତାନ ନୋହୁ
ଯେମନ୍ତେ ପିତା ମୋହୋର ଚିରକାଳ ବୃଦ୍ଧ ଥାନ୍ତୁ । ୭୦୮ ।
ଉପେକ୍ଷା କଲେ ମୋହ ସଙ୍ଗଣ କଲେ ଦାସ୍ୟ
ଯାବତ ଥିବ ଚନ୍ଦ୍ର ପୃଥିବୀ ଧରାକଣ୍ଠ । ୭୦୯ ।
ଏମନ୍ତେ ଦୃଢ଼ ବ୍ରତ ଭୀଷ୍ମେ କଲେ ସତ୍ୟ ପୁଣି
ପରମ ଯୋଗେଶ୍ୱର ହୋଇଲେ ଭୀଷ୍ମ କ୍ଷେତ୍ରି ଚୂଡ଼ାମଣି । ୭୧୦ ।
ଦେଖାଉରେ ବାଛିତା ଦଲେ ପଦ୍ମଦଳ ଦେଶେ
ଭୀଷ୍ମେ ଶଜନ କର ଆସୁଛନ୍ତି ବରବେଶେ । ୭୧୧ ।
ବରଣ କାଳେ ଯେତେ ସୁବ୍ରତଗଣ ଆସି
ଅମ୍ବା କନ୍ୟା ଆଗରେ ବଚନ ପ୍ରଣଂସି । ୭୧୨ ।
ଧନ୍ୟ ସାଧବ ପୁଣ୍ୟ କଣଥିଲୁ ଆଈ
ଗଙ୍ଗାନନ୍ଦନ ଭୀଷ୍ମ ହୋଇବେ ତୋର ସାଇଁ । ୭୧୩ ।
ଏ ତୋହର ଜୀବନ ସାର୍ଥକ କି ଧନ
ସୁଲକ୍ଷଣ ଉପୁଜିଲୁ ରୂ ଅମୃତ ଯୋଗ ଯେନ । ୭୧୪ ।
ଅନେକ ଆନନ୍ଦେ ସେ ଉତ୍ସବ ସ୍ୱୟେ କଣ
ଶ୍ରୋଜନ ଯୋଗାଡ଼ ସଜ୍ଜୁରୁ ସମ୍ଭାର ଆଦକଣ । ୭୧୫ ।
ରଥଗଜ ପାଦାତ୍ର ସେନ ଅନେକ କୋଟି
ସମସ୍ତେ ପଦ୍ମନାଭ ରାଜା ଆଦଭ ପାଟଗ୍ରହି । ୭୧୬ ।
ଦଣ୍ଡ ସେନ ସ୍ୱୟେ ସୁଥ ପୁବ ଆସନ୍ତେ
ତ୍ରିପୁର ନଦୀ ଉତ୍ତର ତୀରେ ରହନ୍ତେ । ୭୧୭ ।
ଭୀଷ୍ମଙ୍କର ତହିଁକ ସେ ଦୂତ ଯାଇଥିଲେ
ବସ୍ତ୍ରଂସ୍ୱେ ହୋଇଅସି ପଦ୍ମନାଭକୁ କହିଲେ । ୭୧୮ ।

ସ୍ୱାମି ଶ୍ରେଷ୍ଠ ହାଦେ ବନ୍ଧ ହୋଇ ଅଛୁଥିଲେ
ଆସନ୍ତେ ସାହେଂତନୁ ପିତା ନିବୋଧିଲେ । ୬୧୯ ।
ଯୋଗାଡ଼ମାନଙ୍କୁ ଠାବେ ଠାବେ ଲୁହାଇଲେ
ବରଯାତ୍ରମାନେ ସବୁ ବାହୁଡ଼ିଣ ଗଲେ । ୬୨୦ ।
ପଦ୍ମଲଭ ବୋଇଲା ମୁଁ କେବଣ ଦୋଷୀ
କର୍ମା ନିବାଧିଲେ ସାହେଂତନୁ ମହର୍ଷି । ୬୨୧ ।
ବାହୁଡ଼ିଲ ନରନାଥ ଆପଣା ନିଜ ପୁରୀ
ସୁରଗଣ ବଚନକୁ କେହ୍ନେ ସଂପ୍ରତେ ନ କରି । ୬୨୨ ।
ହେ ଜନକ ବାଟ ସ୍ୱର୍ଦ୍ଧଂଲ ନରପତି
ସେହି ଯୋଗାଡ଼ମାନ ରଖିଲେ କନ୍ୟା ଜାତ । ୬୨୩ ।
ଜନାସ୍ୱର ବାଟ ସ୍ୱର୍ଦ୍ଧଂ ରାଜା ବିମୁଖ ହୋଇଲା
ଜୟେଲଭ ବୋଲି ତାର ପୁତ୍ରକୁ ବରଗିଲା । ୬୨୪ ।
ସେଥିର ତଦନ୍ତ ବାବୁ ବୁଝିସିରେ ଯାଇଂ
ଶ୍ରେଷ୍ଠେ ବନ୍ଧ ହୋଇ ନଇଲେ କିସପାଇଂ । ୬୨୫ ।
ରାଜାର ବଚନେ ସେ ଗଲେ ସ୍ୱର୍ଣପୁରେ
ସପତ୍ତ ଦିବସେ ପ୍ରବେଶ ଯାଇଂ ବାରୁଣାବନ୍ତେ । ୬୨୬ ।
ସାହେଂତନୁଙ୍କୁ ପ୍ରଣପତ୍ୟ ଜୟଲଭ ପଦ୍ମଲଭ
କ୍ଷେଦେବ ବନ୍ଧ ହୋଇ କର୍ମା ନ ଗଲେ ଶ୍ରେଷ୍ଠ ଦେବ । ୬୨୭ ।
ସାହେଂତନୁ ବୋଇଲେ ସେ ଦାସ ସଂହରିଲା
ଆମ୍ଭର ନିମନ୍ତେ ସେ ବନ୍ଧ ନୋହିଲା । ୬୨୮ ।
ଅମ୍ଭ ପୁତ୍ରକଇ ବାବୁ ଭରସା ନ କର
ଅନ୍ୟ ବର ବରି କନ୍ୟା ବିଭା ତୁମ୍ଭେ କର । ୬୨୯ ।
ଶ୍ରେଷ୍ଠଙ୍କୁ ଘେନି ଆଣିଲେ ତାହାଙ୍କର କତି
ବାବୁ ପଦ୍ମଲଭର ପୁତ୍ରେ ଆମ୍ଭପୁରେ ଆସିଛନ୍ତି । ୬୩୦ ।
କନ୍ୟା ଗୋଟିକ ବାବୁ ହୁଅ ପରଦାନ
ସନ୍ତାନ ନ ଥିଲେ ତୁଟଇ ଧର୍ମମାନ । ୬୩୧ ।
ଶ୍ରେଷ୍ଠେ ବୋଇଲେ ଆର ହୁଅଇ କି ସେ କଥା
ମୋହୋରେ ନାଣ ସିବକ ତୋହୋର ପ୍ରାସ୍ତେ ପିତା । ୬୩୨ ।
ଅନେକ ମଣାନ୍ତେ କାନ୍ତି ହୁଂ ସେ ଚଳେ
ରାଜାର ସ୍ୱର୍ଣପୁରେ ବାହୁଡ଼ିଣ ଗଲେ । ୬୩୩ ।

ଆପଣା ରାଜ୍ୟରେ ଯାଇ ହୋଇଲେ ପ୍ରବେଶ
ପିତାଙ୍କୁ କହିଲେ ତାର ଗୂଢ଼ ସ୍ୱପ୍ନଙ୍କର ଆଶ । ୬୩୪ ।
ପିତାର ନିମନ୍ତ୍ରେ ସେ ସଂହରିଲେ ତାର
ସଂକଳ୍ପ କରିଣ ସେ ଗୁଡ଼ିଲେ ମହାବୀର । ୬୩୫ ।
ପୁତ୍ରଙ୍କର ମୁଖୁ ଏହନ ବାଣୀ ଶୁଣି
ହରଷ ହୋଇଲା ସେ ପଦ୍ମଲଭ ନୃପମଣି । ୬୩୬ ।
ବାବୁ ଅମ୍ଭ କନ୍ୟାଙ୍କୁ ଶାଳୁ ମାଗୁଥିଲା ପୂର୍ବେ
ମୁହିଂ ତାହା ନାସ୍ତି କଲଇ ମଉ ଗର୍ବେ । ୬୩୭ ।
ସତ୍ୟେମ୍ବର କଲି ତାହା ସ୍ୱପ୍ନ ନାଶ କଲା
କାଳେ ଦୋହିତାକୁ ମୋର ପ୍ରଦାନ ନୋହିଲା । ୬୩୮ ।
ଅଞ୍ଜନସେନ ବୋଲିକରି ତାହାର ମନ୍ତ୍ରୀ
ଶାଳୁ ଚନ୍ଦ୍ରଂକ ତାକୁ ପେଷିଲା ନୃପତି । ୬୩୯ ।
ଶାଳୁକୁ ମାଳାଦେଇ ଆଣ ରୂପେ ବର
ତାହାକୁ ପ୍ରଦାନ କରିବ ଯୋଗେଶ୍ୱର । ୬୪୦ ।
ରାଜାର ବଚନେ ସେ ଚଳିଲା ମନ୍ତ୍ରିବର
ଶାକଲ୍ୟ ଦେଶେ ଯାଇଂ ପ୍ରବେଶ ଧାଇକାର । ୬୪୧ ।
ଶାଳୁକୁ ଜଣାଇଂ ସେ କନ୍ୟକ ଦ୍ରଣନ
କହିଲା ମନ୍ତ୍ରିବର ସକଳ ବିଧାନ । ୬୪୨ ।
ରୂ ଯେ ଆଗ ହୁଂ ମାଗୁଥିଲୁ ରତ୍ନେ
ପଦ୍ମଲଭ ରାଜା ଦେବ ତୋତେ ଦୋହିତା ଗୋଟିଏ । ୬୪୩ ।
ଶାଳୁ ବୋଇଲା ଦେବ ଯେବେ ଅମ୍ଭେ କନ୍ୟା ବାଳା
ସେହି ସେ ଅଟଇ ମୋହୋର ମନର ହୁଆଳ । ୬୪୪ ।
ମନ୍ତ୍ରି ବୋଇଲା ସେହି ଯେ ଯୁଗତେ
ଅମ୍ଭେ କନ୍ୟା ହୁଂ ଦେବ ରତ୍ନେ ତୋତେ । ୬୪୫ ।
ଶୁଣିଣ ସାନନ୍ଦ ହୋଇଲା ମହୀପତି
ମାଳା ଦେଇ ବରିଲା ସେ ପଦ୍ମଲଭ ନୃପତି ମନ୍ତ୍ରି । ୬୪୬ ।
ବୃଷଭ ଶୁକ୍ଳ ତ୍ରୟୋଦଶୀ ଅର୍କବାର
ଅନୁରାଧା ନକ୍ଷତ୍ର ଯୋଗ ସେ ଦିନର । ୬୪୭ ।
ଦଣ୍ଡ ଘେନି ତୋହୋର ଫିରୁ ରାଜ ସାଇଂ
ଶାଳୁ ଅନେକ ଗହଣେ ବଳ୍ଳ ହରଷ ପାଇ । ୬୪୮ ।

ପଦ୍ମନାଭ ରଜା ମୋତେ ଦେବାକୁ ଦୋହିତା
ସ୍ୱେଚ୍ଛାହିଂ କସ ମୋତେ ହେବ ପୂନ୍ୟ କଥା । ୬୪୯ ।
ବରଣ ଅଇଲା ସେ ପଦ୍ମନାଭର ମନ୍ତ୍ରି
ଅନେକ ଉତ୍ସବ ହେ କରଇ ନୃପତ । ୬୫୦ ।
ଅମ୍ବା କନ୍ୟା ନିମନ୍ତେ ପଦ୍ମନାଭ
ପୁଣି ହିଂ ବସ୍ତ୍ର ଯୋଟାଡ଼ କନକ ଦମ୍ଭବ । ୬୫୧ ।
ଇଷ୍ଟ କୁଟୁମ୍ବ ବନ୍ଧୁ ବର୍ଗମାନ
ଅନେକ ଦେଶର ରଜା କଲେକ ନିମନ୍ତ୍ରଣ । ୬୫୨ ।
ଆହ୍ୱୋ କୋଟିସ୍ୱେକ ଦଣ୍ଡ ଧେନ ଶାଲୁ ଦଣ୍ଡଧାରି
ବସ୍ତ୍ରଯୋଗେ ଆସଇ ସେ ଥାଠ ସ୍ଥଳ । ୬୫୩ ।
ଚନ୍ଦ୍ରବଂଶ ନଗ୍ରେ ଆସି ହୋଇଲା ପ୍ରବେଶ
ଶାଲୁକୁ ପଗ୍ଭରିଲା ନୃପତ ମହୀପାଦ । ୬୫୪ ।
ଶାଲୁ ବୋଇଲା ମୋତେ ବରିଲା ପଦ୍ମନାଭ
ଅମ୍ବା କନ୍ୟା ମୋତେ ପ୍ରଦାନ କରିବ । ୬୫୫ ।
ମହୀପାଦ ବୋଇଲ ଦ୍ୱମା ଅନସିତେ ଅଇଲୁ
ଭଗର ମୁଖେ କି ବାରତା ନ ପାଇଲୁ । ୬୫୬ ।
ଅମ୍ବା କନ୍ୟାକୁ ସ୍ୱୟେ ସ୍ୱୟମ୍ବର କଲେ
ଗଙ୍ଗାର ନନ୍ଦନ ଭୀଷ୍ମ ସ୍ୱୟମ୍ବର ଜିଣିଲା । ୬୫୭ ।
ଅମ୍ବର ଆହିଂଣ ମାଳା ଦେଇ ବରି
ଭୀଷ୍ମ ପ୍ରଦାନ ହାଦେ ହୋଇବେ କୁମାରୀ । ୬୫୮ ।
ଏସନେକ ବାରତା ସନ୍ତୁଂ ପାଇଲା ବାଟରେ
ଶାଲୁ ବାହୁଡ଼ିଲା ଭୀଷ୍ମଙ୍କର ଉପରେ । ୬୫୯ ।
ନିଶ୍ଚୟେଂ କରି ଯେବେ ଭୀଷ୍ମଙ୍କୁ ବରିଲା
ଯୁଗତେ ସେ କନ୍ୟା ଗୁରୁପତ୍ନୀ ହୋଇଲା । ୬୬୦ ।
ଶାଲୁ ବାହୁଡ଼ିଲା ସ୍ୱେମନ୍ତ କଥା ଶୁଣି
ବାଟ ଘୁଞ୍ଚାଂଇ ତେଣେ ପଦ୍ମନାଭ ନୃପମଣି । ୬୬୧ ।
ଦିବସ ରଜନୀ ବେନ ଅନକୁଳ ସରିଲା
ରଥ ପାହିଲା ଯେ ଶାଲୁ ତ ନଇଲା । ୬୬୨ ।
ଭଗର ବାରତା କହିଲେ ବେଗେ ଯାଇଂ
ଭୀଷ୍ମଙ୍କ ଉପରେ ଶାଲୁ ନଇଲା ଗୋସାଇଂ । ୬୬୩ ।

ପୁଣି ହିଂ ସେହି ଅନୁକୂଳ ନାଶ ଗଲା
ଯୁବା ବୟସ ଅମ୍ବା କନ୍ୟା ହୋଇଲା । ୬୬୪ ।
ତୃତୀୟେ ବରିଲା ନୃପତି ବୀରବାହୁ
ଭୀଷ୍ମେ ବରଣ ବୋଲି ନଇଲକ ସେହୁ । ୬୬୫ ।
ଚତୁର୍ଥେ ମାନଅର୍କ୍ଷିନଙ୍କୁ ବରିଲା
ବରପୁଙ୍ଗା ବୋଲି ସେ ବିଷ୍ଣୁହିଂ ନୋହିଲା । ୬୬୬ ।
ଏମନ୍ତେ ଅନେକ ଦେଶର ବରିଲେ ନୃପତି
ଭୀଷ୍ମଙ୍କର ଡରେ କେହି ନଇଲେ ତାର ଗତି । ୬୬୭ ।
ପଞ୍ଚଦଶ ବରଣ ହୋଇଲା କୁମାରୀ
ଯୁବା ବୟସ ହୋଇଲା ମନୋହାରୀ । ୬୬୮ ।
ଯନ୍ତୁଂ ସେ ବାଳକ ପ୍ରଦାନ କେହୁ ନୋହିଲା
କନ୍ୟାକଇ ଯେନ ରାଜା ବାରୁଣାବନ୍ତ ଗଲା । ୬୬୯ ।
ଭୀଷ୍ମଙ୍କର ସନ୍ନିଧେ ମିଳିଲା ନୃପମଣି
ଗ୍ରୀମୂରେ ଧଉ ନେଇ କଳକ ଦୁଲଣି । ୬୭୦ ।
ଖେ ରାଜେନ୍ଦ୍ର ସେ ଯେ ମୋହୋର କୁମାରୀ
ନ ଜାଣି ନ ପୋଷି ଗ୍ରଙ୍କୁ ବରଣ କରି । ୬୭୧ ।
କେବଣ ଦୋଷ କଲା ମୋହର ନନ୍ଦନୀ
ଏବେ ହୋ ସମ୍ଭାଳ ତୋର ଗ୍ରୀମୂକୁ ଅଇଲି ଯେନ । ୬୭୨ ।
ଭୀଷ୍ମେ ବୋଇଲେ ତୋହର ଦୋହିତାକୁ ବରିଲି
ତାହାକୁ ଉପେକ୍ଷି କ ଆନକୁ ବଶ ହୋଇଲି । ୬୭୩ ।
ପିତା ମୋହୋର ଜାଣ ଯିବ ମୋହୋର ପୁତ୍ର ହୋଇଲେ
ତାର ଫହରିଲି ମୁଂ ସାଏନ୍ତନୁଙ୍କର ବୋଲେ । ୬୭୪ ।
ଯାହାକଇ ଇଚ୍ଛା, ତୋର ପ୍ରଦାନ କର ବାଳି
ମୁହିଂ ଉପେକ୍ଷା କଲି ସତ୍ୟ ପ୍ରତିପାଳି । ୬୭୫ ।
ପଦ୍ମନାଭ ବୋଇଲା ମୁଂ ବରିଲି ଅନେକ ଦଣ୍ଡଧାରୀ
କେହି ବିଷ୍ଣୁ ନୋହିଲେ ତୋତେ ଭୟ କରି । ୬୭୬ ।
ସାଏନ୍ତନୁ ଭୂଷଣହେବା ପାଦେଶ୍ବରନ୍ତ ବୋଲଇ
ଜଣେ ଜଣେ ଗୁହାରି କରଇ ଦୋହିତାକୁ ଦେଖାଇ । ୬୭୭ ।
ଯୁବା ଯଉବନ ଅତି ସୁବେଶ କାମେଣୀ
ଅତିଅନ୍ତ ରୂପବନ୍ତୀ ତୈଲୋକ୍ୟ ମୋହିନୀ । ୬୭୮ ।

ଅନେକ ବାରେ ଚଆଣଲେ ପିତୃଲୋକେ
ତାହାର ବଚନ ନକଲେ ଭୀଷ୍ମ ଦୃଢ଼ ବାକ୍ୟ । ୬୭୯ ।
ସତ୍ୟରେ ସଂସାର ଅଛି ଅନୁବ୍ରତ
ସତ୍ୟ ବର୍ଜିଲେ ପ୍ରାଣୀ ହୁଅନ୍ତି ନର୍କଗତ । ୬୮୦ ।
ମୁହିଂ ଯେ ସତ୍ୟକଲି ପିତାର ସମକ୍ଷେ
ମୋହର ଧର୍ମ କ୍ଷମା ଭଙ୍ଗ ଅନମିତେ । ୬୮୧ ।
ସବୁଶ ବଚନ ସହୁଁ ଲଙ୍ଘିଲେ ଗାଙ୍ଗେବ
ଦେଖିଣ ଶରସ ହୋଇଲେ ପଦ୍ମନାଭ । ୬୮୨ ।
ପଦ୍ମନାଭ ବୋଇଲେ ଦୋହିତାକର ରଇ
ତୁ ଆଜ୍ଞ କପ କରବୁ ମୋହର ପୁରେ ଯାଇ । ୬୮୩ ।
ଭୀଷ୍ମଙ୍କୁ ସେବା କରଥାଅ ଅନୁବ୍ରତେ
ଆଣ୍ଣାସିଲେ ଆଣ୍ଣାସୁ ନାଶିଲେ ନାଶୁ ତୋତେ । ୬୮୪ ।
ସେବା କରଥିଲେ କରଇ ଅବା ଦୟା
ବସୁର ଖଟିଆଅସି ରୋ ମହାମାୟା । ୬୮୫ ।
ଅମ୍ବା କନ୍ୟାକୁ ଗୁଣ୍ଠଣ ନରନାଥ
ଚଳଲେ ନଜ ରାଜ୍ୟ ବିମୋହିତ ଚିତ୍ତ । ୬୮୬ ।
ରାଜାର ନନ୍ଦନୀ ନବ ଯଉବନବତୀ
ଭୀଷ୍ମଙ୍କର ନବରେ ଖଟଇ ଦବାରାତି । ୬୮୭ ।
ଭୀଷ୍ମେ କୋପ କଲେ ଦେଖିଣ ସେ ନାରୀ
ବୋଇଲେ ପାପିଷ୍ଠୀକି ନଅରେ ବାଳ ଧରି । ୬୮୮ ।
କୋପେଣ ବାହାର କଲେ ପାଜ ଅମନାତ୍ୟେ
ଦେଖିଣ ସୁନ୍ଦେଶ୍ୱ ବିମୋହିତ ଚିତ୍ତେ । ୬୮୯ ।
ବୋଲଇ ଯୁବତୀ ଶୁଣହେ ଗାଙ୍ଗେବ
ମୋତେ ନାଶ କଲେ ତୋବ କପ ଧର୍ମ ହୋଇବ । ୬୯୦ ।
ଏଥାଶୁଣି ବୋଇଲେ ସାଲ୍ୱେନ୍ଦ୍ରନୁର ଶିଷି
ତୋତେ ଦେଖିଣ ମୁଂ ମନରେ ବଡ଼ ତ୍ରାସି । ୬୯୧ ।
ବହୁତ ଭୟ ମୋତେ ଲାଗଇ ତୋତେ ଦେଖି
ପଳାଅଛି ମୋହର ରାଜ୍ୟ ରୁ ଉପେକ୍ଷି । ୬୯୨ ।
ଅମ୍ବାକନ୍ୟା ବୋଇଲ କାହିଁକି ମୁଂ ଯିବି
ମୋହୋରେଣ ଅବଶ୍ୟ ତୁ ହୋଇବୁ ପରଭବ । ୬୯୩ ।

ଅମ୍ବା ବୋଇଲା ମୁହିଂ ଯାଉଅଛୁ କନା
ଯହିଂ ତହିଂ ମଲେ ହତ୍ୟା ଦୋଷ ତୋତେ ପିନା । ୬୯୪ ।
ଅନେକ ଭର୍ତ୍ସନା ବୋଇଲା ତହିଂ ରାଗେ
ତୋତେ ନାଶିବ ବୋଲି ଝାସିବ ବହ୍ନିରେ । ୬୯୫ ।
ଏତେକ ବୋଲନ୍ତେ ସେ ଆସଇ ସୁନ୍ଦରୀ
ଭୃଗୁରାମ ଅଗ୍ରତେ କଲାକ ଗୁହାରି । ୬୯୬ ।
ଗଙ୍ଗାକୂଳେ ବସି କାନ୍ଦଇ ସୁବଣ୍ଠ
ଭୃଗୁରାମେ ବୋଇଲେ ଅଇଲୁ କାହାର କଣ୍ଠ । ୬୯୭ ।
ସ୍ନେ ତୋହର ରୂପ ଗୁଣ ଦେବେ ଅଗୋଚର
ତୋତେ ଉପେକ୍ଷ କଲା କେବଣ ପାମର । ୬୯୮ ।
ଅମ୍ବା ବୋଇଲା ଗୋସାଇଂ ମୁହିଂ ବଡ଼ ଦୁଃଖୀ
ମୁହିଂ ଶରଣ ମାଗଇ ମହନ୍ତ ଜନ ଦେଖି ।୬୯୯ ।
ଭୃଗୁରାମେ ବୋଇଲେ ତୋହର କସ ବାଞ୍ଛା
ସତ୍ୟ କଲୁଂ ଆମ୍ଭେ ମାଗ ତୋହର ଇଚ୍ଛା । ୭୦୦ ।
ସ୍ନେ ଆମ୍ଭର ସତ୍ୟ ସତ୍ୟ ତ୍ରିବାର ସତ୍ୟ
ସ୍ନେଚ୍ଛଣି ମାଗ ଦେବଇଂ ସୁଗତ । ୭୦୧ ।
ଅମ୍ବା କନ୍ୟା ବୋଇଲା ମୋତେ ପ୍ରସନ୍ନ ହୋଇବା
ଆନେ କାର୍ଯ୍ୟ ନାହିଂ ମୋତେ ସ୍ୱାମି ଦାନ ଦେବା । ୭୦୨ ।
ମାଗରେ ସୁନ୍ଦରି ଯାହାକୁ ତୋର ଇଚ୍ଛା
ତ୍ରୈଲୋକ୍ୟରେ ଦେବ ରୁ ଯାହାକୁ କରୁ ବାଞ୍ଛା । ୭୦୩ ।
ଅମ୍ବା କନ୍ୟା ବୋଇଲା ତୁମ୍ଭେ ଶୁଣ ମହାଯଶ
ବରଣ ପ୍ରଦାନ ନୋହିଲେ ମୋତେ ଶ୍ରେଷ୍ଠ ମାହାରଥ । ୭୦୪ ।
ମୁହିଂ ସେ ଅମ୍ଭେକ ପଦ୍ମଲଭର ଭୂମାସ୍ତ
ତାହାଙ୍କୁ ସ୍ୱାମିଦାନ ମୋତେ ଦେବାକ ତପସ୍ୱୀଶ । ୭୦୫ ।
ଭୃଗୁରାମ ବୋଇଲେ ନୀଳରାମ ରଘୁରାମକଇ ରାଇ
ଭୀଷ୍ମଙ୍କୁ ଏ କନ୍ୟା ସମର୍ପି ଆସ ନେଇ । ୭୦୬ ।
ସ୍ୱାମିର ଆଜ୍ଞା ସେ ନବେଷ୍ଟିତ ଶିରେ
ଅମ୍ଭେ କନ୍ୟାକୁ ଘେନି ପ୍ରବେଶ ବାରୁଣାବନ୍ତ ପୁରେ । ୭୦୭ ।
ଆହୋ ଭୀଷ୍ମ ତୋତେ ପ୍ରଭୁରାମଙ୍କର ଆଜ୍ଞା ବାବୁ
ଅମ୍ଭେ କନ୍ୟାକୁ ରୁ ପ୍ରଦାନ ହୋଇବୁ । ୭୦୮ ।

ଶ୍ରୀକୃଷ୍ଣ ବୋଇଲେ ରଘୁମ୍ନଙ୍କର ମୁଖ ଚାହିଂ
ତୁମ୍ଭର ଡରେ କରେ ବଶ ହୋଇବଇଂ ମୁହିଁ ।୭୦୯।

ମୋହର ଭୟ କ ତୁମ୍ଭର ପ୍ରଦ୍ୟୁମ୍ନକୁ
କନ୍ୟା ପ୍ରଦାନ ହୋଇବ ମୁଂ ଅମ୍ଭେ କନ୍ୟାକୁ ।୭୧୦।

ନୀଳମ୍ନ ବୋଇଲେ ପ୍ରଦ୍ୟୁମ୍ନଙ୍କର ଆଗ୍ୟାଂ ମେଣ୍ଟୁ
ଅବଶ୍ୟ ଶିର ତୋର ତୁଟିବ କହନ୍ତୁ ।୭୧୧।

ପ୍ରଦ୍ୟୁମ୍ନଙ୍କର ଆଗରେ କହିବୁଂ ବାରେ ଯାଇଂ
ଯଞ୍ଚସ୍ତେ ମଣ୍ଡପରେ ଏ ଦୋହିତାର ପାଇଁ ।୭୧୨।

ନୀଳମ୍ନ ରଘୁମ୍ନ ଗଲେକ ବାହୁଡ଼ି
ଅମ୍ଭେ କନ୍ୟା ଗୋଡ଼ାଇ ଚଲ୍ଲ କାନ୍ଧ କଣ ।୭୧୩।

ପ୍ରଦ୍ୟୁମ୍ନ ବଜେ କଣଛନ୍ତି ତ୍ରିପୁର ପର୍ବତେ
ରଘୁମ୍ନ ନୀଳମ୍ନ ପ୍ରବେଶ ବେନି ଭ୍ରାତେ ।୭୧୪।

ପ୍ରଣପତ୍ୟ ହୋଇ ନୀଳମ୍ନ ବୋଇଲା
ହେ ସ୍ୱାମି ଶ୍ରୀକୃଷ୍ଣ ଆମ୍ଭଙ୍କୁ ବହୁତ କୋପକଲା ।୭୧୫।

ବୋଇଲା ଅଯୁକନା ତୋହର ପ୍ରଦ୍ୟୁମ୍ନ
କେତେ ପାରୁ ଅଛି କରୁ ହୋ ସଂଗ୍ରାମ ।୭୧୬।

ଅମ୍ଭା କାନ୍ଦଇ ଯେ ଅଡ ବଇଲୁଲେ
ପ୍ରଦ୍ୟୁମ୍ନ କୋପକଲେ ଆଗ୍ୟାଂ ଯହୁଂ ମେଣ୍ଟିଲେ ।୭୧୭।

ଧାମଇ କୋପେ ସେ ପ୍ରଦ୍ୟୁଧର ନାଥ
ପଛେଣ ଗୋଡ଼ାବନ୍ତି ଦୁଇ ଭ୍ରାତ ।୭୧୮।

ମାନେନୀ ଅବସ୍ଥା ହୋଇଣ ଯେ ଅମ୍ଭେ ସୁବନ୍ତ
ସେହି ଗୋଡ଼ାଇ ଅଛୁ ତାହାଙ୍କ ପଛ କଢ ।୭୧୯।

କାଳାନଳ ରୂପ ହୋଇଣ ପ୍ରଦ୍ୟୁମ୍ନେ
ସତ୍ତ୍ୱରେଣ ପ୍ରବେଶ ହୋଇଲେ ଶ୍ରୀକୃଷ୍ଣଙ୍କର ଆଶ୍ରମେ ।୭୨୦।

ପ୍ରଦ୍ୟୁମ୍ନଙ୍କର କୋପ ଦେଖି ଶ୍ରୀକୃଷ୍ଣ ମହାରଥି
ସତ୍ତ୍ୱେଣ ନ ଗଲେ ସେ ପ୍ରଦ୍ୟୁମ୍ନଙ୍କର କଢ ।୭୨୧।

କୋପେଣ ପ୍ରଦ୍ୟୁମ୍ନ ବୋଲନ୍ତି ଉତ୍ତର
ଆରେ ମୋହର ଆଗ୍ୟାଂ ଭ୍ରଷ୍ଟ କଲୁ ଏଡ଼େ ଦର୍ପ ତୋହର ।୭୨୨।

ଅମ୍ଭର ଜାଣନ୍ତେ ଯେ ବଳଲୁ ଏହାକୁ
ବଳଣ ବସ୍ତ୍ର ନୋହିଲୁ କେଯନେ ଅମ୍ଭେ କନ୍ୟାକୁ ।୭୨୩।

ପାଟେଶ୍ବର ବୋଇଲେ ଶୁଣ ବାବୁ ଭୀଷ୍ମ
ତୋତେ ଯେ କୋପ କରୁଅଛନ୍ତି ପ୍ରଶୁରାମ । ୭୨୪ ।
ବଡ଼ କୋପାନଳ ସେ ବଢ଼ଇ ବିକଟ
ଯୁଗାନ୍ତେକ ନାଥ ସେ ଅଟଇ ମହାଦୁଷ୍ଟ । ୭୨୫ ।
ବାବୁ ଯମଦ ଅଗ୍ନି ଋଷିଙ୍କର ଯହୁଂ ବିବାଦ ଶୁଣିଲ
ଜନ ଭ୍ରାଥ ମାତା ମୁଣ୍ଡ କାଟି ପକାଇଲା । ୭୨୬ ।
ଅଣଦସ୍ତା ମାହାସ୍ତା ସେ ଅଣ ଉପ୍ରୋଧି
ଅଭୟେ ଅଜୟେ ତୈଲୋକ୍ୟେ ମାହାଯୋଧି । ୭୨୭ ।
ଏହାର କୋପକଲେ ବାବୁ ନେହି ନ ବୃତ
ଏକୋଇଶ ବାର ଏ ନିକ୍ଷେତ୍ରି କଲା ପୃଥ୍ଵୀ । ୭୨୮ ।
ସତ୍ୟଯୁଗ ଭୋଗକଲା କ୍ଷେତ୍ରିବୃତ୍ତ ପଣେ
ଅନେକ ଉପାୟେ ବିଦ୍ୟା ଚିହ୍ନିଲେ ଆପଣେ । ୭୨୯ ।
ଯେହୋର ସଙ୍ଗେ ବାବୁ ନୋହସି ବିବାଦ
ଭିକଟାଳ ନୟନେ ସୁହୁଂଲେ ହୋଇବୁ ଶିରଚ୍ଛେଦ । ୭୩୦ ।
ଆମ୍ଭର ବଚନ ବାବୁ ନାସ୍ତି ରୂ ନ କର
ଅମ୍ଭେ କନ୍ୟାକୁ ପ୍ରଦାନ ହୁଅ ପ୍ରଶୁରାମଙ୍କ ବଚନର । ୭୩୧ ।
ଭୀଷ୍ମେ ବୋଇଲେ କେସନେକ ବସ୍ତ୍ର ମୁଂ ହୋଇବ
ଷଣସା ଗ୍ରନ୍ତ ନମନ୍ତେ ପିତା ନାଣ କଣବ । ୭୩୨ ।
ଭୂଣଦଙ୍କା ବୋଇଲେ ଏ କନ୍ୟା ପ୍ରଦାନ ହୋଇ
ଶୃଙ୍ଗାର ବଞ୍ଚ ପଛେ ଅପବାଦ ଦେଇ । ୭୩୩ ।
ଭୀଷ୍ମେ ବୋଲନ୍ତି ତୁମ୍ଭେ ଶୁଣ ପିତୃଗଣେ
ମୁହିଂ ଶୁଣିଲି ଜଗ ଅଗସ୍ତିଙ୍କ ପୁରାଣେ । ୭୩୪ ।
ଋତୁଶି ଦିବସେ ଅଶୁଦ୍ଧ ହୋନ୍ତି ନାରୀ
ତାହାଙ୍କୁ ଛୁଇଂଲେ ଚଣ୍ଡାଳ ସଙ୍ଗେ ସରି । ୭୩୫ ।
ଯେତେ ବସ୍ତ୍ରେ ଛୁଇଂ ସେତେ ବସ୍ତ୍ରେ ସ୍ନାହାନ କରି
ସେଦିନ ଉପବାସେ ରହିଣ ସନ ହବ । ୭୩୬ ।
ଦ୍ଵିତୀଅ ଦିବସେ ଛୁଇଂଲେ ଅଶୁଧ ନାରୀ
ପ୍ରତକ୍ଷ ବାକ୍ୟ ସେ ବ୍ରହ୍ମହତ୍ୟା ଦୋଷ ସବ । ୭୩୭ ।
ତୃତୀୟ ଦିବସେ ଯେ ଅଶୁଦ୍ଧା ନାରୀ ଛୁଅନ୍ତି
ପୂଜାଲିଙ୍ଗ ଭଙ୍ଗିବାର ଦୋଷ ସେ ଲଭନ୍ତି । ୭୩୮ ।

ଚତୁର୍ଥ ଦିବସେ ଯେ ହୋନ୍ତି ତ୍ରିଷ୍ପ ପାଣ
ଗୋହତ୍ୟା ବ୍ରହ୍ମହତ୍ୟା ମାତୃହରଣ ଦୋଷ । ୭୩୯ ।
ଶୁଧ୍ୟ ସ୍ନାହାନ କରିବ ପଞ୍ଚମ ଦିବସେ
ସେବନ ପୁରୁଷ ଯିବ ତାହାର ପାଶେ । ୭୪୦ ।
ନାନାଧର୍ମ ଯେ ପିତୃକାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରିଣ ତାହାରେ ହୋଇବ ବ୍ରତ ସ୍ଥିର । ୭୪୧ ।
ପଞ୍ଚମ ଦିନୁ ସପତମ ଦିନ ପର୍ଯ୍ୟନ୍ତେ
ଯେବଣ ପୁରୁଷ ଉପେଖନ୍ତି ବହୁତ ଦୋଷ ପ୍ରାପତେ । ୭୪୨ ।
ସେ ବହୁଲ ଶ୍ରୋଣିତ ଆହାର କରନ୍ତି ପିତୃଲୋକେ
ଏସନକ ଅଛନ୍ତି ଶାସ୍ତ୍ର ଧର୍ମ ବାକ୍ୟେ । ୭୪୩ ।
ଋଷେ ବୋଇଲେ କେମନ୍ତେ ବଶ ହୋଇ ଶୃଙ୍ଗାର ନ ଇଛିବ
ମୋହୋର ପୁତ୍ର ହୋଇଲେ ତୁମ୍ଭନ୍ତ ନାଶ କରିବ । ୭୪୪ ।
ସ୍ନେହନେକ ବଚନ ଯହୁଂ ବୋଇଲେ ତାଙ୍କବେ
ଶୁଣିଣ ରୁଷ୍ଟ ହୋଇଲେ ପାରେଶ୍ବର ଭୃରସଙ୍ଗା ସଙ୍ଗେ । ୭୪୫ ।
ପ୍ରଶୁରାମଙ୍କୁ କୋପେ ବୋଇଲେ ମହାରଥି
ଆହୋ ପ୍ରଶୁରାମ ମୋହର ତୋତେ କହ ଖାତ । ୭୪୬ ।
ପଳାଯା ମିଛେ ଏଥେ ନ ବଖାଣ ବଡ଼ ପଣ
ସହୋଦ୍ରେ କଳଙ୍କ ତୁ ନ ଲଗାଅ ଅକାରଣ । ୭୪୭ ।
ତୁ ମୋହର ସହୋଦ୍ର ଅଟୁ ଯଥା ଅର୍ଥେ
ଅନମିତ କଥାରେ କ୍ଷମା କରିବା ଅନର୍ଥେ । ୭୪୮ ।
କଷ୍ଟିତ ଦୋଷେଣ ବଡ ପଣ ନ ନାଶି
ଶ୍ରୀଗାଳର ବଳେ ସିଂହ ହୋଇଲ ଧଂସି । ୭୪୯ ।
ଋଷିଙ୍କର ମୁଖୁ କଠୋର ବଚନ ଶୁଣି
କୋପେଣ ଧାଇଁଲେ ସେ ପ୍ରସୁଧର ପାଣି । ୭୫୦ ।
ମାହାକୋପେ ସେ ଜମଦଅଗ୍ନି ବଳା
ଋଷିଙ୍କୁ ଧଇଲେ କୋପେଣ ଅନର୍ଗଳା । ୭୫୧ ।
ଋଷିଙ୍କୁ ପ୍ରଶୁରାମ ଧଇଲେ ଆକ୍ରୋଷି
ଋଷିଙ୍କୁ ତଳେ ପାଡ଼ି ଉପରେ ମାଡି ବସି । ୭୫୨ ।
ମୁଣ୍ଡ ମୋଡ଼ିତ ଋଷିଙ୍କର ଲେଉଡ଼ାଇ ପ୍ରସୁଧର
ଧାଡକାରେ ଲେଉଟାଇ ପାଡ଼ିଲେ ଗଙ୍ଗାର କୁମର । ୭୫୩ ।

ପ୍ରସୁରାମଙ୍କୁ ତଳେ ପାଡ଼ି ଗାଙ୍ଗେବ ବସିଲେ ହୃଦଗତେ
ବାମକରେ ମୁଷ୍ଟି ପ୍ରହାର କଲେ ମୁଖେ । ୭୫୪ ।
ଭୀଷ୍ମଙ୍କର ମୁଖ ପଡ଼ିଲା ବଜ୍ରଘାତ ଜାଣି
ପ୍ରସୁରାମ ମୁଖବାଟେ ବହିଲାକ ଶ୍ରୋଣି । ୭୫୫ ।
ଦେଖିଣ ଧାଇଁ ପଡ଼ିଲେ ସାସ୍ୱେଂଚନ୍ଦ୍ର
ଭୀଷ୍ମଙ୍କର ଭୁଜ ଧଇଲେ ପୁରମନ୍ତୁ । ୭୫୬ ।
ରହ ରହ ବାବୁରେ ଭୀଷ୍ମ ମାହାରଥୀ
ସହୋଦ୍ରେ ସହୋଦ୍ରେ କର୍ମା ହୋଉଅଛୁ ଅହଙ୍କାରା । ୭୫୭ ।
ସାସ୍ୱେନ୍ଦ୍ରନୁ ସାରେଶ୍ୱର ବୁଝାଇଲେ ସାଂଗ୍ରାମ
ଲଜ୍ୟା ପାଇ ତହୁଂ ଗଲେକ ପ୍ରସୁରାମ । ୭୫୮ ।
ଅମ୍ଭେ କନ୍ୟା ତହୁଂ ପ୍ରାଗ ତୀର୍ଥକୁ ଗଲା
ତ୍ରିବେଣୀ ସ୍ନାହାନ କରି ମାଧବ ପୁଜିଲା । ୭୫୯ ।
କହେ ମାଧବ ତୁମ୍ଭେ ହୋଇଥାଅ ସାକ୍ଷି
ଭୀଷ୍ମଙ୍କର ପ୍ରସାଦେ ମୁଂ ହୋଇବି ନରମାସ୍ତି । ୭୬୦ ।
ଭୀଷ୍ମଙ୍କର ଉପରେ ହତ୍ୟା ମୋହୋର
ମାଧବ ସାକ୍ଷିକରି ଝାସିଲା ପୟାଗର । ୭୬୧ ।
ମୁହିଂ ସ୍ତ୍ରି ସ୍ୱ ମାନ ହୋଇବଇଂ ଯୋଧ
ଜନ୍ମେ ଜନ୍ମେ ଭୀଷ୍ମଙ୍କୁ କରିବ ମୁହିଂ ବାଧ । ୭୬୨ ।
ସେହି ମୋହୋର ରୂପ ଗୁଣ ଲକ୍ଷଣ ଦେଖନ୍ତେ
ଭୀଷ୍ମ ଶରସ୍ତ୍ର ଗ୍ରହିବ ସାସ୍ତ୍ରମେ ଯୁଗତେ । ୭୬୩ ।
ତ୍ରିଶୂଳରେ ପଣି ଯେ ଲଗାଇଲା ବନ୍ଧନ
ଲଗାଇଲା ମାତ୍ରକେ ଜଳିଲା ତତକ୍ଷଣି । ୭୬୪ ।
ବଦସ୍ୱନ୍ତି ଅଗସ୍ତି ଶୁଣ ହୋ ଯୋଗେଶ୍ୱର
ଏହନେକ ଚରିତ ହୋଇଲା ଭୀଷ୍ମଙ୍କର । ୭୬୫ ।
ଭୀଷ୍ମେ ଦାର ସଂହରିଲେ ପିତାର ନିମନ୍ତେ
ଗଙ୍ଗାର ଶାପେ ଅପୁତ୍ରିକ ହୋଇଲେ ଆବର ବେନି ଭ୍ରାତେ । ୭୬୬ ।
ଏମନ୍ତେଣ ରାଜ୍ୟ କଲେ ତିନ ଭାଇ
ଅନେକ ଯାଗ ଯଗ୍ୟ କଲେ ସନ୍ତାନ ଜାତ ପାଇଁ । ୭୬୭ ।
ଗଙ୍ଗାର ଶାପ ଯେ କେହୁଁ ଆନ କରି
ଅନେକ ବାରେ ପୁତ୍ର ନୋହିଲା ତାହାଙ୍କର । ୭୬୮ ।

ଅପୁତ୍ରିକ ହୋଇ ରାଜ୍ୟ କରନ୍ତି ଜନଭ୍ରାଏ
ଫଂଚୁ ରାଜ୍ୟ ଭୋଗକଲେ ନବ ସହସ୍ର ବରଷ ପରଯନ୍ତେ । ୭୬୯ ।
ମାହାକ୍ଷନି ପଣେ ଅନେକ ଶତ୍ରୁ କଲେ ସାଧି
ଚଯବୀର୍ଯ୍ୟଙ୍କୁ ହୋଇଲା ଗଳିତ କୋଷ୍ଟ ବ୍ୟାଧି । ୭୭୦ ।
ଅନେକ ପ୍ରକାରେ ଭଲ ସେ ନୋହିଲା
ନାନା ମଉଷୋଧି କଲୁ ହେଁ ନ କାଟିଲା । ୭୭୧ ।
ସେହି ରୋଗେ ନାଶ ଗଲା ଚଯବୀର୍ଯ୍ୟ
ବୃଦ୍ଧ ନ ପାରି ହୋଇଲା ପ୍ରାଣ ତ୍ୟାଗ । ୭୭୨ ।
ସମସ୍ତେକେ ବିଚଯବୀର୍ଯ୍ୟ ପ୍ରସ୍ଥାଗକଇଂ ଗଲା
ଅପୁତ୍ରିକ ଦୋଷେ ସରଗେ ସ୍ଥାସ ଦେଲା । ୭୭୩ ।
ଚଥ ବିଚଯବୀର୍ଯ୍ୟ ନାଶଗଲେ ଅପୁତ୍ରିକ ହୋଇ
ଖ୍ରଷ୍ଟେ ଦାର ସଂହରଲେ ପୁତ୍ର ଜାତ ନାହିଁ । ୭୭୪ ।
ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ହସ୍ତିନା ନଇନ୍ଦ୍ରା ବାରୁଣୀ
ହତପାଟ ହୋଇଲା ନାହିଂ ରାଜ୍ୟଙ୍କୁ ଧାରଣୀ । ୭୭୫ ।
ଖ୍ରଷ୍ଟ ଡରବଜେ କରଣ ଶତ୍ରୁ ନାଶି
ପଞ୍ଚ ରାଜ୍ୟ ସମ୍ଭାଳଲେ ଅଇର ଦର୍ପ ଧଂସି । ୭୭୬ ।
ପାରେଶ୍ୱର ପଶ୍ଚରଲେ ସାଦ୍ୟେଂତନୁଙ୍କ ସ୍ତ୍ରୀହିଁ
ଏତେବଡ଼ ବଂଶ ବୁଡ଼ିଲା ସନ୍ତାନ ଜାତ ନାହିଁ । ୭୭୭ ।

ପାରେଶ୍ୱର ବୋଇଲେ ଶୁଣ ସତ୍ୟବତୀ
ଅମ୍ବିକା ଅମ୍ବାଲିକା ଥଆର ଦୁହନ୍ତ । ୭୭୮ ।

ବଂଶେଣ ପୁତ୍ର ଗୋ ଉପୁଜଇ ଯେମନ୍ତେ
ବଧୂଙ୍କୁ ମେଳ କରାଅ ବ୍ୟାସଙ୍କର ସହିତେ । ୭୭୯ ।
ବ୍ୟାସ ଋଷି ତାହାଙ୍କୁ କରନ୍ତୁ ରମଣ
ସନ୍ତାନ ଉପୁଜୁ ବଂଶକୁ ହୋଉ କାରଣ । ୭୮୦ ।
ସତ୍ୟବତୀ ବୋଇଲେ ସ୍ୱାମି ବଡ଼ ଆଟୋଚର
ଜେଷ୍ଠ ଶଶୁର ଭ୍ରାଥବଧୂ ସେ ବହୁତ ଅନ୍ତର । ୭୮୧ ।

ଏତେ ବିସ୍ମର ସେ ଚଲଲେ ସତ୍ୟବତୀ
ଅମ୍ବିକା ଭୁବନେ ବିଜୟସ୍ତୁ ମହାସତୀ । ୭୮୨ ।
ଦେଖିଣ ପୁଜା ବିଧି କଲେ ପଦ୍ମଲଭ କୁମାସ୍ତ୍ରୀ
ଗୁରୁପତ୍ନୀ ପାଦେ ପ୍ରଣମିତ କରି । ୭୮୩ ।

ଶ୍ୱଶର ଅଶ୍ୱାସନା କଲେ ସତ୍ୟବତୀ
ବୈକୁଲ୍ୟ ହୋଇଣ ଖଳନ୍ତ ମତି । ୧୮୪ ।
ଆଗୋ ପୁତ୍ରେ ବଡ଼ ବଂଶ ନାଶଗଲା ଅନମିତେ
ଭୀଷ୍ମ ଗଲେ ପୁଣି ଆମ୍ଭର ବଂଶ ବଢିବ କେମନ୍ତେ । ୧୮୫ ।
ସନ୍ତାନ ଜାତ କରିବାକୁ ଅଛଇଟିକ ବୁଦ୍ଧି
କେମନ୍ତ ଉପାୟେ କରିବା କାର୍ଯ୍ୟ ସିଦ୍ଧି । ୧୮୬ ।
କରପତ୍ର ଯୋଡ଼ି ଅମ୍ବିକା ବୋଇଲା
ସମସ୍ତ ଦେଖିଲ ଆମ୍ଭର ସନ୍ତାପଣେ ଦହଗଲା । ୧୮୭ ।
ସତ୍ୟବତୀ ବୋଇଲେ ଗୋ ନ ବୋଲ ନ ବୋଲ ସେହ୍ନା
ବଂଶ ଜାତ କର ଗୋ କ୍ଷେତ୍ରିଧର୍ମ ରୁହା । ୧୮୮ ।
ଅମ୍ବିକା ବୋଇଲେ ଗୋ କରିବୁଂ ତୋର ବୋଲ
ଆମ୍ଭେ ଯେ ସତ୍ୟବ୍ରତ ଗ୍ରହିବୁଂ ପୁରୁଷ କାହା କର । ୧୮୯ ।
ଭୀଷ୍ମଙ୍କୁ ବୋଲ ସେ ଆସନ୍ତୁ ଆମ୍ଭର କତି
ଭୀଷ୍ମ ଜାତ କରୁ ବଂଶ ଆନରେ ନାହିଂ ମତି । ୧୯୦ ।
ବଧୂଙ୍କର ବଚନେ ସେ ଚଳିଲେ ସତ୍ୟବତୀ
ଏକାନ୍ତେ ବସାଇ କହିଲେ ଭୀଷ୍ମେ ମାହାରଥି । ୧୯୧ ।
ବାବୁ ତୋହର ସତ୍ୟବ୍ରତ ନୋହିଲାକ ଆନ
ବଂଶ ବୁଡ଼ିଲା କେସନେକେ ହୋଇବ ଧାରଣ । ୧୯୨ ।
ଅମ୍ବିକା ଅମ୍ବାଳିକା ରୁଲେ କର ରୁ ରମଣ
ପୁତ୍ର ଉପୁଜୁ ବାବୁ ବଂଶକୁ ହୋଉ କାରଣ । ୧୯୩ ।
ବଦସ୍ୱନ୍ତ ଗାଙ୍ଗେବ ଟୋ ଅବାଦ ମାହେଶ୍ୱର
ରୁ ପରମ ଗୁରୁ ଗୋ କୋପକୁ ତୋହର ଡର । ୧୯୪ ।
ମୁଂ ଯେ ଦାସ ସଂହରିଲି ପିତାର ନମେନ୍ତେ
କଲା କୃତ୍ୟ ଗୋ ଏବେ ଲଙ୍ଘିବି କେମନ୍ତେ । ୧୯୫ ।
ମାତାର ବଚନ ଯହୁଂ ଲଙ୍ଘିଲେକ ଭୀଷ୍ମ
ଶୁଣିତ ସତ୍ୟବତୀ ହୋଇଲେକ ବହୁତ ବିସ୍ମ । ୧୯୬ ।
ଅନେକ ଭବସର ସତ୍ୟବତୀ ତହୁଂ ଉଠି
ଯମୁନା ନଦୀ କୂଳେ ବ୍ୟାସଙ୍କୁ ଯାଇ ଭେଟି । ୧୯୭ ।
ବ୍ୟାସେ ପ୍ରଣପତ୍ୟ ସତ୍ୟବତୀଙ୍କି ଦେଖି
କ୍ଷେ ମାତ ଗୋ ତୁମ୍ଭେ ଅଇଲ କାହିଁକି । ୧୯୮ ।

ବସିଲେ ମହାଦେବୀ ଖଣ୍ଡିର ବୃକ୍ଷତଳେ
ବେନି ଲୋଚନୁ ବହଇ ଅଶ୍ରୁଜଳେ । ୭୯୯ ।
ମାଗୋ ଚମତ୍କାର ହୋଇଲା ଥିର କରି କହ
କେବଣ ଶୋଚନା ଗୋ କହିବା ସନ୍ଦେହ । ୮୦୦ ।
କ୍ରୋଧ ଥିର କରି କହନ୍ତି ଦାସ ରାଜା କୁମାରୀ
ବାବୁ ରୂ ମୋହୋର ପୁତ୍ର ପଣ୍ଡିତ ବ୍ରହ୍ମଚାରୀ । ୮୦୧ ।
ବାବୁ ଚିତ୍ର ବିଚିତ୍ର ଯାହାଁ ଅପୁତ୍ରକ ହୋଇ ମଲେ
ସାନ୍ତେନ୍ତନୁ ନିମନ୍ତେ ଖ୍ରିଷ୍ଟୁ ଦାସୀ ସଂହରିଲେ । ୮୦୨ ।
ବାବୁ ତୁମ୍ଭର କାଳେ ନାଶ ଗଲା ସୋମବଂଶ
କେହି ବଚ୍ଚୁର ନ ଭଲ ସ୍ନେହର ଅର୍ଥ କଥ । ୮୦୩ ।
କେବଣ ବାଟେ ପୁତ୍ରରେ ବଂଶ ହୋନ୍ତି ରକ୍ଷା
ସଂସାର ଜନଙ୍କର ପୂର୍ବ ମନବାଞ୍ଛା । ୮୦୪ ।
ଦୂତ ନାରସ୍ୱେଣ ତୋତେ ବୋଲନ୍ତି ଶାସ୍ତ୍ରେ
ଅନାଦି ଗର୍ଭେ ରୁ ପଶୁ ସର୍ବକାଳେ । ୮୦୫ ।
ଯାବତ କାଳକୁ ବାବୁ କଥା ରହିଲା
ବ୍ୟାସ ପରାଏ ମହର୍ଷି ଥାନ୍ତି ବଂଶ ନାଶ ଗଲା । ୮୦୬ ।
ସମାଧି ପୁରୁଷ ରୂ ଅନ୍ୟାକାର ଚେତା
ରୁ ତ ନ ଜାଣିଲୁ ସ୍ୱେ ଗୋପ୍ୟ ଧର୍ମ କଥା । ୮୦୭ ।
ବ୍ୟାସେ ବୋଇଲେ ମାଗୋ ଶୁଣିବା ଆଦିନାରୀ
କେବଣ ବୁଦ୍ଧି ବସୁନ୍ଧରା ବଂଶ ଉଦ୍ଧାର । ୮୦୮ ।
ପାଟେଣ ପୁତ୍ର ଯେବେ ହୋଅଇ ସନ୍ତତି
ତେବେ ସେ ବଂଶକୁ ଶୁଦ୍ଧ୍ୟ ମହାକ୍ଷେତ୍ରି । ୮୦୯ ।
ସଙ୍ଗ୍ୟ ଭରିବା କି ଗୋ ସନ୍ତାନ ନିମନ୍ତେ
ସତ୍ୟବତୀ ବୋଇଲେ ହୋଇବ କାଳ କେତେ । ୮୧୦ ।
ଏକା ବଂଶ ହନ୍ତେ ଜନ୍ମୋଦୟ ଆଦିକରି ସାତ ଦୀପ ହତପାଟ
ଖ୍ୟାତି ର ଭିତରେ ନବ୍ରତ ଅଛୁ ପର ଆଠ । ୮୧୧ ।
ଏହି ଦ୍ୱାଦଶ ଦିବସରେ ଯେବେ ଉତ୍ପନ୍ନବ କୁମର
ତେବେ ସେ ବଂଶ ରକ୍ଷା ହୋଇବ ଆମ୍ଭର । ୮୧୨ ।
ବିଚିତ୍ର୍ୟୁନ୍ତ ଧାର୍ମିକ ଗୋ କହ କେବଣ ବୁଦ୍ଧି
ଶୀଘ୍ରେଣ କେବଣ ମତେ ହୋଇବ କାର୍ଯ୍ୟ ସିଦ୍ଧି । ୮୧୩ ।

ସତ୍ୟବତୀ ବୋଇଲେ ବାବୁ ଅଛଇ କଥାଏକ
ତୁ ମୋହର ନନ୍ଦନ ମୁଂ ତୋହର ମାଏକ । ୮୧୪ ।
ଶୁଭ କୁଳକୁ ବାବୁ ଉପେକ୍ଷା କର ନାହିଁ
ସମସ୍ତ ଧର୍ମ ଗ୍ରନ୍ଥ କର ପୁତ୍ର କାର୍ଯ୍ୟ । ୮୧୫ ।
କଥାଏକ କହିବି ପୁତ୍ର ନ କରିବୁ ନାସ୍ତି
ମୋହୋର ଶପଥ ବାବୁ ବୋଲନ୍ତି ସତ୍ୟବତୀ । ୮୧୬ ।
ସେ ଯେ ପରମ ପଣ୍ଡିତ ବେଦସୂକ୍ତ ମହାତମା
ଗୁରୁ ବଚନ ଲଙ୍ଘି ନାଶଗଲେ ସନକ ନାମେ ବ୍ରହ୍ମା । ୮୧୭ ।
ମାତା ପିତାର ଆଜ୍ଞା ହି ପୁତ୍ରକରି ନିସ୍ତାର
ସ୍ନେହା ଶକ୍ତିଲେ ସେ ଶିଷ୍ୟ ଅର୍ଜଇ ଅମର । ୮୧୮ ।
ସତ୍ୟେ ଅସତ୍ୟେ ଗୁରୁ ବୋଲନ୍ତି ଯେବଣ ବାଣୀ
ସ୍ନେହା ଯେବେ ବଞ୍ଚନ୍ତି ସେ ନାଶ ଯାନ୍ତି ପ୍ରାଣୀ । ୮୧୯ ।
ଯେଣୁକେ ଆଜ୍ଞା ମୋତେ ଦେବା ହୋଇ ବେଗି
ସତ୍ୟବତୀ ବୋଇଲେ ପୁତ୍ର ଶୁଣ ପରମ ଯୋଗି । ୮୨୦ ।
ଆମ୍ଭର ବଧୂ ଯେ ଅମ୍ବିକା ଅମ୍ବାଳିକା
ଏହାଙ୍କ ମେଳେ ତୁ ପ୍ରୀତ ହୋଅ ଏକା । ୮୨୧ ।
ରତି ରଙ୍ଗ କର ବାବୁ ବେନିଙ୍କର ତୁଲେ
ଏ ବଚନ ଶୁଣି ବ୍ୟାସେ ଅମ୍ଭୀଭୂତ ହୋଇଲେ । ୮୨୨ ।
ମାତା ଏ ବଡ଼ ଦୁଲଭ ଗୋ ବହୁତ ଅନ୍ତର
ଆମ୍ଭର ଲଙ୍ଘିଲେ ତ ନାଶ ଯିବ ସଂସାର । ୮୨୩ ।
ସତ୍ୟବତୀ ବୋଇଲେ ବାବୁ କମ୍ପାଇଂ ନ ଭରସୁ
ସଂସାର ଜନର ତୁ ବହୁତ ପାପ ଧଂସୁ । ୮୨୪ ।
ବିଶେଷେ ପରମ ଦାସ ଆବର କୁଳବଧୂ
ପୁତ୍ର ଉପୁଜାଇଲେ ବଂଶ ହୋଇବ ସାଧୁ । ୮୨୫ ।
ବାବୁ ତୋହୋର ବୀର୍ଯ୍ୟେ ଉପୁଜିବ ଯେବଣ ପୁତ୍ର
ଗ୍ୟାନବନ୍ତ ବଳବନ୍ତ ହୋଇବ ଭାଗ୍ୟବନ୍ତ । ୮୨୬ ।
ବାବୁ ଆମ୍ଭର ବଂଶେ ଥିବେ ଯେତେକ ପାପି
ସମସ୍ତେ ମୋକ୍ଷ ପୁତ୍ରରେ ହୋଇବେ ଅଦ୍ୟାପି । ୮୨୭ ।
ତୁ ଏ କଥାକୁ ହେଳା ନ କରସି ବାବୁ
ବଡ଼ ବହୁ ଅମ୍ବିକାର ପୁରକୁ ସ୍ନେହକ୍ଷଣି ଯିବୁ । ୮୨୮ ।

ବ୍ୟାସେ ବୋଇଲେ ମାଗୋ ମୋହୋର ହୋଇଲା ସନମତ
ତୁମ୍ଭେ ଯାଇଂ ଉଆସ ଗୋ ବଧୂ ମାନନ୍ତ । ୮୨୯ ।
ବ୍ୟାସଙ୍କୁ ମନାଇଂ ଚଳିଲେ ସତ୍ୟବତୀ
ଅମ୍ବିକାପୁତ୍ରର ପ୍ରବେଶ ହୋଇଲେକ ଯାଇ । ୮୩୦ ।
ଏକାନ୍ତେ ବସାଇଲେ ପଦ୍ମଲଭର ବେନି କୁମାରୀ
ପରମାର୍ଥ କଣେ ସତ୍ୟବତୀ ଉଆସ । ୮୩୧ ।
ମାଗୋ କଥାଏକ ପଚାରିବ କରିବ ତୁମ୍ଭେ ବେନି
ଅମ୍ବିକା ଅମ୍ବାଳିକା କରନ୍ତି ଦଇନ । ୮୩୨ ।
ତୁମ୍ଭେ ଆମ୍ଭର ଠାକୁରାଣୀ ଆମ୍ଭେ ତୁମ୍ଭର ଦାସୀ
ସ୍ୱାମିର ବଚନ ସେବକ କାହିଂ ନାଶି । ୮୩୩ ।
ମାଗୋ ଗତ ବୁଦ୍ଧିମାନ ହରାଇଲୁ ସମସ୍ତେହେଂ
ରାଜ୍ୟ ଭ୍ରଷ୍ଟ ହୋଇବ ମାଗୋ ଲାଗିଲା ସନ୍ଦେହେ । । ୮୩୪ ।
କେବଣ ବାଟେ ମାଗୋ ଭସ୍ମ ଅଙ୍କୋର
ତୁମ୍ଭେ ଯାହା ଆଗ୍ୟାଂ ଦେବ ଗୋ ପରମ ଗୁରୁ । ୮୩୫ ।
ସତ୍ୟବତୀ ବୋଇଲେ ତୁମ୍ଭେ ଦୁହେଂ ମୋହର ଦେହ ଜ୍ଞାନ
ପାପ ହୋଉ କି ପୁନ୍ୟ ହୋଉ ଦୁହେଂ ଏକମନ ହୁଅ । ୮୩୬ ।
ଅମ୍ବିକା ବୋଇଲେ ତୁମ୍ଭେ ପରମ ମାହେଶ୍ୱରୀ
ଏତେକାଳ ଗଲା ଆଗ୍ୟାଂ କୃତେଣ ତୁମ୍ଭର । ୮୩୭ ।
ଏବେ ସଖଲ ହେଲକୁ କେସନେକ ନ କରିବୁଂ ଗୁରୁବାକ୍ୟ
ଋଷ୍ଟିର କହିବା ଆମ୍ଭକଇ ଯେବଣ ଶକ୍ୟ । ୮୩୮ ।
ଆଗୋ ସ୍ୱାଷ୍ଟ୍ର ତହିଂକି ଗଲି ତୁମ୍ଭନ୍ତ ଉଆସ
ଦାସ ସହରିଲା ସେ ସତ୍ୟ ଅବଧାରି । ୮୩୯ ।
ବ୍ୟାସ ମୋହୋର ଯେ ଅଟଇ ଜ୍ୟେଷ୍ଠପୁତ୍ର
ତାହା ତୁଲେ ତୁମ୍ଭେ ହୁଅ ପ୍ରିୟ ମତ । ୮୪୦ ।
ଅମୋହ ରେତ ତାହାର ଅକ୍ଷୟେ ବୀର୍ଯ୍ୟ
ସଇନ୍ଦୁ ଜାତ ହୋଇବ ବେନି ଆତ୍ମଜ । ୮୪୧ ।
ସତ୍ୟବତୀର ମୁଖୁଂ ଯେସନ ବାକ୍ୟ ଶୁଣି
ମୂର୍ଚ୍ଛାଗତ ହୋଇ ପଡ଼ିଲେ ବେନି ବହେଣି । ୮୪୨ ।
ବେନିଭୁଜେ କୋଳ କରି ଧଇଲେ ସତ୍ୟବତୀ
ମୁଖେ ଚୁମ୍ବନ ଦେଇ ପ୍ରବୋଧନ୍ତି ମହାସତୀ । ୮୪୩ ।

ମାଗୋ ବହୁତ ଅନ୍ତର କହିଲେ ନବଘ୍ନଶ
ଜ୍ୟେଷ୍ଠ ଗୁରୁର କେମନ୍ତେ ହୋଇବୁଂ ମନୋହାଶ । ୮୪୪ ।
ମାଗୋ ଜଡ଼ବନ୍ତ ହୋଇଣ କମ୍ପା ଅନାଥ କହିଲ
ଜଳ ଅନଳ କମ୍ପା ଏକ ମେଳ କଲ । ୮୪୫ ।
ଅଗ୍ନି ସେ ଗୋ ଅଟନ୍ତି ବେଦବ୍ରହ୍ମା
ଗଙ୍ଗା ଦେବୀ ଯେ ବାମଦେବଙ୍କର ବାମା । ୮୪୬ ।
ଏ ନ୍ୟାୟେଂ ବ୍ରହ୍ମା ଯେ ରୁଦ୍ରର ତହୁଂ ଜ୍ୟେଷ୍ଠ
ଗଙ୍ଗା ଅଗ୍ନିତ କରାଇଲ ଏକ ଭେଟ । ୮୪୭ ।
ନ ଜାଣି ଜଳ ଅଗ୍ନି ଯେ ଯେତନ୍ତି ଏକ ହସ୍ତେ
ଜ୍ୟେଷ୍ଠ ଶଶୁର ଭ୍ରାତ୍ର ବଧୂ ଏକ ଯୋଗ ପାପ ଯେତେ । ୮୪୮ ।
ସେ ପାପେଣ ଦୂଷିତ ହୋଅନ୍ତି ସେ ଜନ
ମହାଦୋଷ ତାହାର ଚନ୍ଦ୍ରଗୁପ୍ତ କରନ୍ତି ଲେଖନ । ୮୪୯ ।
ସ୍ୱେକଥା ବସ୍ୱର କେସନ ନ କର ଗୋ ଶାଶୁ
ଏତେହେ ନର୍କ ପଥ ଦେଖି ଦେଖି କେସନେ କେ ପଶୁ । ୮୫୦ ।
ସତ୍ୟବତୀ ବୋଇଲେ ମାଗୋ ହସ୍ତୁଳବ ସନ୍ତଥ
ସେ ପୂଜ ସକଳ ଦୋଷ ଜଣବ ସନଶ୍ୟଥ । ୮୫୧ ।
ବ୍ୟାସଙ୍କର ଅଂଶେ ଗୋ ହସ୍ତୁଜବ ଯେବଣ ପୁଜ
ପାପ କଳଙ୍କ କ ଥିବ ଆମ୍ଭର ଗୋଜ । ୮୫୨ ।
ଉଠି ମହାମାୟେ ଧଇଲେ ବେନ ହସ୍ତ
ମାଗୋ ନାସ୍ତି ନ ଜଣବଟି ଆମ୍ଭର ଶପତ । ୮୫୩ ।
ଅମ୍ବିକା ଅମ୍ବାଳିକା ବୋଇଲେ ବସ ଗୋ ପରମ ଗୁରୁ
ଏବେ ଅସ୍ୱତ୍ରିକ ହୋଇଲୁଂ କଟାଳ କେତେ କରୁ । ୮୫୪ ।
ସତ୍ୟବତୀ ବୋଇଲେ ମାରୋ ଶୁଣ ପୂର୍ବର କଥା
ସନ୍ତାନ ଧର୍ମର ଗୋ କହଇଂ ବାରତା । ୮୫୫ ।
ଜାଲା କମଳା ବୋଲି ବେନ ଭଗ୍ନେଣୀ
ଦାସ ରଜାର ସେ ଅଟନ୍ତି ପାଟରାଣୀ । ୮୫୬ ।
ଦାସ ରଜାଏ ରାଜ୍ୟ କଲେ ଦଶ ସହସ୍ର ବରଷ ପଣସନ୍ତେ
ସନ୍ତାନ ନୋହିଲେ ସେ ଯେ ଥିଲେ ସତ୍ୟବ୍ରତେ । ୮୫୭ ।
ମାଗୋ ରଜାର ଶାପେଁ ସହୁଂ କୋହିଲେ ସନ୍ତତ
ପର ଦାରେଣି ସେ ହୋଇଲେ ବେନ ଯୁବତ । ୮୫୮ ।

ଯାହାର ସାର୍ଯ୍ୟେଣ ଅପୂର୍ବର ପୁଷ
ତାହାନ୍ତ ଯେଜ ଶୃଙ୍ଗାର କରାଇଲେ ଗୁପତ । ୮୫୯ ।

ଏମନ୍ତେହେଂ ସନ୍ତାନ ନ ପାଇଲେ ବେନି ଦେବୀ
କାଳେ ନ ମାନିଲେ ସେ ମାନବ ଗନ୍ଧର୍ବ । ୮୬୦ ।

ମଳାଶୁର ଜ୍ୟେଷ୍ଠ ଶଶୁର ଭଣଜା ଜାମାତା
ଏହାଙ୍କର କୁଳେ ରତିଯୋଗ କଲେ ଅପ୍ରମିତା । ୮୬୧ ।

ଏମନ୍ତେଣ ଯୋଗେ କରାଇଲେ ରତି
ଏକା ଦୋହିତାସ୍ତେ ମୁଂ ହୋଇଲି ଅତପତି । ୮୬୨ ।

ମାତା ବୋଇଲେ ମୁଂ ଅପୂଜାରଲି ଅସତ ବାଟେ
ରୁ ସତ୍ୟବତୀ ଥାଅ ନାହିକା ଜଳଘାଟେ । ୮୬୩ ।

ଦାସ ରଜାର ପୁଅ ନାହିଂ ମୁଂ ଏକା ଦୋହିତା
ଧର୍ମକୁ ଆଗମ କଲେ ମୋତେ ପିତା । ୮୬୪ ।

ମୁହିଂ ଦ୍ୱାଦଶ ବରଷ ହୋଇଲି ଯେତେବେଳେ
ପିତା ଆପିଲ୍ଲି ମୋତେ ଯମୁନା ନଦୀ କୂଳେ । ୮୬୫ ।

ପିତା ବୋଇଲେ ରୁଗୋ ନାବ ବାହୁଥିବୁ
ଦୁଇକୂଳ ଲୋକଙ୍କୁ ପାରକରିଦେବୁ । ୮୬୬ ।

ଧନ ଭଉଡ଼ି କିଛୁ ନ ଯେଜବୁ ଯାଚଲେ
ସୁଖେ ପାର କରିଦେବୁ ନାବରେ ବସିଲେ । ୮୬୭ ।

ପିତାର ଆଗ୍ୟାଂରେ ମୁଂ ରହିଲି ଯମୁନା ତଟେ
ସୁଖେ ପାର କରି ଦଅଇ ଜଳଘାଟେ । ୮୬୮ ।

ମାତାଙ୍କର ଅସ୍ତାପଣ ଦେଖିକରି
କେହି ପ୍ରଦାନ ମୋତେ ନୋହିଲେ ପିତା ବରି । ୮୬୯ ।

ସେମନ୍ତେ ରାଜ ଅବସେ ନାହିକାଏ ଶୋଇଥାଇଂ
ଯେତେବେଳେ ଯେ ଅଇଲେ ଦଅଇ ପାରଆଇଂ । ୮୭୦ ।

ଏମନ୍ତେ ନାବ ବାହିଲି ବେନି ବଛର
ଅନେକ ନାବରେ ଆସିଣ ବସିଲେ ପାରେଶ୍ୱର । ୮୭୧ ।

ପାରେଶ୍ୱର ବୋଇଲେ ଆମ୍ଭେ ତପସ୍ୱୀ
ଆନ କାହାକୁ ନ ବସାଅ ବାହା ନାବ ଗୋଟି । ୮୭୨ ।

ମୁହିଂ ବୋଇଲି ନାବେ ପଞ୍ଚାଶ ଜଣ ବସି
ଏକା କେମନ୍ତେ ଉଡାସ୍ତେ ହୋଇବ ମହାରୁଷି । ୮୭୩ ।

ପାରେଶ୍ବର ବୋଇଲେ ଆମ୍ଭେ କିଛୁ ହୁଂ ନୋହୁଂ ଗରୁ
ତପୋଧନ ଲୋକ ଆମ୍ଭେ ନାବେ ବସିଲେ ଡରୁ । ୮୭୪ ।
ଏକା ଆମ୍ଭନ୍ତ ନଆସି ପାଣଆଗ
ନୋହିଲେ ନାବକୁ ଆମ୍ଭେ ଯାଉଅଛୁଂ ଓହ୍ଲାଗ । ୮୭୫ ।
ବସ ହେ ଋଷି ବୋଲି ଲୋକଙ୍କୁ ବାହାର କଲି
ପାରେଶ୍ବରଙ୍କୁ ବସାଇଂ ନାବ ବାହି ନେଲି । ୮୭୬ ।
ଅନ ଜଙ୍ଘନ ମୋର ପୃଥୁଳ ସୁନ୍ଦର କାୟେ
ରୂପ ଦେଖି ମାହାତ୍ମା କଲେ ମୋତେ ଲୟେ । ୮୭୭ ।
ବଡ଼ ନାବ ସହିତେ ମୁଂ ବାହି ବାହି ଫୁଟି
ମଧ୍ୟ ନଦୀରେ ଯେ ବୁଲଇ ନାବ ଗୋଟି । ୮୭୮ ।
ଘୂମେଣ ତ୍ରିପଣ୍ଡ ହୋଇଲା ମୋର କାୟେ
ଦେହରୁ ପଣନ୍ତ ହୁଡଗଲା ବାୟେ । ୮୭୯ ।
ଋଷି ଆଗ ମଙ୍ଗେ ମୁହିଂ ପଛ ମଙ୍ଗେ
ନସୂନ ପୁରେଇ ଋଷି ମୋହର ଦେଖନ୍ତି ସ୍ତନ ଜଙ୍ଘେ । ୮୮୦ ।
କାମେଂ ବେଭଳ ସେ ହୋଇଲେ ବ୍ରହ୍ମସ୍ବଶ
ଆରମ୍ଭେ ବୋଲନ୍ତି ଆହୋ କରୁ କିନା ପାଶ । ୮୮୧ ।
ମୁହ ହେ ଦୁଇ ବରଷ ହେଲା ମୁଂ ବାହୁଂଅଛୁ ନାବ
କହୁଣସି ଦନେ ନାହିଁ ଏସନେକ ଭାବ । ୮୮୨ ।
ତୁମ୍ଭର ମାୟା ନୋହିଲେ ଟଙ୍କା ତୁମ୍ଭଙ୍କୁ ଲୋଭକଲା
ନଦୀରେ ଡେଉଁପଡ଼ ମୋହର କାସ ଗଲା । ୮୮୩ ।
ପାରେଶ୍ବର ବୋଇଲେ ତୁ ନାବ ବାହି ନ ପାରୁ
ଆମ୍ଭନ୍ତ ଅପଶ୍ରୁତ ଦେଇ ନଦୀରେ ପକାଇ ଲୋଡୁ । ୮୮୪ ।
ଟଙ୍କା ଯେବେ କହଣ କଲା ମହାଋଷି
ମୁହିଂ ନଦୀ ଭିତରେ ପଡ଼ୁଅଛୁ ଝାସି । ୮୮୫ ।
ହେ ଗଙ୍ଗା ମାତା ଗୋ କର ମୋତେ ବେଗ
ରାଜାର କୁମାରୀ ହୋଇ ସ୍ନେହକୁ ହୋଇଲା ଯୋଗ । ୮୮୬ ।
ଏତେବୋଲି ଜଳରେ ପଡ଼ନ୍ତେଣ ଝାସି
କୋଳ କରି ଧଇଲେ ପାରେଶ୍ବର ମହାଋଷି । ୮୮୭ ।
କୋଳକରି ଧରି ମୁହ ଜାନୁରେ ବସାଇଲେ
ମଦନ ଆରତେ ମୁହ ମୁଖେ ଚୁମ୍ବ ଦେଲେ । ୮୮୮ ।

କାମ ଅସାଷ୍ଟମେ ମୁନି ରମଣ କଲେ ଇଚ୍ଛା
ବଢନ୍ତି ମାହାତମା ତୋତେ ଆମ୍ଭର ବାଞ୍ଛା । ୮୮୯ ।
ଆହୋ ବଧୂଙ୍କ ଅନ୍ତରେ କହନ୍ତି ସତ୍ୟବତୀ
ଆମ୍ଭର ଚରିତ ମାଗୋ ସ୍ନେହନେକ ସାଧ । ୮୯୦ ।
ପାରେଶ୍ବର ବୋଇଲେ ଆମ୍ଭେ ମାସ୍ବା କଲୁଂ ତୁମ୍ଭ
ତୁଗୋ ସତ୍ୟବତୀ ମେଣ ଦଅ ଆମ୍ଭଙ୍କୁ । ୮୯୧ ।
ମୁହିଂ ବୋଇଲ ମୁନି ହେ ଗୁଢ଼ ଗୁଢ଼ ମୁଖୁ
ଲଜ୍ୟାକ ନ ପାଅ ମୋତେ ଶୃଙ୍ଗାର ମାଗିବାକୁ । ୮୯୨ ।
ମୁହିଂ ବାଳସ୍ତ୍ରିସ୍ତ ଅବସ୍ଥଇତ ଅରଜବତୀ
ଆମିଷେ ବଢ଼ିଲୁଂ ଆମ୍ଭେ ଅଷ୍ଟ କଇବ୍ରତୀ । ୮୯୩ ।
ପରସ୍ତ୍ରିସ୍ତ ବ୍ରାହ୍ମଣର ସ୍ତ୍ରିସ୍ତ ଆବର ଗୁରୁପତ୍ନୀ
ହରଲେ ଯେତେକ ପାତେକ କହ ମୁନି । ୮୯୪ ।
ଅଗ୍ୟାନ ଜନକୁ ତୁମ୍ଭେ କର ଗ୍ୟାଂତା
ତୁମ୍ଭର ଅନ୍ୟାସ୍ବର ଅନୀତ ଲେଭ ଅପ୍ରମିତା । ୮୯୫ ।
ଅଗ୍ୟାନ ପ୍ରାଣିଙ୍କି ବହୁତ ଦୋଷ ନାହିଂ
ପଣ୍ଡିତ ହୋଇ ପାପ କଲେ ତାହାକୁ ମୁକତ କାହିଂ । ୮୯୬ ।
ଗଣ୍ଡୁଷ କର ବୋଲି ମୁନି ଧଇଲେ ମନ୍ତ୍ରଚକ୍ର
ହୋଇଲୁ ରଜବତୀ ଭଗ ତୋହୋଉ ଗନ୍ଧ । ୮୯୭ ।
କମଣ୍ଡଳ ଜଳେ ମୁନି କରାଇଲେ ସ୍ନାହାନ
କସ୍ତୁରୀ ଗନ୍ଧ ଆମୋଦିଲା ଏକ ଯୋଜନ । ୮୯୮ ।
ଗନ୍ଧ ସମୀର ବହିଲ ଯୋଜନ ପରଯନ୍ତେ
ପାରେଶ୍ବର ଯୋଜନଗନ୍ଧା ନାମ ଦେଲେ ମୋତେ । ୮୯୯ ।
ଯେବଣ ଜଳେ ତୁ ସ୍ନାହାନ କରୁଥାଉ
କପୁର ବାସ ଯେଣେ ଗଙ୍ଗା ଯୋଜନ ପରଯନ୍ତେ ବହୁ । ୯୦୦ ।
ଆମ୍ଭେ ବ୍ରହ୍ମଋଷି ତୋତେ କଲୁଂ ଶ୍ରଧା
ଆଜହୁଂ ନାମ ତୋହର ହୋଉ ଯୋଜନ ଗନ୍ଧା । ୯୦୧ ।
ସତ୍ୟବତୀ ବୋଇଲେ ଶୁଣହେ ପାରେଶ୍ବର
ଆକାଶେ ଉଦେ ଦେଖ କରତାର । ୯୦୨ ।
ଦିବସେ ଶୃଙ୍ଗାର କଲେ ବଡ଼ ଦୋଷ
ଶିରଚ୍ଛେଦନ ଶାସ୍ତି ଦିଅଇ ଜଗନ୍ନାଥ । ୯୦୩ ।

ପାରେଶ୍ୱର ବୋଇଲେ ନ ଡରୁ କରତାର
ଧୋତ ଅନ୍ତରୀକ୍ଷେ ବୁହାଇଲେ ହୋଇଲା ଉହାଡ଼ । ୯୦୪ ।
ଦିବସେ ଶୃଙ୍ଗାର କଲେ ଆୟୁଷ୍ୟ ହୋଏ କ୍ଷୟେ
ସନ୍ତାନ ଉତପତ ହୋଇଲେ ଦୁଷ୍ଟ ହୋନ୍ତି ପୋଷ୍ୟେ । ୯୦୫ ।
ଦୋହିତା ହୋଇଲେ ହୋଅଇ ମାହାରୋଗି
ହତମୂର୍ଖ ହତଆୟୁଷ୍ୟ ହୋଅଇ ନାଶ ଯାଇ ବେଗି । ୯୦୬ ।
ଦିବସ ଶୃଙ୍ଗାରେ ମୂନି ସ୍ୱେତେକ ଅବସ୍ଥା
ତୁମ୍ଭେ ବ୍ରହ୍ମଋଷି ମୁଂ କିସ ଗ୍ୟାଂତା । ୯୦୭ ।
ଲୋକ ଯେ ପୁରଣ ଅଛନ୍ତି ଦୁଇ କୂଳେ
ରାଜାକୁମାରୀ ହୋଇ କେମନ୍ତେ ପଶିବ ଅନ୍ୟାସ୍ଥରେ । ୯୦୮ ।
ତେତକ୍ଷଣେ ମାୟା ସେ କଲେ ବ୍ରହ୍ମଋଷି
ବଇଶାଖ ମାସେ ଯେ ଘୋଟିଲା କୁହୁଡ଼ି । ୯୦୯ ।
ଋଷିଙ୍କ ମନ୍ତ୍ରବଳେ ନାବ ରହିଅଛି ମଧ୍ୟନଦୀ
ବେଦ ବୁଲାଣ୍ଡ ନ ଦଶଇ ମନ୍ତ୍ର ଭେଦ । ୯୧୦ ।
ଧର୍ମ ନାଉକା ଅଗାଦ ଜଳ ଭିତରେ
ପାପକୁ ଭ୍ରାନ୍ତି ନ କଲେ ପାରେଶ୍ୱରେ । ୯୧୧ ।
କାମଦେବ ବୋଲଣ ସେ ଯୌବନ ମାହାତମା
ମେଣ୍ଟି ନ ପାର କୋପେ ଶାପ୍ୟ ଦେଲେ ବେଦବ୍ରହ୍ମା । ୯୧୨ ।
ଧର୍ମଗ୍ରନ୍ଥ କୋଳେ ଧଇଲେ ବ୍ରହ୍ମଋଷି
ଯୋଜନଗନ୍ଧା ତୁଲେ ଶୃଙ୍ଗାର ରସେ ପଶି । ୯୧୩ ।
ବିଶେଷେ ମାହାତ୍ମା ସେ ଗଢ ଶାହାସ୍ତେ ନିର୍ଜିତା
ଅନେକ ରସେ ଶୃଙ୍ଗାର ବଢ଼ିଲା ଅପ୍ରମିତା । ୯୧୪ ।
ମେଷ ମାସ ଶୁକଲ ପକ୍ଷ ତୃତୀୟା
ଋଷିଙ୍କର ଶୃଙ୍ଗାର ସହଇ ସତ୍ରିୟା । ୯୧୫ ।
ଭୃଗୁବାର ତଇତୁଲ୍ୟ କରଣ ଶୁଭ ନାମେ ଯୋଗ
ମେଷ ସଂକ୍ରାନ୍ତିକ ସପତ ଦିନ ଭୋଗ । ୯୧୬ ।
ନବମ ଘରେ ଚନ୍ଦ୍ର ବୃହସ୍ପତି ଏକାଦଶମେ
ଚଞ୍ଚଳା ନାମେ ଯୋଗିନୀ ଅମୃତ ନାମେ କାଳ ବ୍ରହ୍ମେ । ୯୧୭ ।
ମାହେନ୍ଦ୍ର ଯୋଗେ ଉତପତ ହୋଇଲକ ବଳା
ଅତିଅନ୍ତ ସୁନ୍ଦର ସେ କୃଷ୍ଣବର୍ଣ୍ଣ କଳା । ୯୧୮ ।

ସଇନ୍ଦୁ ପୁର୍ବେକ ହୋଇଲ ଝଟପଟ
ଦେଖିଣ ସାନନ୍ଦ ହୋଇଲେ ସତ୍ୟବତୀ । ୯୧୯ ।
ପୁତ୍ରକଇ କୋଳେ ଧଇଲେ ପାରେଶ୍ବର ମହଋଷି
ମାହେନ୍ଦ୍ର ଯୋଗ ହୋଇଲ ରୋହେଣୀ ବୃଷ ରାଶି । ୯୨୦ ।
ପୁତ୍ରକଇ କୋଳେ ଧଇଲେ ପାରେଶ୍ବର
ବ୍ୟାଳେଲ ରୂପ ଦେଖି ନାମଦେଲେ ବ୍ୟାସ ମୁନିବର । ୯୨୧ ।
ପୁତ୍ର କୋଳେ ଧରି ଝଛନ୍ତି ପାରେଶ୍ବର ମୁନି
ରୋଦନ ସରୂପେ ପୁତ୍ର କରଇ ବେଦଧୁନି । ୯୨୨ ।
ଦେଖିଣ ମାହାମ୍ବାର ନ ଫୁରଇ କଛୁ
ମାହାବ୍ରହ୍ମ ଭେଦ ଅଭସ୍ତେ ଅଜପାଲସ୍ତେ ବଛୁ । ୯୨୩ ।
ମାହାରମ୍ୟାମ ପୁତ୍ର ଦେଖି ଗଙ୍ଗା ଲୋଭ କଲ
ଭଡ଼ ଭଡ଼ କରି ନାବ ବୁଡ଼ାଇଣ ଦେଲ । ୯୨୪ ।
ବୁଡ଼ନ୍ତେ ନଉକା ଖସିଲେ ବ୍ରହ୍ମସତ
ନଦୀ ଭିତରକୁ ପୁତ୍ର ପକାଇଲେ ତଡ଼ଠ । ୯୨୫ ।
ଅଗାଧ ଗର୍ଭରେ ପଡ଼ିଲ ବାଳ ଶିଶି
ଅନାଦ ତୋଷ୍ଯା ସମ୍ଭାଳିଲ ମୁନି ବ୍ୟାସ । ୯୨୬ ।
ଗଙ୍ଗାକୁ ଲଗିଲ ସେ ମାହା ତେଜ ଜାଳା
ଝାସେଣ ଗ୍ରହିଲ ସେ ଅନାଦ ଚଞ୍ଚଳା ୯୨୭ ।
ଅଗାଧ ଗର୍ଭରେଣ ପଡ଼ିଲ ବାଳ ଶିଶି
ଅନନ୍ତ କୋଟି ବ୍ରହ୍ମାଣ୍ଡ ଭେଦ ବଇକୁଣ୍ଠେ ଯାଇଂ ବସି । ୯୨୮ ।
ମାହାବ୍ରହ୍ମ ଭେଦ ସେ ବାଳତନସ୍ତେ
ଅନ୍ୟାକାର ଦେଖିଲ ସେ ଅନନ୍ତ ଯୋଗ ଲସ୍ତେ । ୯୨୯ ।
କୋଳ କରି ଧଇଲେ ସେ ପୁରୁଷ ଅନ୍ୟାକାର
ହାନହେଣ ଗୋପ୍ୟ କଲେ ହୃଦର ଭିତର । ୯୩୦ ।
ପୁର୍ଣ୍ଣ ପୁରୁଷ ଦେଖିଲ ସେ ବାରଲ ବର୍ଣ୍ଣଚନ୍ଦ୍ର
କୋଟିସ୍ତେ ଅବତାର ହୋଇଲେକ ପ୍ରସନ । ୯୩୧ ।
ସମସ୍ତ କୁତୋହଳ ଦେଖାଇଲ ଅନାଦ
ଶୂନ୍ୟ ପୁରୁଷ ଗର୍ଭରେ ପଶି ମହାମନ୍ତ୍ର ସାଧି । ୯୩୨ ।
ଶୂନ୍ୟକୁ ଶୂନ୍ୟ କଲକ ଲେଖନ
ଅକାଳେ ଭିଆଇଲ ଭୂତ ଭବିଷ୍ୟ ବର୍ତ୍ତମାନ । ୯୩୩ ।

ବାହୁଣ ମନ୍ତ୍ର କହିଲ ଅନୁକ୍ରମେ
ଆଗ୍ୟାଂ ହୋଇଲ ସୃଷ୍ଟି ବିସ୍ତାର କର ଜଗତେ । ୯୩୪ ।
ଅଘଟଣ ଅନ୍ୟାକାର ଅଚ୍ୟୁତ ଭୁବନ
ସେଥେ ଶୁଣନ୍ତା ନାହିଂ ତୋହୋର ଅର୍ଥମାନ । ୯୩୫ ।
ଶୁଣ ଗୋ ବଧୂମାନେ ବୋଲନ୍ତି ସତ୍ୟବତୀ
ଏତେ ବାଟବେଣ ହାଦେ ସନ୍ତାନ ଉତପତ୍ତି । ୯୩୬ ।
ବାରତା ପାଇଣ ଅଇଲ ଡାସ ସ୍ୱୟେ
ପାରେଶ୍ୱରଙ୍କୁ ଆଣି ମୋତେ ପ୍ରଦାନ କରାୟେ । ୯୩୭ ।
ଆମ୍ଭେ ଆଦଜନ୍ମେ ଅଟୁଂ କଇବର୍ତ୍ତୀ
ବ୍ୟାସ ବଷାଇଲ ଅଗତ୍ତ ଅକାତ । ୯୩୮ ।
ମାହାବ୍ରହ୍ମ ଜାଣି ସମସ୍ତ ସୃଷ୍ଟି କଲ
ସେ ବେଦବ୍ୟାସ ଅନେକ ପୁରୁଷ ଉଧରିଲ । ୯୩୯ ।
ମାଗୋ ବ୍ୟାସଙ୍କର ବୀର୍ଯ୍ୟେ ଉପୁଜବ ଯେବଣ ପୁତ
ବଳବନ୍ତ ଧାର୍ମିକ ହୋଇବ ବୀର୍ଯ୍ୟବନ୍ତ । ୯୪୦ ।
ତୁମ୍ଭେ ଆନ କିଛୁ ନ ଧର ଗୋ ମନେ
ପରମଗତ ଲଭିବ ଗୋ ବ୍ୟାସଙ୍କ ପ୍ରସନ୍ନେ । ୯୪୧ ।
ଅମ୍ବିକା ବୋଇଲେ ମାୟେ ଶୁଣ ସତ୍ୟବତୀ
ପ୍ରିୟଜନ୍ମ ଆମ୍ଭେ ଅଟୁଂ ମନ୍ଦ ଜାତ । ୯୪୨ ।
ସଦା ଅଣଛୁଟ ଅଜାତ ଅନିର୍ଯ୍ୟା
ସମସ୍ତ ଧଂସିଲୁ ନାମ ସତନ୍ତ୍ରିୟା । ୯୪୩ ।
ମଦବାପାନେ ହୋଉଂ ଅସମ୍ଭାଳ
ପର ପୁରୁଷ ରୂପବନ୍ତ ଦେଖିଲେ ହୋଉଂ ମତଭୋଳ । ୯୪୪ ।
ତେଣୁ କଣ ପ୍ରମଦା ନାମ ଯେ ଆମ୍ଭର
ଅନୁକ୍ରମେ ଇଛାକରୁ ପୁରୁଷ ସୁନ୍ଦର । ୯୪୫ ।
ଆମ୍ଭେ ଅବା ଇଛାକଲୁ ଅନର୍ଥାପି
ସେ କମ୍ପା ଲଙ୍ଘିବେ ବ୍ୟାସ ପଣ୍ଡିତ ମହାତପି । ୯୪୬ ।
ସତ୍ୟବତୀ ବୋଇଲେ ତୁମ୍ଭର ଇଛା କଲେ
ସେହିକ୍ଷଣି ଆଣିମି ବ୍ୟାସଙ୍କୁ ତୁମ୍ଭର ବଚନ ପାଇଲେ ।୯୪୭ ।
ବୋଲନ୍ତି ବଧୂମାନେ ଏଥେ ଯେତେ ପାତେଙ୍କ ହୋଇ
ସେ ପାତେକ କାହେଣି କେ ହୋଇବ ଗୋସାଇଂ । ୯୪୮ ।

ସତ୍ୟବତୀ ବୋଇଲେ ମୁଂ ଭେଟାଇଅଛୁ ତୁମ୍ଭଙ୍କୁ
ଏ ପାପ ପୁଣ୍ୟ ଗୋ ଲାଗଇ ସବୁ ମୁଙ୍କୁ । ୯୪୯ ।

ଯଦ୍ୟପି ବଧୂମାନେ ପଶନ୍ତି ଅନ୍ୟବାଟେ
ଗୁରୁ ପତ୍ନୀମାନେ ତାଙ୍କୁ ରଖନ୍ତି ଆକଟେ । ୯୫୦ ।

ତୁମ୍ଭେ ଯେବେ ଭିଆଣ କଲଟି ଏମନ୍ତ
ତୁମ୍ଭର ବଚନେ ଆମ୍ଭେ କଲୁଂ ସନମତ । ୯୫୧ ।

ବଧୂନ୍ତି ଛଆଣ ଚଳିଲେ ସତ୍ୟବତୀ
ବ୍ୟାସନ୍ତ ସଙ୍ଗେ ଘେନି ଅଇଲେ ଜଣାଗୁଢ । ୯୫୨ ।

ଅମ୍ବିକା ଭୁବନେ ଯାଇଁ ହୋଇଲେ ପ୍ରବେଶ
ସତ୍ୟବତୀ ଛଆଣ ପେଷିଲେ ବେଦବ୍ୟାସ । ୯୫୩ ।

ଶୃଢଲେକ ସୁନ୍ଦରୀ ଦିବ୍ୟ ପଲଙ୍କେ
ରମ୍ୟସ୍ଥାନ ମଧ୍ୟରେ ପ୍ରବେଶ ମୁନି ଯେବେ । ୯୫୪ ।

ବ୍ୟାସଙ୍କୁ ଦେଖିଣ ସେ ଯେ ଭୟେ କଲା ସତୀ
ଶେଯ୍ୟାକୁ ବଦନ କରି ଶୁତିଲା ଯୁବତୀ । ୯୫୫ ।

ବ୍ୟାସେ ଶଜେ କଲେ ପଲଙ୍କ ଉପରେ
ଅଭଙ୍ଗରମଣ ପୁରୁଷ ଇଚ୍ଛିଲେ ଶୃଙ୍ଗାରେ । ୯୫୬ ।

ପରମ ଗୁରୁ ଦେଖି ଦେବୀ କଲେ ମହାଭୟେ
ଶ୍ୱଶୁର କମ୍ପଇ ତାର କଦଳୀ ପତ୍ର ପ୍ରାୟେ । ୯୫୭ ।

ମହାସଲଜ୍ଜିତ ବ୍ୟାସ ତପସ୍ୱୀ
କାମ ବିଭଳତେ ହୋଇଲେ ଧ୍ୟାନ ଭ୍ରଷ୍ଟି । ୯୫୮ ।

ଅମ୍ବିକାର ମେଳେଣ ବ୍ୟାସ ମହର୍ଷି
କୋଳକରି ମାହାତମା ଧଇଲେ ଆନ୍ତେଷି । ୯୫୯ ।

ଆରେ ପରମ ବଧୂ ଉଠ ଗୋ ମାନେନି
ଶଯନେ ଉତ୍ତର କହନ୍ତି ବ୍ୟାସ ମହାମୁନି । ୯୬୦ ।

ଯୋଗ ତେଜି ମାହାତମା ମଦନ ରସ ଭୋଳେ
ଅମ୍ବିକା କନ୍ୟାକରି ଧଇଲେ ମୁନି କୋଳେ । ୯୬୧ ।

ସଲଜ୍ଜିତ ସଂଭ୍ରମେ ମାନନୀ ମାନବତୀ
ହେଠ ବଦନେ ବସିଲା ମନେ ମହାକ୍ରୋଧ । ୯୬୨ ।

ଅନେକ ସ୍ତୁତି ପଢିଲେ କହନ୍ତି ମୁନି ବ୍ୟାସେ
ନ ଦିଅଇ ସମସ୍ୟା ନ କହଇ ହରଷେ । ୯୬୩ ।

ଦ୍ୱାରେଣ ଲଗି ଯେ ଅଛନ୍ତି ସତ୍ୟବନ୍ତି
ସେ ଧର୍ମ ଦେବତା ଦୁର୍ଦ୍ଧାଂଙ୍କର ବନ୍ଧୁ ପୀରତ । ୯୬୪ ।
କାମଦେବଙ୍କୁ ସୁମରଣା କରନ୍ତି ଦେବୀ ଧ୍ୟାନେ
ଜଗମୋହନ ସ୍ୱରୂପକୁ ସ୍ତୁତି କଲେ ପଞ୍ଚମନେ । ୯୬୫ ।
କମଳାର ନନ୍ଦନ ଜୟତୁ ଅନଙ୍ଗ
ଯୋଗେଣ ନଜନ୍ତ ସୁ ମୁନିଜନ ତପ ଭଙ୍ଗ । ୯୬୬ ।
କନ୍ଦର୍ପ ସୁନ୍ଦର ମୁନି ଜନଙ୍କର ଲକ୍ଷ୍ୟେ ଭ୍ରାନ୍ତ
ସ୍ତ୍ରିଶ ସ୍ୱରୂପ ସମସ୍ତଙ୍କର ଦର୍ପ ଖଣ୍ଡୁ । ୯୬୭ ।
ଜୟତୁ ଅନଙ୍ଗ ସୁନ୍ଦର ପୁଷ୍ପଧନୁ
ମାହାବ୍ରହ୍ମ ସାଧନ ନାସ୍ୱସ୍ୱେଣଙ୍କର ତନୁ । ୯୬୮ ।
ଶ୍ରୀହସ୍ତେ ଶୋଭାବନ ତୋହର ପୁଷ୍ପ ପଞ୍ଚୁବାଣ
ଯୁବାଜନ ଦର୍ପ ସୁ ମର୍ଦ୍ଦନ୍ତା ମସ୍ତାଣ । ୯୬୯ ।
ରଥର ବଲଭ ଚରଣେ ନମସ୍ତେ
ବଜେକର କାମଦେବ ଅମ୍ବିକାର ଗାଣେ । ୯୭୦ ।
ସୁ ଦେବ ସସାରର ଅଷ୍ଟୁ ହୃତକାଶ
ଛଡ଼ଗରୁ ସ୍ୱେକ୍ୟ କରନ୍ତା ସୁ ପୁଷ୍ପ ସ୍ୱପଧାଶ । ୯୭୧ ।
ମଦନ ମାଦନ ତୁହ୍ମ ଅମ୍ଳନ ଧଞ୍ଚୁଶର
ସୁ ଦେବ ତପଭଗ୍ନ କଲୁ ତ୍ରିପୁରାନ୍ତକର । ୯୭ ।
କୁମାର ସମ୍ଭବ ହୋଇଲକ ତୋହୋରେ
ତାରକା ବଧକଲ୍ଲ କାର୍ତ୍ତିକ ଛଡ଼ଶିରେ । ୯୭୩ ।
ତାରଣ କାରଣ ସୁ ସୁଧାରଣ ଦଇବତ
ତରୁଣ ନାସ୍ୱସ୍ୱେଣ ସୁ ସକଳ ବର୍ଦ୍ଧିତ । ୯୭୪ ।
ଶ୍ରୀବତ୍ସ ନନ୍ଦନ ତୋହୋର ଚରଣେ ନମସ୍ତେ
ବନସ୍ଥ ଶୃଙ୍ଗମୁନି ସାସେଲ ଦାସ ନତ୍ୟେ । ୯୭୫ ।
ବଦସ୍ମନ୍ତ ଅଗସ୍ତି ଶୁଣ ବଇବସୁତ ମନୁ
ଯାହା ସୁ ପୁତ୍ରଙ୍କଲୁ ଶତମନୁର ତନୁ । ୯୭୬ ।
ଅନେକ ସ୍ତୁତି ସହସ୍ରଂ କଲେ ଯୋଜନଗନ୍ଧା
ଶୁଣିଣ ପରମ ସାନନ୍ଦ ପୁଷ୍ପଧନୁ ଯୋଧା । ୯୭୭ ।
ଅମ୍ବିକାସ୍ୱେ ପୀଡ଼ିଲ୍ଲ ଅନଙ୍ଗ ସୁନ୍ଦର
ଭେଦିଲ୍ଲ ମସ୍ତାଣ ବାଣ ପଞ୍ଚଶର । ୯୭୮ ।

କାମ ଅପାଷ୍ଟମେଣ ପଣ୍ଡିତଙ୍କ ସୁବଟ
ବ୍ୟାସଙ୍କର ମେଳେ ସେ ଇଚ୍ଛା କଲା ରଙ୍ଗ । ୧୭୯ ।
ଆଦ ମହେଶ୍ବର ସେ ବ୍ୟାସ ମାହାମୁନ
ଜନ ମନରେ ଶୃଙ୍ଗାର ବଢାଇ କାମିନୀ । ୧୮୦ ।
ଅଛସ୍ତେ ମାହାତମା ସେ ଅବସ୍ତେ ଅଜସ୍ତେ
ନ ଚଳଇ ମାହାରସ ପାଷାଣର ପ୍ରାସ୍ତେ । ୧୮୧ ।
ବଢ଼ିଲା ଶୃଙ୍ଗାର ସେ ପ୍ରାକର୍ମେ ବଳବନ୍ତା
ଚଳଇ ମାହାରେତ ପ୍ରତାପ୍ୟାଂ ଶକତା । ୧୮୨ ।
ପରମ ହାନନ୍ଦ ବ୍ୟାସଙ୍କର ପଣ୍ଡୁ ଆତ୍ମା
ଦୃଢ଼ କରଣ ସେ ଭକ୍ତଲେ ମାହାତ୍ମା । ୧୮୩ ।
ଯଦ୍ୟପି ଶୃଙ୍ଗାର ହୋଇଲା ବେନ ରଙ୍ଗେ
ଲଜ୍ୟାଭର ସୁନ୍ଦରୀ ନ ଛୁଇଁଲା ତାର ଅଙ୍ଗେ । ୧୮୪ ।
ମିଥୁନ ମାସ ଅର୍କ ବାର କୃଷ୍ଣପକ୍ଷ ଯସ୍ତୋଦଶି
ଅମ୍ବିକା ମେଳେ ଶୃଙ୍ଗାର କଲେ ବ୍ୟାସ ମହଋଷି । ୧୮୫ ।
ଏସନେକ ଶୃଙ୍ଗାର ରସ ଅସ୍ବାଦଣ ଦଣ୍ଡ
ଛୁଇଁଲା କାମଦେବ ଚନ୍ଦ୍ର ଅର୍ଦ୍ଧ ଖଣ୍ଡ । ୧୮୬ ।
ତଳଙ୍କ ୱାପଁ ସେ ପ୍ରସର ହୋଇଲା ବନ୍ଦ
ଅପାଷ୍ଟମେ ସୁନ୍ଦେଶ୍ୱ ହୋଇଲା ରଙ୍ଗଇନ୍ଦୁ । ୧୮୭ ।
ସହ୍ନ ନ ପାରି କେତେକ ବହ୍ନଇ ବେନ ଅକ୍ଷି
ସେତି ପେତେକାଳେ ଚକ୍ଷୁ ବୁଜିଲା ଶଶିମୁଖୀ । ୧୮୮ ।
ମାହାବ୍ରହ୍ମ ଭେଦ ଛୁଇଁଲା ମୂନ ସ୍ୱାର୍ଥ
ଅମୋଘ ରେତ ପଡ଼ନ୍ତେ ବାଲ ହୋଇଲା ପ୍ରାଣ ବସର୍ଜ । ୧୮୯ ।
ପ୍ରାଣତେଜ୍ୟା ହୋଇଣ ପଡ଼ିଲା ଯୁବତ
କୋଳକରି ଧଇଲେ ପଣ୍ଡିତ ଭଗ୍ୟାଂସତ । ୧୯୦ ।
ଅପାଷ୍ଟମେ ସୁନ୍ଦେଶ୍ୱ ନ ପାଇଲା ଚେତ
ସଇନ୍ଦୁ ପ୍ରନେକ ହୋଇଲା ଉତପତ । ୧୯୧ ।
ପୃଥ୍ୱୀର ମଧ୍ୟେ ସେ ପଡ଼ିଲାକ ବାଳ
ପାଦ ଘାତେ ମେଦନୀ ହୋଇଲା ଟଳମଳ । ୧୯୨ ।
ସୁଦ୍ଧ ପ୍ରସବଣ ଅମ୍ବିକା ଜାଣି ଗଲା
କୋଳ କରି ମାହାତମା ପୁଅକୁ ଧଇଲା । ୧୯୩ ।

ପୁତ୍ରଘେନ ହୃଦେ ଲଗାଇଲେ ମୂନମୂର
ତୋଷେଣ ବୋଇଲେ ଯେ ଶରୀର ବକ୍ର ହୋଉ ତୋହୋର । ୯୯୪ ।
ଝାଡକାରେ ସତ୍ୟବତୀ ପଶିଲେ ଭିତରକୁ
ପୁତ୍ରଗୋଟି ବ୍ୟାସ ସମର୍ପିଲେ ମାତାଙ୍କୁ । ୯୯୫ ।
ପୁତ୍ରକୁ କୋଳେ ଦେଇ ସେ ମୁନିବର ଉତ୍ତମା
ଶୂନ୍ୟେଣ ଅନ୍ତର୍ଧାନ ହୋଇଲେ ମାହାତମା । ୯୯୬ ।
ପୁତ୍ରଗୋଟି କୋଳେ ଧରି ବିସ୍ମରନ୍ତି ସତ୍ୟବତୀ
ବତିଶ ଗୁଣେ ସୁନ୍ଦର ସେ ଅନଙ୍ଗ ମୂରତି । ୯୯୭ ।
ରୂପଗୁଣ ବତିଶ ଦେଖି ଗୃହିଁଲେ ପୁତ୍ରକୁ
ତଦନ୍ତ କରି ଗୃହିଂଲେ ବେନି ନୟନକୁ । ୯୯୮ ।
ସୁର ସୁନ୍ଦର ସାର୍ଥକ ମାହାବଳା
ଦେଖିଲେ ବେନି ଚକ୍ଷୁରେ ନାହିଂ ତୋଳା । ୯୯୯ ।
ପୁଣ ପୁଣ ନିରେଖନ୍ତି ଦେଖି ଅତିଅନ୍ତ ଶରଧା
ଦେଖି ବିଷାଦ ହୋଇଲେ ବେନି ଚକ୍ଷୁ ଅନ୍ଧା । ୧୦୦୦ ।
ହରଷ ହୋଇ ଦେଖି ବିରସ ମାହାକଷ୍ଟ
ସେ ପୁତ୍ରର ନାମ ଦଲେ ଧୃତରାଷ୍ଟ୍ର । ୧୦୦୧ ।
ଅମ୍ବିକା ପଡିଅଛୁ ମୃତ୍ୟୁ ଶବ ହୋଇ
ସାହେ୍ୟଂତନୁ ଭୂଣସଙ୍ଗ ଦେଖି ପ୍ରବେଶ ହୋଇଲେ ଯାଇ । ୧୦୦୨ ।
ପୁତ୍ର ଜାତ ଶୁଣି ଅନେକ ଉତ୍ସବ ଆନନ୍ଦ
ନୟନ ଅନ୍ଧ ଦେଖି ହୋଇଲେ ବିଷାଦ । ୧୦୦୩ ।
ଅନେକ ଦାନ ଯେ ଦେଲେ ପୁତ୍ରଯୋଗେ
ଅମ୍ବିକା ପାଟ ଦେଖାଙ୍କ ଭାଡ଼ିନେଲେ ବେଗେ । ୧୦୦୪ ।
ଚିତା ଆରୋପଣ କଲେ ଯେ ଶମଶାନେ
ପ୍ରେତ କାର୍ଯ୍ୟ କରାଇଲେ ଶାହାସ୍ତ୍ର ବିଧାନେ । ୧୦୦୫ ।
ଅଦ୍ଭୁତ ବ୍ରତ ପାରଣା କଲେ ଏକାଦଶେ
ପୁତ୍ର ପ୍ରତିପାଳନ୍ତି ହରଷ ବିରସେ । ୧୦୦୬ ।
ପୁତ୍ର କୋଳେ ଧରି ଖେଳନ୍ତି ସତ୍ୟବତୀ
ଏତେ କଷ୍ଟେ ସନ୍ତାନ କରାଇଲି ଉତ୍ପତି । ୧୦୦୭ ।
ଭାଳେଣି ନନ୍ଦନ ରାଜ୍ୟକୁ ନୋହିଲା ଯୋଗ
କାହିଂର ଫଳିବ ସୋମବଂଶ ଏତେକ ବିଯୋଗ । ୧୦୦୮ ।

ପଣ୍ଡିତଙ୍କର ମୁଖୁଂ ଶୁଣିଲେ ତଥ୍ୟବାଣୀ
ଜାତ ଅନୁକୂଳ ଯୋଗ ବେଳ ଜାଣି । ୧୦୦୯ ।
ପୁତ୍ରର ହୋଇଲା କୁନ୍ତଳା ବୃଷ ରାଶି
ଶୁକ୍ରର କ୍ଷେତ୍ରେ ବ୍ରହ୍ମ ସ୍ୱକ୍ଷମ ଜନ୍ମ ଆସି । ୧୦୧୦ ।
ଶୁଣନ୍ତୋ ଯୁଗପଦ ବଦନ୍ତି ଅଗସ୍ତି
ଅନ୍ଧ ପୁତ୍ର ଦେଖି ବିଷାଦ ସତ୍ୟବତୀ । ୧୦୧୧ ।
ରାଜ୍ୟକୁ ଯୋଗ୍ୟ ନୋହିଲା କୁମର
କେ ଦଇବ ସୃଜନ କଲୁସି ଈଶ୍ୱର । ୧୦୧୨ ।
ପୁଣି ବ୍ୟାସଙ୍କୁ ସ୍ମରଣଲେ ଦେବୀ ଧ୍ୟାନେ
ମାତାଙ୍କର ଅଗ୍ରେ ପ୍ରବେଶ ମହାମୁନେ । ୧୦୧୩ ।
ପୁତ୍ରକୁ କୋଳେ ଦେଲେ ତାସ ରାଜାର କୁମାରୀ
ବ୍ୟାସେ କୋଳେ ଧଇଲେ ପୁତ୍ରକୁ ସ୍ନେହ କରି । ୧୦୧୪ ।
ବାବୁ ଏତେ କଷ୍ଟେ ଉପୁଜାଇଲୁ ସନ୍ତତ
ନୟନ ଭ୍ରଷ୍ଟ ହୋଇଲା ରାଜ୍ୟକୁ ଅଗତ । ୧୦୧୫ ।
ବାବୁ ଶରୀର ମଧ୍ୟେ ସାର ଅଟଇ ବେନି ଚକ୍ଷୁ
ନୟନ ଭ୍ରଷ୍ଟ ହୋଇଲା ମନେଣ କସ ବାଞ୍ଛୁ । ୧୦୧୬ ।
ଏତେକ କୃପା ଯେ କଲୁ ବ୍ରହ୍ମଋଷି
ଏମନ୍ତେ ହେଂ ବଂଶ ହୋଇଲା ଉଦାସି । ୧୦୧୭ ।
କ୍ରୋଧ କରି ସତ୍ୟବତୀ କହନ୍ତି ବ୍ୟାସଙ୍କୁ
ପୁଣିହିଂ ଥରେକର ବାବୁ ଅମ୍ବାଳିକା ପୁରକୁ । ୧୦୧୮ ।
ତାହାର କୂଳେ ବାବୁ ବଢ଼ାଅ ପୀରତ
ପୁତ୍ର ଜାତ ହେଉ ବାବୁ ରାଜ୍ୟଧର ମୂଢ । ୧୦୧୯ ।
ଶୁଣିଣ ବିରସ ହୋଇଲେ ଭଗବନ୍ତ
କେତେ କରାଉ ମୋତେ ମାଗୋ ଅନେକତ ପାପନ୍ତ । ୧୦୨୦ ।
ସତ୍ୟବତୀ ବୋଇଲେ ବାବୁ ବେଳେକ ହରିଲୁ
ଆବର ପାପକୁ ତୁ କମାଇଂ ଭସ୍ମେ କଲୁ । ୧୦୨୧ ।
ମୋହର ଶପତ ପୁତ୍ର ନ କର ତୁ ଆନ
ପାପକୁ ନ ଡର ବାବୁ ଉପୁଯାଅ ସନ୍ତାନ । ୧୦୨୨ ।
ବ୍ୟାସଙ୍କୁ ମନାଇଂ ଦେବୀ ଯୋଚେଶ୍ୱରୀ
ପ୍ରବେଶ ହୋଇଲେ ଯାଇ ଅମ୍ବାଳିକା ପୁର । ୧୦୨୩ ।

ଢଆଗନ୍ତ ସତ୍ୟବତୀ ଅମ୍ବାଳିକା ସମେତେ
ଅନେକ ଭଗତେ ଦେଖାକ ଦୋଚଳ ପ୍ରଣିପତ୍ୟେ । ୧୦୨୪ ।
ସତ୍ୟବତୀ ବୋଇଲେ ମାଗୋ ଶୁଣ ଅମ୍ବାଳିକା
ସୋମବଂଶ କୁଳର ରୁ ମଣ୍ଡଣି ଅଟୁ ଏକା । ୧୦୨୫ ।
ଅମ୍ବିକାର ଯେ ହୋଇଲା ପୁତ୍ର ଗୋଟିଏ
ରୁ ଏସନେକେ ତୃଷ୍ଣ ହୋଇ ନ କଲୁ ଉପାୟେ । ୧୦୨୬ ।
ଯେମନ୍ତେ ପୁତ୍ର ଗୋଟିଏ ହୋଇବ ତୋହର ଜାତ
ତହୁଂକ ଉପାୟ କରସି ଗୋ ରୁଦ୍ଧ ମାତ । ୧୦୨୭ ।
ଅମ୍ବାଳିକା ବୋଇଲା କେମନ୍ତେ ଛାଡିବା ଧର୍ମ
ନୋହୁ କନା ପୁତ୍ର ଲେଖିତ ଯେହ୍ନେ କର୍ମ । ୧୦୨୮ ।
ସତ୍ୟବତୀ ବୋଇଲେ ଗୋ ବୁଦ୍ଧି ଉପାୟ ଥିଲେ
ବଂଶରକ୍ଷା କର ଗୋ ଯେ ଯାହାର ବୁଦ୍ଧି ବଳେ । ୧୦୨୯ ।
ବୁଇ ଭଉଣି ଯେବେ ଆଆନ୍ତ ସେହ୍ନମତେ
ତାହାର ସପଦ ରୁ ଦେଖିବୁ କେମନ୍ତେ । ୧୦୩୦ ।
ଏବେ ବ୍ୟାସ ଆସିବେ ତୋହର ଭୁବନକୁ
ସୁବେଶ ଶୃଙ୍ଗାର ମାଗୋ ଦେଉଛି ତାହାଙ୍କୁ । ୧୦୩୧ ।
ଏକ ଯୋଗେ ଏକ ମନେ ବଢାଅ ପୀରତି
ରାଜ୍ୟଧର କୁଅର ଗୋ ହୋଉ ଉତପତ୍ତି । ୧୦୩୨ ।
ଶୃଙ୍ଗାର କାଲେ ଅମ୍ବିକା ଅସାଷ୍ଟମ ହୋଇଲା
ନୟନ ବୁଜିଲାକୁ ଅନ୍ଧପୁତ୍ର ଉପୁଜିଲା । ୧୦୩୩ ।
ବ୍ୟାସକଇ ଆନନ୍ଦେ ରୁ ଦଅସି ଶୃଙ୍ଗାର
ତୋହୋର ପୁତ୍ରଗୋଟି ହୋଇବ ରାଜ୍ୟଧର । ୧୦୩୪ ।
ସେହ୍ନାଶୁଣି ହରଷ ଯେ ହୋଇଲା ମାନବତୀ
ଅମ୍ବାଳିକାକୁ ବେଶନ କରାଇଲେ ସତ୍ୟବତୀ । ୧୦୩୫ ।
ବ୍ୟାସନ୍ତ ଯେନ ସେ ପ୍ରବେଶ ଅନ୍ତପୁରେ
ବିଜେ କରାଇଲେ ନେଇ ଚନ୍ଦ୍ରଶାଳା ମଧ୍ୟରେ । ୧୦୩୬ ।
ଅନେକ ବେଶ ବେଶନ କରାଇଲେ ଅମ୍ବାଳିକା
ବ୍ୟାସକଇ ଭେଟ ହୋଇଲେ ଶୋଭନକା । ୧୦୩୭ ।
ଧୀରେଶ୍ୱର ନନ୍ଦନ ହୋଇଲେ ଆନ ବେଶ
ପାଣ୍ଡୁର ବର୍ଣ୍ଣ ମୁରତି ଶ୍ୱେତର ପରକାଶ । ୧୦୩୮ ।

ଚନ୍ଦନ ଚତ୍ରୁସମ ମୃଗନାଭି କସ୍ତୁରି
ନାନା ସୁଗନ୍ଧେ ଶ୍ରୀଅଙ୍ଗରେ ଲେପନ କରି । ୧୦୩୯ ।

ଅନେକ ଅଲଙ୍କାର ଆଭରଣ କାୟେ
ଋଷି ରୂପ ଛାଡ଼ି ଦିଶିଲେ ରାଜ୍ୟଧର ପ୍ରାୟେ । ୧୦୪୦ ।

ଜଗବନ୍ଦନ ପୁରୁଷ ଅଟଇ ମାହାବ୍ରହ୍ମ
ଅନଙ୍ଗ ସୁନ୍ଦର ଜାଣି ସେ ରୂପ ଉତ୍ତମ । ୧୦୪୧ ।

ଦୀକ୍ଷାଗୁରୁ ଶିକ୍ଷା ଗୁରୁ ଗ୍ୟାନ ଗୁରୁ ମାହାଭିଗ୍ୟଂ
ପରମ ସିଧ୍ୟ ପୁରୁଷ ଅନାଦି ସର୍ବଗ୍ୟଂ । ୧୦୪୨ ।

ମଦନ ସ୍ୱରୂପୀ ସେ ଅଟଇ ଅମ୍ବାଳିକା
ପରମ ଯୋଗେଶ୍ୱରୀ ସେ ଅପୂର୍ବ ନାୟିକା । ୧୦୪୩ ।

ଆଦ୍ୟୋ ମନ ପବନ ଚଇତନ ତନନ୍ଧଂ ନିରୋଧି
ଭେଟିଲେକ ମସ୍ଥାଣ ଯୋଟିଲ କାମଯୋଧି । ୧୦୪୪ ।

ରତି ଖେଦ ଯେଜଣ ମୁନି ବଜସ୍ୱେ ନ୍ୟୁକେ
ଅମ୍ବାଳିକା ପ୍ରିୟସ୍ୱଭାବ କଲେକ ପୁଲକେ । ୧୦୪୫ ।

ଧର୍ମ ଧର୍ମ ସୁମରନ୍ତି ଦାସ ରାଜାର କୁମାରୀ
ସ୍ୱେ ଦହନ ପୁରୁଷ ସୋମବଂଶ ଉଧାରି । ୧୦୪୬ ।

ମଦନ ଶରଘାଏ ଭେଦଲେ ମହର୍ଷି
ଅମ୍ବାଳିକାକୁ କୋଳ କରି ଧଇଲେ ଆକର୍ଷି । ୧୦୪୭ ।

ଧର୍ମ ଧର୍ମ ସୁମରଇ ପଦ୍ମଲୋଭର ବାଳି
ଭୁଜେ ଭିଡ଼ି ମାହାତ୍ମା କଲେକ କୁଆଳି । ୧୦୪୮ ।

ହୃଦେ ଭିଡ଼ି ମାହାତ୍ମା ମୁଖେ ଦେଲେକ ଚୁମ୍ବନ
କାମ ଆରତେ ମୁନି କଲେକ ବିବସନ । ୧୦୪୯ ।

ବିବସନ କରିଣ ଧଇଲେ ମୁନି କୋଳେ
ହାସ ରସ ପରିହାସ ପ୍ରେମ କୁତୋହଳେ । ୧୦୫୦ ।

ଚନ୍ଦ୍ରକଳା ଭେଦଲେ ସେ ରତି ଶାସ୍ତ୍ର ଯୋଗେ
ଧାତୁରସ ବାମାର ଚଳିଲେକ ବେଗେ । ୧୦୫୧ ।

ରସ ଖଳିତ ସନ୍ତୁଷ୍ଟ ହୋଇଲା ପ୍ରମଦା
ସ୍ୱବେଶ ସ୍ୱବେକ ଆକର୍ଷଇ ତପସିଦ୍ଧା । ୧୦୫୨ ।

ମୁଖେ ଚୁମ୍ବ ଦେଇ ଭିଡ଼ଇ ବେନି ଭୁଜଗତେ
ଅମ୍ବାଳିକା ବୋଇଲା ମୋର ପ୍ରାଣ ରଖ ତପୋବନ୍ତେ । ୧୦୫୩ ।

ଶୃଙ୍ଗାର ମାଗଇ ବାଳ କାମ ଅସାଷ୍ଟମେ
ଯାମଳା ତନ୍ତ୍ରୁ ପ୍ରାପ୍ତେ ବଶନ୍ତି ସେ କାମେ । ୧୦୫୪ ।
ହରସ୍ତେ ମାତାଙ୍କି ଶୃଙ୍ଗାରେଣ ଇଚ୍ଛା
ଗୁଞ୍ଜିଲ ଉପ୍ତେ ମାନ ପୂରଲ ମନବାଞ୍ଛା । ୧୦୫୫ ।
ସ୍ୱବେଶ ବୃତ୍ତିଲ ସେ ପଚଶ ପ୍ରକୃତ
ହେଠ ମାଥ ଶଙ୍ଗାରେ ଅଶ୍ୟାନ୍ତ ଅତ୍ରିପୂତ । ୧୦୫୬ ।
ମଗୁଶିର ମାସ କୃଷ୍ଣପକ୍ଷ ଚତୁଠି ଅର୍କବାରେ
ବୃଷ ଚନ୍ଦ୍ର ମେଳେ ରୋହିଣୀ ନକ୍ଷତ୍ର ସାରେ । ୧୦୫୭ ।
ବଗ୍ର ସଂକଗ୍ରନ୍ତକ ପଚଶ ଦନ ଯୋଗ
ବାଳବ ନାମେ କରଣ ଶୁଭ ନାମେ ଯୋଗ । ୧୦୫୮ ।
ରୋହିଣି ବୃଷ ରାଶି ଜାତ ଶୁକ୍ର କ୍ଷେତ୍ରି
ସପତମ ଘରେ ଚନ୍ଦ୍ର ନବମେ ବୃହସ୍ପତ । ୧୦୫୯ ।
ଏସନକ ସମସ୍ତେ ଛତପନ୍ତ ହୋଇଲାକ ବଳା
ଗ୍ରହ ଏକାଦଶ ଘଡ଼ି ସମ୍ପୋର୍ଣ୍ଣ ଚନ୍ଦ୍ରକଳା । ୧୦୬୦ ।
ମର୍କତ ରସାଣ ଜାଣି ବଶଇ ଦେହ ବର୍ଣ୍ଣ
ସଂପୂର୍ଣ୍ଣ ଘଟିତ କପାଳ ବଚନ ଲେଖନ । ୧୦୬୧ ।
ଆରକ୍ତ ବର୍ଣ୍ଣ ଯେ ବଶଇ ବେନ ଚକ୍ଷୁ
ଗଜରସ୍ପ ସମତୁଲ ମଧ୍ୟା ସମକକ୍ଷୁ । ୧୦୬୨ ।
ଆଜନୁଷଣ ବାହୁ ଯେ କେତନ ସରୂପ
ଚତୁଷଠି ପୁଣ ଲକ୍ଷଣ ଅନଙ୍ଗ ଅନରୂପ । ୧୦୬୩ ।
ଅନେକ ଲକ୍ଷଣେ ଛତପନ୍ତ ହୋଇଲା ସୁତ
ଦବ ଭୁବ ପାତାଳେ ତଇଲୋକ୍ୟେ ବଜତ । ୧୦୬୪ ।
ଅମୃତ ବେଢ଼ କୁଣ୍ଡଳ ଶୋଭିତ ବେନ କର୍ଣ୍ଣେ
ଶୁଧ୍ୟ ପଦକ ମଣି ଶୋଭିତ ମଧ୍ୟମାନେ । ୧୦୬୫ ।
ପୁତ୍ର ଦେଖି ଆନନ୍ଦ ହୋଇଲେ ସତ୍ୟବନ୍ତୀ
ଦ୍ୱାରପାଳ ମାନଙ୍କୁ କରନ୍ତି ବହୁତ ଗୁସ୍ତି । ୧୦୬୬ ।
ପ୍ରଣପତ୍ୟ ହ୍ରମାପନ୍ତ ପାଦେ ମୋର ଶିର
ଅଖଣ୍ଡିତ କପୋଳେ ଚନ୍ଦ୍ର ମଣ୍ଡଳ ଈଶ୍ୱର । ୧୦୬୭ ।
ପାବକ ପ୍ରଚଣ୍ଡ ଯାହାର ନୟନ କଳାଂଶୁ
ପିନାକ ଡମ୍ବୁରୁ ହସ୍ତେ ତ୍ରିଶୂଳ ଅଙ୍ଗେ ଲେପନ ପାଂଶୁ । ୧୦୬୮ ।

ସତ ଶୁଦ୍ଧ ନିର୍ମଳ ଯାହାର ବପୁ
ସତ୍ୟବ୍ରତ ଆଦ ଉଦୟେ ଯାହାର ସରୂପୁ । ୧୦୬୯ ।
ହର ପାଦୁକ ଭକ୍ଷଣ ଅଟନ୍ତି ମହାଯୋଗି
ଅନନ୍ତ କୋଟି ବ୍ରହ୍ମାଣ୍ଡ ଅନନ୍ତ ପୁର ଭୋଗି । ୧୦୭୦ ।
ହୃଦେଶ ଭୂଷିତ ଯାହାର ମୃତୁଖ୍ରିର ମାଳ
ଫଣୀମଣି ଭୂଷିତ କୁଣ୍ଡଳ ଝଳହଳ । ୧୦୭୧ ।
ଊର୍ଦ୍ଧ୍ୱ ପିଙ୍ଗଳ କେଶ ଲୋହିତ ଶ୍ରେଣୀ ଜଟା
ଶଶାଙ୍କ ମଣ୍ଡଳ ତାଣ୍ଡବ ଭୃକୁଟା । ୧୦୭୨ ।
ସିତ ପୀତ ଅଖଣ୍ଡିତ ବର୍ଣ୍ଣ ଭୃତ ପଟ
ଅସୁର ତ୍ରିପୁର ଅନେକ ଶିର ଛେଦ । ୧୦୭୩ ।
ଜୟରୁ ବଣେଶ୍ୱର ଦଧିମଙ୍ଗଳ ଦେବରାଜା
ସ୍ୱୟଂ ଯୋଗିମାନେ କରନ୍ତି ତୋତେ ପୂଜା । ୧୦୭୪ ।
ସୁଲକ୍ଷଣେ ଅନୁକୂଳ ଦେଲୁ ତୁ ଗିନାର ପଥ
ସତ ରଜ ତମ ତୋର ତନୁଂ ତ୍ରିବିଧ ଉତପଥ । ୧୦୭୫ ।
ପ୍ରଣପତ୍ୟ ଲସ୍ୟେ ପାର୍ବତୀର ପ୍ରାଣନାଥ
ତବ ପଦ୍ମ ପାଦତଳେ ଲୁଣ୍ଠୁ ମମ ମାଥ । ୧୦୭୬ ।
ତ୍ରିପୁରାର ପାଦପଦ୍ମେ ଅଙ୍କିତ ମୋର ଶିରେ
ଶୁଦ୍ରମୁନି ସାରୋଳ ଦାସ ପ୍ରଳମ୍ବିତ ବଣେଶ୍ୱରେ । ୧୦୭୭ ।
ବଦସ୍ୱନ୍ତି ଅଗସ୍ତି ଶୁଣ ଯୁଗପତ
କୁରୁ ବଂଶେ ପଣ୍ଡୁକୁମର ହୋଇଲେ ଉତପତ । ୧୦୭୮ ।
ପୁତ୍ର କୋଳେ ଧରି ସାନନ୍ଦ ଯୋଜନ ଗନ୍ଧା
ତ୍ରୈଲୋକ୍ୟ ମୋହନ ପୁତ୍ର ଦେଖି ସମସ୍ତେ କଲେ ଶ୍ରଧା । ୧୦୭୯ ।
ବ୍ୟାସଙ୍କର ବଦନ ସ୍କନ୍ଧଂ ବୋଇଲେ ସତ୍ୟବତୀ
ଧର୍ମରକ୍ଷା କରାଇଲୁ ପୁତ୍ର ଉପୁଜାଇଲୁ ସନ୍ତତି । ୧୦୮୦ ।
ବଂଶେ ସାଧୁ ସାଧୁ ଶୁଭିଲ ତୋହର ଧ୍ୱନି
ସୋମବଂଶ ଉଧରିଲୁ ପଣ୍ଡିତ ମାହାଗ୍ୟାନି । ୧୦୮୧ ।
ଅକାଶେ ସାଧୁ ତୋତେ କରୁଅଛନ୍ତି ବୃନ୍ଦାଅର୍କେ
ତୋହୋର ମହିମା ଯେ ଭୁବନ ତଇଲୋକ୍ୟେ । ୧୦୮୨ ।
ଅମ୍ବିକାର ପୁତ୍ର ଗୋଟିଏ ଉପୁଜିଲା କୁଳଜେଷ୍ଟ
ଚକ୍ଷୁ ବିହୁନେ ନାମ ତାହାର ହୋଇଲା ଧୃତରାଷ୍ଟ୍ର । ୧୦୮୩ ।

ତୋହୋର ମହଂମା ବାବୁ ଅସମ୍ଭବ ଜାଣି
ଏତେ ବଳବନ୍ତ ପୁତ୍ର ଗୋଟି ହୋଇଲା ଅକାରଣ ପୁଣି । ୧୦୮୪ ।
ମାତାଙ୍କର ବଚନେ ମୁନି ଧୃତରାଷ୍ଟ୍ରଙ୍କୁ ଦସ୍ଥା କଲେ
ଦିବ୍ୟ ଚକ୍ଷୁ ମାହାତ୍ମା ହୃଦରେ ତାହାର ଦେଲେ । ୧୦୮୫ ।
ଗର୍ଭକୁ ସ୍ବହଂଲେ ତାକୁ ଦଶଇ ସମସ୍ତ
ଭୁଲେଣ ଛାଡ଼ିଲେ ମୁନି ଗାଲବ୍ୟର ସୁତ । ୧୦୮୬ ।
ଅନ୍ତଶୁଦ୍ଧ ରସ ଧାତୁବାଦ ବିଦ୍ୟା
ଆକର୍ଷଣ ବିକର୍ଷଣ ଦୃଷ୍ଟି ମନ୍ତ୍ରସିଦ୍ଧା । ୧୦୮୭ ।
ଅନୁକ୍ରମେଣ ଆମନ୍ୟାସ୍ତେ ଧ୍ୟାସ୍ତେ
ଯୋଗ ବ୍ରହ୍ମ ମୁଦ୍ରା ସାରୂପ୍ୟ ଯୋଗଲସ୍ତେ । ୧୦୮୮ ।
ଗୁଟିକା ଅଞ୍ଜନ ଯେ ରସ ରସାୟେନ
ସଂଜସ୍ତେ କୁମାରକୁ ସକଳ କରାଇଲେ ପଠନ । ୧୦୮୯ ।
ଶର ସାଗର ଶଇଳ ଅନଳ ଅନିଳ
ମନ୍ତ୍ର ଗ୍ୟାନ ଧ୍ୟାନ ବେଦ ଶାହାସ୍ତ୍ର ସକଳ । ୧୦୯୦ ।
ସ୍ନେତେକେ ସଂଜସ୍କୁ କଲେ ସବ ଜ୍ଞାତା
ଚଉଦ ବିଦ୍ୟା ଶତେ ଭ୍ରଷାସ୍ତେ ନିର୍ଜିତା । ୧୦୯୧ ।
ଧାର୍ମିକ ବିବେକ ସେ ଗାଲବ୍ୟର ସୁତ
ଅନ୍ଧ ନନ୍ଦନର ଭୁଲେ ତାହାକୁ କରାଇଲେ ମିତ୍ରପନ୍ତ । ୧୦୯୨ ।
ସଂଜସ୍ତେ କହିଲେ ଶୀଘ୍ର ଧୃତରାଷ୍ଟ୍ର
ବ୍ୟାସଙ୍କର ପ୍ରସନେ ମାହାଧାର୍ମିକ ଶ୍ରେଷ୍ଠ । ୧୦୯୩ ।
ପୁତ୍ର ପାଳିଲେ ଦେଖି ଅନେକ ଯତନେ
ପୁତ୍ରନ୍ତ ଛାଡ଼ି ମାହାତମା ଗଲେ ଅନ୍ତର୍ଧ୍ୟାନେ । ୧୦୯୪ ।
ଧୃତରାଷ୍ଟ୍ର ପଣ୍ଡୁ ଯେ ବଢ଼ନ୍ତି ପୁତ୍ରବେନି
ପାଳନ୍ତି ସତ୍ୟବତୀ ଦାସ ରାଜାର ନନ୍ଦନୀ । ୧୦୯୫ ।
ଅମ୍ବାଳିକା ବୋଇଲେ ମାଗୋ ଶୁଣ ସତ୍ୟବତୀ
ତୁମ୍ଭର ବଚନେ ମୁଂ ଯେ ହୋଇଲି ଦୂଷିତି । ୧୦୯୬ ।
ଦୁସ୍ତପଦ ପାତକେ ଅର୍ଜିଲି ଆତ୍ମଜା
ମମ ଦୂଷିତ କର୍ମଣି କୁଳେ କଳଙ୍କ ଲଜ୍ୟା । ୧୦୯୭ ।
ଅତି ପାତକ କଣ ହୋଇଲି ମହାଭ୍ରଣ
ପୁତ୍ରଙ୍କଇ ପ୍ରତିପାଳଣ କର ସନୁ କଣ । ୧୦୯୮ ।

ଯାତ୍ରେଣ ଦେବ ଟୋ ନ ସ୍ଥଳ କଷ୍ଟ ମୁକ୍ତି
ମହଂ ସିଦ୍ଧ ମା ଗୋ ପ୍ରୟାଗ ତୀର୍ଥକୁ । ୧୦୯୯ ।
ଦୋଷ ଦହନ ତୀର୍ଥେ ଝାସିବ ଅବଶ୍ୟ
ମୁକତି କଲ୍ୟାଣ ଗୋ କଣବା ସ୍ୱରୂପ ।୧୧୦୦ ।
ମାତାସ୍ୱେ ବାରଣ କଲେ ଧର୍ମ ଅର୍ଥେ
ମାତା ନ ଥିଲେ ପୁତ୍ରେ ବ୍ରତବେ କେମନ୍ତେ । ୧୧୦୧ ।
ଅମ୍ବାଳିକା ନ ଘେନଲେ ମାତାଙ୍କର ବାଣୀ
ଭୂଲେଷ ଘେନଲେ ଦ୍ୱାଦଶ କାମେଷ୍ଟ
ତୀର୍ଥ ନମନ୍ତ୍ରେ ବାଦ୍ୱାର ତପୋଧନ ବେଶ ଘେନ । ୧୧୦୨ ।
ଛାଡ଼ିଲେ ମାୟାମୋହ ପୁତ୍ରଙ୍କର ଯୋଗ
ପଞ୍ଚମ ମାସେ ପ୍ରବେଶ ହୋଇଲେ ପ୍ରୟାଗ । ୧୧୦୩ ।
ଭୂଲମାସ ଶୁକ୍ଳପକ୍ଷ ଶନିବାର ଚତୁର୍ଦ୍ଦଶୀ
ରୋହିଣୀ ନକ୍ଷତ୍ରେ ଦେଖ ପ୍ରୟାଗ ତୀର୍ଥେ ପଶି । ୧୧୦୪ ।
ସ୍ନାହାନ ସାଜ ମାଧେବ ଦ୍ରସନ କଲେ
ବଟତଳେ ବସି ଅନେକ ଦାନ ଦଲେ । ୧୧୦୫ ।
ହେ ମାଧେବ ମୋହୋର ଆନ ପାପ ନାହିଂ
ପରେଶ ହିଂସା ଅପବାଦ ନୋହିଜ ମୁହିଂ । ୧୧୦୬ ।
ଏକା ପାପ କଲି ବଂଶ ରକ୍ଷଣ ନମନ୍ତ୍ରେ
ଜେଷ୍ଠାଶ୍ରେ ଶୃଙ୍ଗାର କରାଇଲି ଗୁରୁବଚନର ହେତେ । ୧୧୦୭ ।
ସେ ମୋହୋର ଦୋଷ ଖଣ୍ଡଣ କରିବାକ ଶିରଙ୍ଗ
ସ୍ତ୍ରି ସ୍ମି ଧର୍ମ ଦୋଷରୁ ମୋତେ ଉଧାରିବା ବେଗ ।୧୧୦୮ ।
ଏତେକ କହି ସେ ପଦ୍ମଲଭର କୁମାରୀ
ତ୍ରିବେଣି ସଂଗମେ ଝାସିଲି କରତାର ସୁମରି ।୧୧୦୯ ।
ଗୁରୁହରଣ ପାତେକ ସମସ୍ତ ଛନ୍ଦେ ଗଲା
ନିରଞ୍ଜନ ସରୁପେଣ ସେ ଆକାଶେ ବସିଲା । ୧୧୧୦ ।
ଧୃତରାଷ୍ଟ୍ର ପଣ୍ଡୁ ସେ ପଢ଼ନ୍ତି ବେନ ଭ୍ରାତେ
ପ୍ରସନେ ଜ୍ଞଦ୍ୟା ଦେଲେ ଗାଳବ୍ୟର ସୁତେ । ୧୧୧୧ ।
ଶଷଭ ଶ୍ରୀକଳ ପୂର୍ଣ୍ଣିମା ଚନ୍ଦ୍ରବାର
ଜେଷ୍ଠା ନକ୍ଷତ୍ର ଅଟଇ ସେ ଦନର । ୧୧୧୨ ।
ବୁଷ୍ଟତ ନାମେ ଯୋଗ ଶଙ୍କର ନାମେ କରଣ
ବ୍ୟାସେ ବନେ ଭଲେ ଦାରୁଣାବନ୍ତ କଷ୍ଟକେଶ । ୧୧୧୩ ।

ବେଦ ପୁତ୍ର ଯେତନେ ବିଜୟେ ସତ୍ୟବତୀ
ବ୍ୟାସଙ୍କର କୋଳେ ନେଇ ଦେଲେ ବେଦ ଅପତ୍ୟ । ୧୧୧୪ ।
ପୁତ୍ର ଦେଖି ଆନନ୍ଦ ସେ ପାରେଶ୍ୱର ତନୁ
ଅନ୍ଧ ପଣ୍ଡୁଙ୍କୁ ବସାଇଲେ ବେଦ ଜାନୁ । ୧୧୧୫ ।
ବିଦ୍ୟାପାଠ ଯେତେ ସଂଜୟେ ଦେଇଥିଲେ
ବ୍ୟାସଙ୍କ ଆଗେ ସେ ସମସ୍ତ ପାଠ କଲେ । ୧୧୧୬ ।
ଆହୋ ହଳଧର ବଂଶେ ଚନ୍ଦ୍ରଗୁରୁ ବୋଲି
ତାହାର ନନ୍ଦନ ସ୍ୱବଗୁରୁ କହିଲି । ୧୧୧୭ ।
ସ୍ୱବଗୁରୁ ନନ୍ଦନ ବିମଳ ଚନ୍ଦ୍ର ଗୁରୁ
ରୁଦ୍ରେଶ୍ୱର ବୋଲି ତାହାର ନନ୍ଦନ ଗୁରୁ । ୧୧୧୮ ।
ରୁଦ୍ରେଶ୍ୱର ନନ୍ଦନ ଗୁରୁ ବିରୂପାକ୍ଷ
ସେହାର ନନ୍ଦନ ଗୁରୁ ବିଲ୍ୱବୃକ୍ଷ । ୧୧୧୯ ।
ବିଲ୍ୱବୃକ୍ଷର ନନ୍ଦନ ଅନଙ୍ଗ ସେନ ଗୁରୁ
ପୂର୍ବଚନ୍ଦ୍ର ବୋଲି ସେହାର ନନ୍ଦନ ଗୁରୁ । ୧୧୨୦ ।
ପୂର୍ବଚନ୍ଦ୍ରର ପୁତ୍ର ଗୁରୁ ବ୍ରଜମାଳି
ଏହାର ନନ୍ଦନ ଗୁରୁ ପ୍ରଚଣ୍ଡାବଳି । ୧୧୨୧ ।
ପ୍ରଚଣ୍ଡାବଳିର ନନ୍ଦନ ସ୍ୱର୍ଗବର ଗୁରୁ
ସେହାଙ୍କର ନନ୍ଦନ ଲୋକେଶ୍ୱର ଗୁରୁ । ୧୧୨୨ ।
ଏ ଗୁରୁ ବଂଶ ଯାକ ବ୍ୟାସଙ୍କ ଆନ୍ତ ଋଷି
ବ୍ୟାସେ ଶିଖାଇଛନ୍ତି ଅଶୂଢ଼ ଅଦୃଷ୍ଟି । ୧୧୨୩ ।
ସନ୍ଧ୍ୟେ ବ୍ୟାସେ ସଇଲେ ଲୋକେଶ୍ୱର ଗୁରୁଙ୍କୁ
ବିଦ୍ୟା ଶିଖାଇ ଦିଅ ସ୍ୱେ ବେଦ ପୁତ୍ରଙ୍କୁ । ୧୧୨୪ ।
ବ୍ୟାସଙ୍କର ବଚନେ ଗୁରୁ ଲୋକେଶ୍ୱର
ଆଖେଡ଼ାସ୍ୱେ ରହିଲେ ଯାଇଂ ବନସ୍ତ ଭିତର । ୧୧୨୫ ।
ଧନୁ ଯୋଣ ମାଳ ବିଜ୍ଞାଣ ଆଡ଼ମ୍ବ ଡ଼ମ୍ବରୁ
ଶର ବିଦ୍ୟା ଶିଖାବନ୍ତି ଲୋକେଶ୍ୱର ଗୁରୁ । ୧୧୨୬ ।
ପଣ୍ଡବ କୋନ୍ତ ନାରାଜ ଅସିପତ୍ର ଯାଠି
ସକଳ ବିଦ୍ୟାସ୍ୱେ ନିର୍ଜିତ ସବନସ୍ତି । ୧୧୨୭ ।
ଅନେକ ବିଦ୍ୟାସ୍ୱେ ଯେ ହୋଇଲେ ନିର୍ଜିତା
ବେଦ ସାହାସ୍ର ମଧ୍ୟେ ନିର୍ଜିତ ସତ୍ୟବନ୍ତା । ୧୧୨୮ ।

ଆଦ୍ୟେ କକଡ଼ା ମାସ ଶୁକ୍ଳପକ୍ଷ ଚଉଠି
ପଣ୍ଡିତ ବାର ଶତଭିଷା ନକ୍ଷତ୍ର ଘଟି । ୧୧୨୯ ।
ବବ ନାମେ କରଣ ଇନ୍ଦ୍ର ନାମେ ଯୋଗ
କକଡ଼ା ସଂକ୍ରାନ୍ତି କ ଏକ ଦିନ ଭୋଗ । ୧୧୩୦ ।
ଲେକେଶ୍ବର ଗୁରୁ ଅଖଡ଼ା ଶିଖାବନ୍ତ କୁମାରେ
ସେଦିନ ଆଟେଡ଼ାଏ ପ୍ରବେଶ ହୋଇଲେ ସ୍ୱର୍ଗ୍ୟବରେ । ୧୧୩୧ ।
ପଣ୍ଡୁ କୁମାରକୁ ଦେଖି ହରଷ ହୋଇଲେ
ସକଳ ବିଦ୍ୟାମାନ ପରୀକ୍ଷା କରାଇଲେ । ୧୧୩୨ ।
ନାନା ବିଦ୍ୟାରେଣ ନିର୍ଜିତ କୁମାର
ହରଷେ ପଣ୍ଡୁକୁ ପ୍ରସନ୍ନ ହୋଇଲେ ସ୍ୱର୍ଗ୍ୟବର । ୧୧୩୩ ।
ପାର୍ଥୁଙ୍କ ବିଦ୍ୟା ଶିଖାଇଲେ ଆଦି ଗୁରୁ
ଶବଦକୁ ଭେଦିବ ଯେବଣ ଶସ୍ତ୍ର ପ୍ରହାର କରୁ । ୧୧୩୪ ।
ଶବଦଭେଦ ବିଦ୍ୟା ଶିଖାଇଲେ ପଣ୍ଡୁଙ୍କୁ
ପ୍ରସନେଣ ଅନେକ ବିଦ୍ୟା ଦେଲେ ତାହାଙ୍କୁ । ୧୧୩୫ ।
ସତ୍ୟବତୀ ବୋଇଲେ ଭୀଷ୍ମଙ୍କୁ ବସାଇ
ଧୃତରାଷ୍ଟ୍ରକୁ ବିଭା କରାଅ କନ୍ୟା ଗୋଟିଏ ଲୋଡ଼ାଇ । ୧୧୩୬ ।
ଶୁଣିଣ ସାନନ୍ଦ ଯେ ଭୀଷ୍ମ ମାହାରଥି
ଶାଲ୍ୟ ରାଜାର ଦୋହିତା ନାମ ଶାଲ୍ୟମତୀ । ୧୧୩୭ ।
ଭୀଷ୍ମ ଶ୍ରୀହସ୍ତେ ଲେଖ ଦେଲେ ଶାଲ୍ୟ ରାଜାକୁ
ତୋହୋର ଦୋହିତା ଗୋଟି ଦେଉ ଅମ୍ଭ ପୁତ୍ରକୁ । ୧୧୩୮ ।
ଶାଲ୍ୟ ସାନନ୍ଦ ହୋଇଲା ସ୍ୱେ ବଚନ ଶୁଣି
ଧୃତରାଷ୍ଟ୍ରକୁ କନ୍ୟା ଦେବାକୁ ସମ୍ବନ୍ଧ କରି ଆଣି । ୧୧୩୯ ।
ସମଦଣ୍ଡ ଘେନ ଶାଲ୍ୟ ନୃପତି
ଦୋହିତା ଘେନି ବିଜୟେ ସତ୍ୟବତୀର କଟ । ୧୧୪୦ ।
ସତ୍ୟ ବାକ୍ୟ କରିଣ ସନ୍ତୁଂ ମାନିଲା
ସେହି ରାତ୍ରେ କନ୍ୟା ପ୍ରାଣତ୍ୟାଗ ହୋଇଲା । ୧୧୪୧ ।
ଦେଖିଣ ଶାଲ୍ୟ ଅନେକ ବିଇକୁଳ ହୋଇଲା
ଯମୁନା କୂଳେ ସେ କନ୍ୟାକୁ ଦହନ କରି ନେ । ୧୧୪୨ ।
ଅନଙ୍ଗ ଦେଶର ଅନଙ୍ଗସେନ ରାଜ୍ୟେ
କାଳିନ୍ଦି ନାମେଣ ତାହାର ଦୋହିତାସ୍ୱେ । ୧୧୪୩ ।

ତାହାଙ୍କୁ ବରଣ କଲେ ଧୃଷ୍ଟଗୃଷ୍ଟର ନାଏଂ
ସତ୍ୟ କରାଇଣ ଦେଲେ ମାଳ ଗୋଟିଏ । ୧୧୪୪ ।
ବରଣ କରଣ ଅଇଲେ ସାସ୍ୱେଂତନ୍ତୁ
ସେ କନ୍ୟା ନାଣ ନେ ଦେହ୍ୱନ୍ତୁ । ୧୧୪୫ ।
ନର୍ଣ୍ଣର ଦେଶର ରାଜା ଗଣପତି
ତାହାର ଘରେ କନ୍ୟାଏ ହୋଇଛୁ ଛତପତି । ୧୧୪୬ ।
ସେ କନ୍ୟାର ନାମ ଅଟଇ ଶରଧୃତି
ପାରେଶ୍ୱର ବଶଲେ ଧୃଷ୍ଟଗୃଷ୍ଟଙ୍କୁ ସେ ସୁବତି । ୧୧୪୭ ।
ନର୍ଣ୍ଣର ଦେଶର ରାଜା ଅନେକ ସାନନ୍ଦ ହୋଇଲ
ଅନେକ ଦ୍ରବ୍ୟ ବୋଲି ହସ୍ତର କରାଇଲ । ୧୧୪୮ ।
ସୋମବଂଶକଇ ଦେବ ମୋହୋର କୁମାଗ୍ର
ସ୍ୱେ ବଂଶ ମଝଭୁବନକୁ ଅଧିକାଗ୍ର । ୧୧୪୯ ।
ଏସନକ ବ୍ୱସ୍କର କରନ୍ତେ ନର୍ଣ୍ଣର ଗଣପତି
ଶରଧୃତି କନ୍ୟା ନାଣ ଗଲ ସେହୁ ସ୍ୱତି । ୧୧୫୦ ।
ପୁଣି ବଶଲେ ଆରେକ କନ୍ୟାଏ
କର୍ଣ୍ଣମାଧବ ରାଜା ଦେବା ତଳକ ଦୋହୁତାଏ । ୧୧୫୧ ।
ଧୃଷ୍ଟଗୃଷ୍ଟ ନାମେ ସନ୍ତୁଂ ସତ୍ୟ ମାଲିଲ
ସେ କନ୍ୟାକଇ ରାଣରେ ଛତ୍ତଙ୍କ ବ୍ରଂଷିଲ । ୧୧୫୨ ।
ବଇବ ସୁତ ମନୁ ଅଗସ୍ତିଙ୍କି ପସ୍ବରେ
କନ୍ୟା ଜମ୍ମା ଧୃଷ୍ଟଗୃଷ୍ଟ ନାମେ ମର । ୧୧୫୩ ।
ଅଗସ୍ତି ବୋଇଲେ ତାହାର କୃଢକା ବୃଷଗ୍ରଣି
ଜାତ ବ୍ରହ୍ମଅସୁର ଏମନ୍ତେ କନ୍ୟାଏ ଛନାଣି । ୧୧୫୪ ।
ବ୍ୟାସ ପ୍ରାସ୍ୱେ ମହଋଷି ଖାସଁ ଦାନ କଲ
ବ୍ରହ୍ମ ଅସୁର ପଣେ ସେ କେସନେକେ ଜନ୍ମିଲ । ୧୧୫୫ ।
କୃଢକା ଯୋଗେ ମୁନ ପଶିଲେ ଶୃଙ୍ଗାରେ
ଗ୍ରେହେଣି ବେଳେ ଖାସଁ ଗ୍ରହିଲେ ମୁନବରେ । ୧୧୫୬ ।
ଅମ୍ବିକା କନ୍ୟା ସନ୍ତୁଂ ଶୃଙ୍ଗାର ସହି ନ ପାରିଲ
ଗତ ଅମ୍ବା ପ୍ରାସ୍ୱେ ହୋଇ ମୋହେଣ ପଡ଼ିଲ । ୧୧୫୭ ।
ଆରତେ ମହାତ୍ମା ଚେଷ୍ଟା କଲେ ରେତ
ତେଣୁକର ବ୍ରହ୍ମ ଅସୁର ଲକ୍ଷେଣ ହୋଇଲ ଜାତ । ୧୧୫୮ ।

ଅଗସ୍ତି ବୋଇଲେ ସେ ବଇବସ୍ୱତ ମନୁଙ୍କ
ଏସନେକ ଯୋଗ ହୋଇଲା ଧୃତରାଷ୍ଟ୍ରଙ୍କ । ୧୧୫୯ ।
ବ୍ରହ୍ମ ଅପୂର୍ବ ଲକ୍ଷଣେ ହୋଇଲା ଉତ୍ପତି
ଛେଣ୍ଡୁକର କନ୍ୟାସ୍ୱେ ହୋଉଛନ୍ତି ନାଶଗତି । ୧୧୬୦ ।
ମନୁ ବୋଇଲେ ପୁଣ ହୋଇଲା କେମନ୍ତ
ସ୍ୱେ କଥା ତଦନ୍ତ କରି କହିବା ଭଗବନ୍ତ । ୧୧୬୧ ।
ଅଗସ୍ତି ବୋଇଲେ ଶୁଣ ହେ ଯୁଗପତି
ଧୃତରାଷ୍ଟ୍ରଙ୍କୁ ବରି ଏକ ଉତ୍ତର ଶତେ କନ୍ୟା ହୋଇଲେ ବିନଶ୍ୟତି ।୧୧୬୨।
ଗିରିବ୍ରଜ ଦେଶର ରାଜା ବୀରକେତନ
ସେ ଆସି କନ୍ୟାସ୍ୱେକ କଲାକ ପ୍ରଦାନ । ୧୧୬୩ ।
ସେ କନ୍ୟାର ନାମ ଅଟଇ ଚନ୍ଦ୍ରାବତୀ
ଅନେକ ସମ୍ପଦେ ଆଣି ଦେଲାକ ନୃପତି । ୧୧୬୪ ।
ଧୃତରାଷ୍ଟ୍ର ଅନ୍ଧ ସେ ନାହିଂ ନେତ୍ର ଆଖି
ଅନ୍ୟ ଦେଶକୁ ଗଲେ ଗୁଣ ଉପଲମ୍ଭ କରନ୍ତି । ୧୧୬୫ ।
ଏମନ୍ତେଣ କନ୍ୟା ଆଣନ୍ତି ପରିରାଷ୍ଟ୍ର
ହରେ ଲୁର୍ପିତ ବଂଶେଣ ଗରିଷ୍ଟ । ୧୧୬୬ ।
କନ୍ୟା ଆଣନ୍ତି ସେ ବାରୁଣୀସ୍ୱେ ହସ୍ତ କରିବାକୁ
ସେହିକୁ ରହିଲା କଥା ସୋମବଂଶ ରାଜ୍ୟଙ୍କୁ । ୧୧୬୭ ।
ରାଜାସ୍ୱେ ହସ୍ତ ହୋଇ ନ ଯାନ୍ତି ସେହି ଦିନୁ
କନ୍ୟାସ୍ୱେ ଆସନ୍ତି ନିଜ ଭୁବନୁ । ୧୧୬୮ ।
କନ୍ୟା ହସ୍ତ କରାଇଲେ ବୀରକେତନ
ମହୁଶଯ୍ୟା ଯୁଗତେ କରାଇଲେ ଶୟନ ।୧୧୬୯ ।
ନୀହାରଙ୍କ ସ୍ୱାଭଣ ଶୁଣିଲେ ବରକନ୍ୟା
ମରି ଶୋଇ ଅଛି ସେ ଚନ୍ଦ୍ରାବତୀ କନ୍ୟା । ୧୧୭୦ ।
ପ୍ରାତକାଳେ ସୁନ୍ଦରୀଙ୍କ ନେଲେ ଶମଶାନେ
ଦହନ ସାରି ଶୁଦ୍ଧ ହୋଇଲେ ଏକାଦଶ ଦିନେ । ୧୧୭୧ ।
ହସ୍ତଯୋଗ କରନ୍ତେ ସହସ୍ରଂ ଅନେକ କନ୍ୟା ମଲେ
ଧୃତରାଷ୍ଟ୍ରକଇ କନ୍ୟା କେହି ଦଅନ୍ତି ନୋହିଲେ । ୧୧୭୨ ।
ସମସ୍ତେକେ ହିଜେ ଭଲେ ବ୍ୟାସ ମାହାମତି
ଦେଖିଣ ସାନନ୍ଦ ହୋଇଲେ ସତ୍ୟବତୀ । ୧୧୭୩ ।

ବ୍ୟାସଙ୍କୁ ସ୍ମରଣି ବୋଲନ୍ତି ଏକାନ୍ତେ
ଅମ୍ବୁବତୀ ଅନେକ ସ୍ତବରେ ଭଗତ ମୋତେ । ୧୧୭୪ ।
ହରକେଶର ପୁରର କେଶବ ନୃପତି
ସେ ରାଜା ଅଟଇ ଶୂଦ୍ର ବଂଶେଣ ଉତପତି । ୧୧୭୫ ।
ତାହାର ବୁଲଣି ନାମ ଅଟଇ ଅମ୍ବୁବତୀ
ତାହାକୁ ପ୍ରଦାନ ହୋଇଲେ ବିଚିତ୍ର ବୀର୍ଯ୍ୟ ନୃପତି । ୧୧୭୬ ।
ସେ ଦୁଇ ଭଉଣୀ ସଙ୍ଗ·ହୋଇଲେ ପୁତ୍ରବନ୍ତୀ
ସେହାର ମନ ସେବେ ବହୁତ ସନ୍ତୁଷ୍ଟି । ୧୧୭୭ ।
ଶୁ ମୋହର ନନ୍ଦନରେ ପଣ୍ଡିତ ଭଗବନ୍ତ
ଅମ୍ବୁବତୀର ଗର୍ଭେ ପୁତ୍ର ଗୋଟିଏ କର ଜାତ । ୧୧୭୮ ।
ମାତାର ବଚନେ ସେ ବ୍ୟାସ ମୁନିବରେ
ପ୍ରବେଶ ହୋଇଲେ ଯାଇ ଅମ୍ବୁବତୀର ପୁରେ । ୧୧୭୯ ।
ଅମ୍ବିକା ଅମ୍ବାଳିକା ହୁଂ ଜାଣି ଅଛୁ ଯୁଗତେ
ଅନେକ ବେଶ ବେଶନ ସେ ହୋଇଲ ଯୁବତୀ । ୧୧୮୦ ।
ବ୍ୟାସଙ୍କର ଶୃଙ୍ଗାର ସେ ସହିଲ ଯୁବତି
ହରଷେ ରମିଲେ ସେ ମେଳ ସ୍ୱବମତି । ୧୧୮୧ ।
ମୂଳ ମାସ କୃଷ୍ଣପକ୍ଷ ବୃହସ୍ପତି ବାର
ପୁଷ୍ୟା ନାମେ ନକ୍ଷତ୍ର ଅଟଇ ସେ ଦିନର । ୧୧୮୨ ।
ସିଧ୍ୟ ନାମେ ଯୋଗ କରଣ ତରୁଳି
ସଇନ୍ଧୁ ଜାତ ସେ ହୋଇଲ ଏକ ବାଳ । ୧୧୮୩ ।
ଅମୃତ ଯୋଗ ସେନ ଉତପତି ହୋଇଲ ସୁତ
ଦେଖିଲେ ବ୍ୟାସ ଅତି ଧାର୍ମିକ ଗୁଣବନ୍ତ । ୧୧୮୪ ।
ପାଦେଣ ଜନ୍ମ ସେ ହୋଇଲ ନନ୍ଦନ
ବେଦପାଦେ ପଦ୍ମ କରେ ଶଙ୍ଖ ଚକ୍ର ଚିହ୍ନ । ୧୧୮୫ ।
ବିଦୁ ବର ବାକ୍ୟ କହଇ ଦିବ୍ୟବାଣୀ
ବିଦୁର ନାମ ଦେଲେ ବ୍ୟାସ ମହାମୁନି । ୧୧୮୬ ।
କୋଳେ ଧରିଣ ବ୍ୟାସ ମୁଖେ ଦଲେ ଚୁମ୍ବନ
ବୋଇଲେ ଭୂତ ଭବିଷ୍ୟ ଜାଣିବୁ ବର୍ତ୍ତମାନ । ୧୧୮୭ ।
ସମସ୍ତ ଦୃଶ୍ୟ ତୋତେ ହୋଉବେ ବାଳ ବତ୍ସ
ଅନୁବ୍ରତେ ତୋହୋର ଜନ୍ମରୁ ନ ଛାଡ଼ୁ ଲକ୍ଷ୍ମୀ । ୧୧୮୮ ।

ବ୍ରହ୍ମଜନ୍ମ ଯୋଗ ତୋତେ ଦୁଶ ମାନ ସଂପୂର୍ଣ୍ଣ
ପଣ୍ଡିତ ଧାର୍ମିକ ପଣେ ସଦା ତୋହୋର ଯାଉ ଦନ । ୧୧୮୯ ।
ଏସନେକ ବର ଦେଲେ ମାହାବ୍ରହ୍ମ ଗୁରୁ
ପୁତ୍ର ସମର୍ପିଲେ ସତ୍ୟବତୀଙ୍କି ଆପଣା କୋଡ଼ରୁ । ୧୧୯୦ ।
ସତ୍ୟବତୀ ବୋଇଲେ ବାରୁ ଧୃତୀରାଷ୍ଟ୍ର ଜାତ ବ୍ରହ୍ମ ଅସୁର
ଯେବଣ କନ୍ୟା ବଣଲେ ସେ ହୋଅଇ ଅପହାର । ୧୧୯୧ ।
ବ୍ୟାସେ ବୋଇଲେ କିଛୁ ନ ସ୍ଖଳ ଗୋ ମାସ୍ତେ
ମନ୍ଦନଣେ ଜାତ ହୋଇଲା ସେ ପୁତ୍ର ତାହାଂକ କର ସିନା ଉପାସ୍ତେ ।୧୧୯୨।
ଏତେ ବୋଲି ବ୍ୟାସେ ହୋଇଲେ ଅନ୍ତର୍ଧ୍ୟାନ
ଯାଇ ପ୍ରବେଶ ଗାନ୍ଧାର ସେନ ଭୁବନ । ୧୧୯୩ ।
ଗାନ୍ଧାର ସେନ ସେ ଗାନ୍ଧାର ଦେଶର ଅଧିପତି
ଏକ ଉଣ ଶତେ ପୁତ୍ର ତାହାର ଏକଇ ଦୋହିତ । ୧୧୯୪ ।
ଦୋହିତା ନାମ ତାହାର ଅଟଇ ଗାନ୍ଧାରୀ
ମନ୍ଦ କ୍ଷଣେ ଜନ୍ମ ସେ ଜାତ ବ୍ରହ୍ମ ଅସୁରୀ । ୧୧୯୫ ।
ଜ୍ୟେଷ୍ଠ ମାସ କୃଷ୍ଣ ପକ୍ଷ ଅମାବଇ ରାତି
କୃତିକା ନକ୍ଷତ୍ରେ ସେ ହୋଇଲା ଉତପତି । ୧୧୯୬ ।
ଜତ୍ୟାନ୍ତ ଉଆଂସ ବୃଷ ରାଶି ଜାତ ବ୍ରହ୍ମ ଅସୁରୀ
ଏତେକ ଲକ୍ଷଣେ ଜନ୍ମିଲ ଗାନ୍ଧାରୀ । ୧୧୯୭ ।
ତାହାଙ୍କର ବର ବରିଲେ ସେ ଗାନ୍ଧାର ସେନ ରାସ୍ତେ
ମାଳାଦେଇ ବଣିଲେ ସେ ନୃପତି ହୋଏ କ୍ଷୟେ । ୧୧୯୮ ।
ଉଡ଼ଙ୍ଗ ଦେଶର ରାଜା ସ୍ବର୍ଣ୍ଣଚନ୍ଦ୍ର ନୃପତି
ଗାନ୍ଧାରୀଙ୍କ ବରଣ ସେ ମଲା ତତ୍କ୍ଷଣାନ୍ତ । ୧୧୯୯ ।
ମହାରାଷ୍ଟ୍ର ଦେଶର ନୃପତି ବିରୁପାକ୍ଷ
ଗାନ୍ଧାରୀ ବରଣେ ସେ ମଲାକ ପ୍ରତକ୍ଷ । ୧୨୦୦ ।
ଜକଟ ରାଜାମାନେ ଜାଣି କେହି ତହିଁ ନୋହିଲେ
ଦୂରେଣ ବାଇଶି ରାଜା ଗାନ୍ଧାରୀଙ୍କ ବରିଣ ମଲେ । ୧୨୦୧ ।
କେହି ପ୍ରଦାନ ନୋହିଲେ ଗାନ୍ଧାରୀଙ୍କ
ବିକଳ ଗାନ୍ଧାରସେନ ଦୋହିତା ରୂପ ଦେଖି । ୧୨୦୨ ।
କୁମ୍ଭମାସ କୃଷ୍ଣ ପକ୍ଷ ପ୍ରତିପଦା ଦିନେ
ବ୍ୟାସ ପ୍ରବେଶ ହୋଇଲେ ଗାନ୍ଧାର ସେନ ଭୁବନେ । ୧୨୦୩ ।

ଦେଖିଣ ସାନନ୍ଦ ସେ ହୋଇଲେ ରାଜ୍ୟଧର
ଉଦେକ ଢାଳିଲେ ରାଜା ବ୍ୟାସଙ୍କର ପସ୍ମର । ୧୨୦୪ ।
ଆପଣେ ଗାନ୍ଧାରସେନ ଚରଣ ପଖାଳି
ବ୍ୟାସଙ୍କର ଚରଣ ଉଦେକ ନବେଶିତ ଶିରେ ଢାଳି ।୧୨୦୫।
ବସ୍ତ୍ର କୁଣ୍ଡଳ ଚନ୍ଦ୍ର ହାର ମାଳ ଦେଇଣ ରାଜା
ବହୁତ ଭଗତ ହୋଇଣ କଲେ ପାଦ ପୂଜା । ୧୨୦୬ ।
ସୁବର୍ଣ୍ଣ ସିଂହାସନେ ବସାଇଲେ ବ୍ୟାସଙ୍କୁ
କିଙ୍କର ହୋଇ ପସ୍ମରଇ ମୁନି ହେ ଅନୁଗ୍ରହ କର ମୁଝୁ । ୧୨୦୭ ।
ଅନେକ ବଂଶ ମୋହୋର ହୋଇଲେ ମୁକତ
ପ୍ରତକ୍ଷେ ନାରାୟଣ ତୁମ୍ଭେ ଅଟ ବ୍ରହ୍ମସତ । ୧୨୦୮ ।

ତୋହୋର ପାଦ ରଜ ପଡିଲେ ମୋହୋର ପୁରେ
ଅକାରଣକଇ କାରଣ ଧାଇଲେ ମୁନିବରେ । ୧୨୦୯ ।
ଅନେକ ବ୍ରନସ୍ତ ହୋଇଲେ ଗାନ୍ଧାରସେନ ନରନାହା
ସଂସାର ଚଡ ଦେଲୁ ତୁ କ୍ଷିପିଲୁ ମୁନି ସାହା । ୧୨୧୦ ।

ମୁହିଂ ତୋହର ଦାସର ଦାସ ଜନ୍ମେ ଜନ୍ମେ
ସଂସାର ତାରିଲୁ ତୁ ଅମୃତ ବଚନେ । ୧୨୧୧ ।
ଭୂତ ଭବିଷ୍ୟ ବ୍ରତମାନ ଛନଗ୍ରନ୍ଥ କଲୁ
ଅଷାକାର ମନ୍ତ୍ରେ ତୁ ଶୂନ୍ୟଙ୍କୁ ବୋଧିଲୁ । ୧୨୧ ।
ଅନାଦ ଠାବ ତୋତେ ଦଅଇ ବଷଷ୍ଟିଲେ
ନାରାୟଣ ରୂପ ଲେଖକ କରୁ ମାହା ପ୍ରଳୟର କାଳେ । ୧୨୧୩ ।
ଅନେକ ସ୍ତୁତି କରଇ ଗାନ୍ଧାର ସେନ ସ୍ୱାମି
ବ୍ୟାସଙ୍କର ପାଦ ତଳେ ଶତ ସହସ୍ର ପରଣାମି । ୧୨୧୪ ।
ସତ୍ୟବତୀର ନନ୍ଦନ ଲସ୍ତେ ମମ ହୃଦେ
ଶୁଦ୍ର ମୁନି ସାରଳା ଦାସ ବଦନ୍ତ ଆନନ୍ଦେ । ୧୨୧୫ ।

ଶୁଣ ବଇବ ସୁତ ମନୁ ବଇସ୍ୱନ୍ତ ଅଗସ୍ତି
ବ୍ୟାସେ କଲ୍ୟାଣ କଲେ ଗାନ୍ଧାରସେନ ନୃପତ । ୧୨୧୬ ।
ବସ ବସ ମାହାରାଜା ତୋହର ସିଧ୍ୟ ହୋଉ ବାଞ୍ଛା
ଅରଷ୍ଟି ଶାନ୍ତ ହୋଉ ତୋହର କୁଟୁମ୍ବ ଷମେ ହୋନ୍ତୁ ରକ୍ଷା । ୧୨୧୭ ।
କୁଶଳ ହୋଇ ତୋର ଅଛନ୍ତ ନା ସୋଦରେ
ପାଞ୍ଚ ମହାଦେଇ ଷମେ ବ୍ରତନ୍ତ ନା ପୁରେ । ୧୨୧୮ ।

ପୁଣ ସନ୍ତାନ ତୋହୋର ବ୍ରତନ୍ତି ନା ସରେ୍ୟ
ନାଥ ପଣନାଥମାନେ ବ୍ରତନ୍ତି ନା ଆରୋଗ୍ୟେ । ୧୨୧୯ ।
ଦେବତା ବ୍ରାହ୍ମଣେ ହୋଇଅଛୁ ନା ଭଗତ
ହତ ଆହୁତ ଦେଉଅଛୁ ନା ଜଥ ବ୍ରତ । ୧୨୨୦ ।
ଶୂନ୍ୟ ପୁରୁଷମାନେ କରୁଅଛନ୍ତି ନା ଦୃଷ୍ଟି
ସବଧାନେ ଶସ୍ୟ ଦେଉଅଛୁ ନା ସୃଷ୍ଟି । ୧୨୨୧ ।
ସଂସାର ପାଳକ ହୋଇଅଛୁ ନା ରାଜା
କ୍ଷଣଳେ ତ୍ରିତନ୍ତି ନା ତୋହୋର ଜନପ୍ରଜା । ୧୨୨୨ ।
ପରଜା ପାଳନ ରାଜା କରୁନା ଅବଧି
ଦୈତ୍ୟ ଦାନବନ୍ତି କରୁଅଛୁ ନା ସାଧି । ୧୨୨୩ ।
ଘର୍ଥେ ଉପସର୍ଗ ନାହିଂନା କହ୍ନଣାପ
ତପବନ ରକ୍ଷା କରୁଅଛୁ ନା ରୁ ନୃପ । ୧୨୨୪ ।
ସବ ସୁବିଧାନ ହୋଉଅଛୁ ନା ରାଜ୍ୟ
ସଂସାର ଧର୍ମ ସେ ରାଜାଙ୍କୁ ବଡ଼ କାର୍ଯ୍ୟ । ୧୨୨୫ ।
ସମସ୍ତ ସୁବଧାନ ଶୁଣିମା ସାବାମୁନେ୍ୟ
କଥାଏକ କହଇଂ ଶୁଣିମା ସାବଧାନେ । ୧୨୨୬ ।
ଦୋହିତା ଗୋଟିଏ ଅଛୁ ନାମ ତା ଗାନ୍ଧାରୀ
କୃଥତା ବୃଷରାଶି ଜାତ ବ୍ରହ୍ମ ଅସୁରା । ୧୨୨୭ ।
ସେତେ ନୃପତ ବଶକ୍ତ ଇତ୍ୟମାନେ
ବାଇଶି ରାଜା ମଲେନ ବରଣ ବିଧାନେ । ୧୨୨୮ ।
ଦୋହିତାକୁ କେହି ପ୍ରଦାନ ନୋହିଲେ ତରେ
ଯୁବା ଯୁବତ ହୋଇଅଛୁ ମୋହୋର ଘରେ । ୧୨୨୯ ।
ଅବସ୍ଥାଗତ ଦୋହିତା ପିତା ଘରେ ହୋଇଲେ ରଜବନ୍ତୀ
ତାହାର ଶ୍ରୋଣିତ ପିତୃଲୋକେ ଶ୍ରାହାନ କରନ୍ତି । ୧୨୩୦ ।
ଏସନେକ ଦୋଷ ପୁରାଣେ ମୁହିଂ ଶୁଣି
ବଧୂର ଅମ୍ବା ହୋଇଅ'ଇଂ ଶୁଣ୍ଣର କଳଙ୍କ ଜାଣି । ୧୨୩୧ ।
ମୋତେ ପ୍ରତକାର କରିବା ପାରେଶ୍ୱର ତନଯେ୍ୟ
ଗାନ୍ଧାରୀଙ୍କ ମୋର କରିବା କେବଣ ଉପାୟେ । ୧୨୩୨ ।
ବ୍ୟାସେ ବୋଇଲେ ରାଜା ହୋ ଅଛଇ ସେମନ୍ତ
ହତାଇଶି ନକ୍ଷେ ସମସ୍ତେ ହୋନ୍ତି ଜାତ । ୧୨୩୩ ।

ଅଶ୍ବନ ମଘା ମୂଳା ଆଦ ଗଣ୍ଡ
ସେଥିର ଦୋଷ ଦୁଇ ଦୁଇ ଦଣ୍ଡ । ୧୨୩୪ ।
ଜ୍ୟେଷ୍ଠା ଆଠଦଣ୍ଡ ଅଶ୍ଳେଷା ଦଣ୍ଡ ସାତ
ରେବତୀ ପାଞ୍ଚଦଣ୍ଡ ଏତେକ ଗଣ୍ଡ କହନ୍ତି । ୧୨୩୫ ।
ଅଶ୍ବନ ତିନ ଦଣ୍ଡରେ ଯେବେ ପୁତ୍ର ଦୋହିତା ଉପୁଜଇ
ଦିବସେ ଜାତ ହୋଇଲେ ପିତା ଷୋଳ ବରଷକୁ ଗଣ୍ଡ ପାଇ । ୧୨୩୬ ।
ସେହି ଯୋଗେଣ ଯେବେ ରାତ୍ରେ ହୋଇ ଜାତ
ମାତାକୁ ଷୋଳ ବରଷକୁ ଗଣ୍ଡ ଲଗଇ କହନ୍ତି । ୧୨୩୭ ।
ଉଭୟ ସନ୍ଧ୍ୟାସେ ଯେବେ ଉପୁଜଇ ସନ୍ତତି
ସେ ଦୋହିତା ପୁତ୍ର ନାଶ ଯାନ୍ତି ତତକ୍ଷଣାନ୍ତ । ୧୨୩୮ ।
ମଘା ନକ୍ଷତ୍ର ଆଦ୍ୟ ଦୁଇ ଦଣ୍ଡ
ସେଥେ ଜନ୍ମ ହୋଇଲେ ଅଷ୍ଟ ବରଷକୁ ପାଇ ଗଣ୍ଡ । ୧୨୩୯ ।
ମୂଳା ନକ୍ଷତ୍ର ଆଦ୍ୟ ତିନ ଦଣ୍ଡେ ଗଣ୍ଡ ପାଇ
ଦୁଇ ବରଷକୁ ଗଣ୍ଡ ଯେବେ ପୁତ୍ର ଦୋହିତା ଉପୁଜଇ । ୧୨୪୦ ।
ଜ୍ୟେଷ୍ଠା ନକ୍ଷତ୍ର ପ୍ରଥମ ଆଠ ଦଣ୍ଡ
ସେଥି ଜନ୍ମ ହେଲେ ତିନ ବରଷକୁ ପାଇ ଗଣ୍ଡ । ୧୨୪୧ ।
ଅଶ୍ଳେଷା ନକ୍ଷତ୍ର ଯେବେ ଉପୁଜଇ ରାତ୍ର ପାଞ୍ଚ ଦଣ୍ଡର ମଧ୍ୟେ
ଦ୍ୱାଦଶ ବରଷକୁ ଗଣ୍ଡ ପାଇ ସାଧେ । ୧୨୪୨ ।
ରେବତୀ ନକ୍ଷତ୍ର ଗଣ୍ଡ ପାଞ୍ଚ ଦଣ୍ଡ
ଏଥେ ଜନ୍ମ ହୋଇଲେ ବରଷେ ପାଇ ଗଣ୍ଡ । ୧୨୪୩ ।
ଏତେ ଯୋଗେ ଦିବସେ ଜନ୍ମ ଲଭିଲେ
ପିତାକୁ ଗଣ୍ଡ ଦୋଷ ପୁତ୍ର ଦୋହିତା ଉପୁଜିଲେ । ୧୨୪୪ ।
ରାତ୍ରକାଳେ ଯେବେ ଉପୁଜଇ ସନ୍ତତି
ମାତାକୁ ଗଣ୍ଡ ଦୋଷ ବୋଇଲେ ଅଗସ୍ତି । ୧୨୪୫ ।
ଉଭୟ ସନ୍ଧ୍ୟାସେ ଯେବେ ଉପୁଜଇ ବାଳ
ତାହାର ଉପରେ ସେ କ୍ଷେଗ୍ୟ କରଇ କାଳ । ୧୨୪୬ ।
ଗଣ୍ଡ ଦୋଷ ଲାଗଇ ଏତେକ ନକ୍ଷତ୍ରେ
ବ୍ୟାସେ କହିଲେ ଗାନ୍ଧାର ସେନ ଅଗ୍ରତେ । ୧୨୪୭ ।
ଦେବ ଅସୁର ମାନବ କୁଳେ ଜାତ
ଏହାଙ୍କର ପ୍ରକୃତି ଜାଣିମା କେମନ୍ତ । ୧୨୪୮ ।

ଅଶ୍ୱିନ ମୃଗଶିର ପୁଷ୍ୟା ହସ୍ତା ରେବତୀ
ଶ୍ରବଣା ପୁନର୍ବସୁ ସ୍ୱାତି ଅନୁରାଧା ଏତେକ ଦେବଜାତି । ୧୬୪୯ ।
ରୋହିଣୀ ପୂର୍ବା ଫାଲଗୁନି ପୂର୍ବାଷାଢ଼ା ପୂର୍ବାଭଦ୍ରବ
ଉତ୍ତର ଫାଲଗୁନି ଉତ୍ତରାଷାଢ଼ା ଉତ୍ତର ଭାଦ୍ରବ । ୧୬୫୦ ।
ଏହି ଯୋଗେଣ ଯେବେ ରାତ୍ରେ ହୁଅଇ ଜାତ
ମାତାଙ୍କୁ ଷୋଳ ବରଷକୁ ଗଣ୍ଡ ଲାଗଇ ନିଶ୍ଚିନ୍ତ । ୧୬୫୧ ।
ଉଭୟେ ସନ୍ଧ୍ୟାୟେ ଯେବେ ଉପୁଜଇ ସନ୍ତତି
ସେ ପୁତ୍ର ନାଶ ଯାଇ ଯେ ତତକ୍ଷଣାନ୍ତ । ୧୬୫୨ ।
ମଘା ନକ୍ଷତ୍ର ଯେ ଆଦ୍ୟ ସ୍ତ୍ରୀଶ ଦଣ୍ଡ
ସେଥେ ଜନ୍ମ ହୋଇଲେ ଆଠ ବରଷେ ପାଇ ଗଣ୍ଡ ।୧୬୫୩ ।
ମୂଳା ନକ୍ଷତ୍ରେ ଯେବେ ସ୍ତ୍ରୀଶ ଦଣ୍ଡ ଥାଇ
ସ୍ତ୍ରୀଶ ବରଷକୁ ଗଣ୍ଡ ସେଥେ ଯେ ଜନ୍ମ ପାଇ । ୧୬୫୪ ।
ଜ୍ୟେଷ୍ଠା ନକ୍ଷତ୍ର ଯେ ପ୍ରଥମ ଆଠ ଦଣ୍ଡ
ସେଥେ ଜନମ ହୋଇଲେ ତେର ବରଷକୁ ପାଇ ଗଣ୍ଡ । ୧୬୫୫ ।
ଅଶ୍ଳେଷା ନକ୍ଷତ୍ର ସାତ ଦଣ୍ଡର ମଧ୍ୟେ
ଦ୍ୱାଦଶ ବରଷକୁ ଗଣ୍ଡ ପାଇ ସାଧ୍ୟେ । ୧୬୫୬ ।
ରେବତୀ ନକ୍ଷତ୍ରର ଦୋଷ ପାଞ୍ଚ ଦଣ୍ଡ
ସେଥେ ଜନମ ହୋଇଲେ ବରଷେ ପାଇ ଗଣ୍ଡ । ୧୬୫୭ ।
ସେତେ ଯୋଗେ ଦିବସେ ଜନମ ଲଭିଲେ
ପିତାଙ୍କର ଗଣ୍ଡ ଦୋଷ ପୁତ୍ର ହୋଇତା ଉପୁଜିଲେ । ୧୬୫୮ ।
ରାତ୍ରକାଳେ ଯେବେ ଉପୁଜଇ ସନ୍ତତି
ମାତାଙ୍କର ଗଣ୍ଡ ଦୋଷ ଲାଗଇ ବୋଇଲେ ଅଗସ୍ତି । ୧୬୫୯ ।
ଉଭୟେ ସନ୍ଧ୍ୟାୟେ ଯେବେ ଉପୁଜଇ ବାଳ
ତାହାର ଉପରେ ଶୋକ ହୁଅଇ କାଳ । ୧୬୬୦ ।
ଚନ୍ଦ୍ର ନଷ୍ଟ ହୁଅଇ ଅମାବଇ ଦିନ
ଏହି ଦୋଷେ ପ୍ରାଣ ହୁଅନ୍ତି ଉତପନ । ୧୬୬୧ ।
ସେ ଉଭୟଂପୀ କନ୍ୟାକୁ ବିଭା ହୋଅନ୍ତି ଯେବଣ ପୁରୁଷ
ତାହାର ଶ୍ୱଶୁର ଲଭିଲେ ଲୁଟଇ ଅର୍ଥ ଆୟୁଷ । ୧୬୬୨ ।
ଏସନେକ ବାକ୍ୟ ସନ୍ତୁଂ ବ୍ୟାସେ କଲେ ପ୍ରଶ୍ନ
ଶୁଣିଣ ଗାନ୍ଧାର ସେନ ପଡ଼ିଗଲା ମୂର୍ଚ୍ଛା । ୧୬୬୩ ।

ଭୋଳ କରି ଧଇଲା ତାଙ୍କୁ ବଳମ୍ଭ ସେନ ମନ୍ତ୍ରି
ସାଷ୍ଟାଙ୍ଗ କରାଇଲେ ପଣ୍ଡିତ ଭଗୀଂ ସତ । ୧୬୪ ।
ବ୍ୟାସେ ବୋଇଲେ ଶୁଣ ରାଜା ଗା।୨।୩।
ଆମ୍ଭର ବୁଦ୍ଧି ଅଛୁ କରିବା ପ୍ରତିକାର । ୧୬୫ ।
ରୋଲକ ବୃକ୍ଷ ଯେ କରତାର ରଥ ୨।୪
ମାହାକାଳ ବୃକ୍ଷ ସେ ହରଇ ସର୍ବ ପାପ । ୧୬୬ ।
ପୂର୍ବେ ନିର୍ମାଣ ତାହା କରିଛୁ ପ୍ରଜାପତି
ଦୋଷି କନ୍ୟା ହୋଇଲେ ତାହାକୁ ବିଭା ହୋଇ ଯୁଗତି । ୧୬୭ ।
ଗାନ୍ଧାରସେନ ବୋଇଲା ମୋ ଦ୍ୱାର ଅଛି ଅଗଣାମଧ୍ୟସ୍ଥାନେ
ମୂର୍ଦ୍ଧଂ ତାହାକର ପୂଜା କରଇ ପ୍ରତିଦିନେ । ୧୬୮ ।
ବ୍ୟାସେ ବୋଇଲେ ତୁ ସ୍ୱର୍ଯ୍ୟଂଶଜ ରାଜା
ଜୟ ଫଳ ଅଛୁ ସାହାଡ଼ା ଗଛକୁ କଲେ ପୂଜା । ୧୬୯ ।
ଗାନ୍ଧାର ସେନ ବୋଇଲା ସେ କରତାର ରଥ ୨।୪
ଦ୍ରସନେ ହରଇ ସକଳ ପାତକ । ୧୭୦ ।
ବ୍ୟାସେ ବୋଇଲେ ରାଜା ନୋହଇଟି ଏମନ୍ତ
ଆମ୍ଭର ତତ୍ତ୍ୱଂ ଶୁଣ ଶାହାସ୍ତ୍ର ସଂଗତ । ୧୭୧ ।
ଶରଭ ମାସ କୃଷ୍ଣପକ୍ଷ ଦଶମୀ
ଗୁରୁବାର ଶତଭିଷା ନକ୍ଷତ୍ରେ ଜନ୍ମ ବିଶ୍ୱନାଥ ସ୍ୱାମୀ । ୧୭୨ ।
ନନ୍ଦିକେଶ୍ୱର ଆଣିଲେ ବୃଷଭ ପଲାଣି
ବୃଷର ପିଠିରେ ବସେ ପିନାକ ଶୂଳପାଣି । ୧୭୩ ।
ହୃଦରେ ଆଭରଣ ଉତ୍ତଙ୍ଗ ସପତ ଫେରୁ
ଅନ୍ତରୀକ୍ଷେ ବାଜଇ ନବଲକ୍ଷ ଡମ୍ବରୁ । ୧୭୪ ।
କହୁକେ ଷହଡ଼ନ୍ତ୍ର ପ୍ରଭୁ ଦେବରାଜେ
ବୃଷଭ ଆରୋହଣ ମଧ୍ୟ ଭୁବନେ କଲେ ବଜେ । ୧୭୫ ।
ଅନେକ ଭୁବନେ ପଶି ଦେବ ଶୂଳେ
ଚଳନ୍ତି ମହେଶ୍ୱର ବଇଶଣୀ ନଗ୍ରୀକୂଳେ । ୧୭୬ ।
ହାହାଡ଼ା ବୃକ୍ଷ ଗୋଟିଏ ଅଛୁ ବାମ କଟି ଲାଗି
ପଞ୍ଚ ଗୋଟିଏ ବୃଷଭ ମଥାରେ ଘେନିଲା ବେଗି । ୧୭୭ ।
ଈଶ୍ୱର ପୁତ୍ରକଲେ ଶୁଣ ହୋ ବୃଷଭ
ଏହୁ ପଞ୍ଚ ଗୋଟି ମଥାରେ ଘେନିଲେ ଜୟ ହୋଇବ । ୧୭୮ ।

ବୃଷଭ ବୋଇଲ ସ୍ୱାମି ଯେବେ ବାମେ ସାହାଡ଼ା ବୃକ୍ଷ ଥାଇ
ପତ୍ର ଗୋଟିଏ ମଥାରେ ଘେନଲେ ଅମୃତ ଭୋଜନ ପାଇ । ୧୭୯ ।
ବ୍ରାହ୍ମଣ ପାରୁଶେ ଯେବେ ବସୁର ବୃକ୍ଷ ଥାଇ
ତହିଁରୁ ପତ୍ର ଗୋଟିଏ ମଥାଏ ଘେନଲେ ଶତ୍ରୁ କ୍ଷୟେ ଯାଇ । ୧୮୦ ।
ଆଗରେ ଶେତ ଦୁବ ଦେଖିଲେ ମଥାଏ ଘେନମ ତୋଳି
ଅନେକ ପାତେକ କ୍ଷୟେ ଯାଇ ଶୁଣିମା କପାଳି । ୧୮୧ ।
ତୁଳସୀ ବୃକ୍ଷ ଦେଖିବ ଯେବେ ପଛକଢ ଲେଉଟି
ମଥାରେ ଘେନମ ତାହାର ଝଡ଼ିଲା ପତ୍ରଗୋଟି । ୧୮୨ ।
ଗ୍ୟାନେ ଅଗ୍ୟାନେ ଯେତେକ ପାପ ଅଛି
ତତକ୍ଷଣାନ୍ତ ସବୁ ପାତେକ ଯାଇ ପୋଛି । ୧୮୩ ।
ଅମୃତ ଭୋଜନ ପ୍ରାପତ ହୋଅଇ ସାହାଡ଼ା ପତ୍ର ଘେନଲେ
ଆଜ ପରୀକ୍ଷ ଜାଣିମା ସଦାନନ୍ଦ ବୋଇଲେ । ୧୮୪ ।
ଚତୁର୍ଦଶ ଭୁବନ ଭ୍ରମିଲେ ମାହାଦେବ
ପାଣି ଘାସ କଣକ ନ ନସ୍ପୁନ୍ତି ବୃଷଭ । ୧୮୫ ।
ମନସଶ ବୃଷଭଙ୍କୁ ତୁଳାନ୍ତି ଉପବାସେ
ଅନୁବ୍ରତେ ଭ୍ରମନ୍ତି କ୍ଷଣେ ହେଁ ନ ରହନ୍ତି କହୁଁଣସି ପାଶେ । ୧୮୬ ।
ବାହୁଡ଼ି କପିଳାସେ ଆଦତ୍ୟର ଆସ୍ତେ
କପିଳାସ ନକଟେ ହୋଇଲେ ତ୍ରିସୁନେତ୍ରେ । ୧୮୭ ।
ଅମୃତ ଯୋଗାଡ଼ମାନ ରନ୍ଧନ କରି ଉମା
ସ୍ୱାମିଙ୍କ ବାଟ ଚାହୁଁ ସମୁଖ ହୋନ୍ତି ବାମା । ୧୮୮ ।
ତେର ଘନ ଯନ୍ତୁଂ ହୋଇଲେ କଟ ର
ଆପଣେ ଠାକୁରାଣୀ ବଜସ୍ୱେ ମୁଣ୍ଡୋହଂର । ୧୮୯ ।
ସୁବର୍ଣ୍ଣ ପଲମେ ଅମୃତ ଯୋଗାଡ଼ମାନନ୍ତ ଭରି
ପିଠା ଗୋଟିକା ଖିରି ସାକର ଆଦ କରି । ୧୯୦ ।
ସୁବର୍ଣ୍ଣ କୁଡ଼ୁଆରେ ସମସ୍ତ ପୁରେଇ
ଦେବେ ଅର୍ଣ୍ଣପାଣି ଦେଇ ପଞ୍ଚ ଗୁଣ୍ଡି ମୁଖେ ଲାଇ । ୧୯୧ ।
ପାଣି ଝରି ଘେନ ଡନ ଗୁଣ୍ଡି ଭୁଞ୍ଜି
ଏସନେକ ସମୟେ ଡମ୍ବୁରୁ ଶବଦ ବାଜି । ୧୯୨ ।
ଶୁଣିଣ ଗୋସାମଣି ବିଷାଦ ହୋଇଲେ
କେମନ୍ତ କରିବଇଂ ଇଶ୍ୱରେ ବଜେ କଲେ । ୧୯୩ ।

ଘଙ୍କୁରେ ମୁଣ୍ଡୋଦ୍ଧଂ ଗ୍ରୁଡଣ ଉଠିଲେ ବେଗ ହୋଇ
ବୃଷଭ ଗୁଆଣିରେ ବେଗେ ପକାଇଲେ ନେଇ । ୧୨୯୪ ।
ପିଠା ଖିରଯାକ ନେଇ ପୁରେଇଲେ ଘଡ଼ିରେ
ଆଚ୍ଛୋଦନ ଘାଣ ଦେଖା ହୋଇଲେ ବାହାରେ । ୧୨୯୫ ।
ଲକୃଷ୍ଣରେ ଦେଖା ପାଣି ପୁରେଇ
ଗ୍ରାମୁରେ ପ୍ରବେଶ ହୋଇଲେ ମାହାମାଈ । ୧୨୯୬ ।
ନନ୍ଦକେଶ୍ୱରଙ୍କୁ ଘଇଣ ଅର୍ଘ୍ୟ ଦେଲେ ସଦାନନ୍ଦ
ବୃଷଭ ଗୋଟିକ ଗୁଆଣିରେ ନେଇ ବାନ୍ଧ । ୧୨୯୭ ।
ଆଗ୍ୟାଂ ପ୍ରମାଣେ ନନ୍ଦକେଶ୍ୱର ଚଳିଗଲ୍ଲ
ଯତନ କଣ ନେଇ ଗୁଆଣି ଖମ୍ଭରେ ବାନ୍ଧଲ୍ଲ । ୧୨୯୮ ।
ଈଶ୍ୱରେ ଆଗ୍ୟାଂ ଦେଲେ ନନ୍ଦକେଶ୍ୱରଙ୍କୁ ଘଇ
ଭକ୍ଷ ପାଣି କିଛୁ ନ ଦେବୁଟି ବସୁଲକଇ । ୧୨୯୯ ।
ସ୍ୱାମି ଆଗ୍ୟାଂ ପ୍ରମାଣେ ବାନ୍ଧଣ ଅଇଲ୍ଲ
ବାହାର କ ଣି କଣ କବାଟ ପାଡ଼ିଲ୍ଲ । ୧୩୦୦ ।
ବୃଷଭ ବସ୍ଥରଇ ଈଶ୍ୱରେ କଷଣ ମୋଚେ କଲେ
କରତାର ନାଥ ସ୍ନେହା ବସ୍ଥର ନ କଲେ । ୧୩୦୧ ।
ସ୍ନେ ମୋହୋର ସ୍ନେଥରେ ନସ୍ତ ହୋଅନ୍ତେ
ଆବର କରତାରଙ୍କୁ କେ ହୋଇବ ଭଗତେ । ୧୩୦୨ ।
ବକଲେ ବଇଲ ଯେ ଦଗ୍ଧିଣଇ କୁଣ୍ଡେ
ଦେଖିଲ୍ଲ ଅମୃତ ଯୋଗାଡ଼ ପୁରିଅଛୁ ଘଣ୍ଡେ । ୧୩୦୩ ।
ତୋଷେଣ ଭକ୍ଷଣ ଯେ କଲକ ବୃଷଭ
ସୁମରଇ ଏକ ଲସ୍ୱେ କରତାର ଦେବ । ୧୩୦୪ ।
ଭୁଞ୍ଜିଣ ବଇଲ ଯେ ହୋଇଲ୍ଲ ଆନନ୍ଦ
ହେ ବୁଧ ଜନେ ଲସ୍ୱ କଣ କରତାର ପାଦେ ବନ୍ଦ । ୧୩୦୫ ।
ଈଶ୍ୱର କଷଣ୍ଡୁ ବୃଷଭ ହୋଇଲ୍ଲଟି ପାର
ଜପ କଣ ପାରଇ ଆବର ନାଶକର । ୧୩୦୬ ।
ଏହୁ ଫଳ ଶ୍ରୁତ ବରହ୍ମନାରସ୍ନେଣ ପ୍ରସାଦେ
ଶୁଦ୍ରମୁନ ସାରୋଳା ଦାସ ବନ୍ଦଇ କରତାର ପଦ୍ମପାଦେ । ୧୩୦୭ ।
ବ୍ୟାସେ ବୋଇଲେ ହୋ ଶୁଣ ଗାନ୍ଧାର ସେନ ନୃପତ୍ତ
ଏହାର ସର ସେଜନେଲେ ଏସନେକ ଫଳ ଶତ । ୧୩୦୮ ।

ଭୃଙ୍ଗୀ ଣ ବୃଷଭ ସେ ତ୍ରିପୁଣ୍ଡ ହୋଇଲା
ଶୋଷକୁ ପଣା ଭୋକକୁ ଅମୃତ ଯୋଗାଡ଼ ପାଇଲା । ୧୩୦୯ ।
ଶୋଇଅଛୁ ବୃଷଭ ହୋଇଣ ତ୍ରିପୁଣ୍ଡ
ଶୁଭେଣ ପ୍ରସର ହୋଇଲାକ ଗଢ । ୧୩୧୦ ।
କବାଟ ଫେଡ଼ିଣ ସେ ଦେବ ତ୍ରିଶୂଳ
ଭିତରେ ପଶି ବୃଷଭକୁ ସ୍କନ୍ଧଂଲେ ସୂଢ଼ଳ । ୧୩୧୧ ।
ଈଶ୍ୱର ହସିଲେ ବୃଷଭକୁ ସ୍କନ୍ଧଂ
ଜପ ଜପ ଖାଇଲୁ ହୋ ସାହାଡା ବୃକ୍ଷେ ଧାସ୍ତି । ୧୩୧୨ ।
ବଇଲ ବୋଇଲା ଦେବ ଶାହାସ୍ତ୍ର ନୋହଇ ମିଥ୍ୟା
ସୁଖେ ପାଶ ହୋନ୍ତି ସେ କରତାର ଭଗତା । ୧୩୧୩ ।
ଈଶ୍ୱରେ ବୋଇଲେ ଋଦ୍ଧ ପାଇଲୁ ଯେତେକ
ସଂହାର ଜନଙ୍କୁ ପ୍ରାପତ ହୋଉ ତେତେକ । ୧୩୧୪ ।
ବଇଲ ବୋଇଲା ଦେବ ପ୍ରତକ୍ଷେ ପାଇଲି
ଭୃମ୍ବର ମୁଣୋହ୍ନଂ ନୋହୁଂ ଅଗ ମୁଂ ଖାଇଲି । ୧୩୧୫ ।
ଯେ ଯାହାକୁ ସ୍ୱାମି ହୋଇଥାଇ ଭଗତ
ଅବଶ୍ୟ ତାହାକୁ ସେ କଷଣ୍ଡ ତାରନ୍ତି । ୧୩୧୬ ।
ସେବକ ସେବା ଯେବେ ସ୍ୱାମି ନ ଘେନନ
କେବଣ ମତେ ଦେବ ସେବକ ତ୍ରଣବ । ୧୩୧୭ ।

ଯେତେକ ଯୋଗାଡ଼ ଭୃମ୍ବର ମଡ଼ଫୁଲ
ଭୃମ୍ବର ମଣୋହ୍ନଂ ନ କରୁଂ ଆଗ ମୁଂ ଖାଇଲି । ୧୩୧୮ ।
ସ୍ୱାମି ଲଇଂ କଣ ଦେଖନ ମୋହୋର ଗୁଆଣି
ଗନ୍ଧ ଆମୋଦଇ କପୂର ବାସ ଜାଣି । ୧୩୧୯ ।

ସରୂପ ଦେଖିଣ ଈଶ୍ୱର ବିଷାଦ ହୋଇଲେ
ପାର୍ବତୀ ସନ୍ନିଧେ ଯାଇଣ ପଶ୍ନଶଲେ । ୧୩୨୦ ।

ବୃଷଭକୁ ଦେବୀ କେତୁ ଦେଲାକ ଯୋଗାଡ଼
ତୁମ୍ଭେ କି ଜାଣ ତଥର ଦେଶ୍ୱର । ୧୩୨୧ ।

ପାର୍ବତୀ ହସିଲେ ସଦାଶିବଙ୍କ ବଚନ ଶୁଣି
ଭୃମ୍ବର ଆସିବା ବିଳମ୍ବ ଦେଖି ଶୂଳପାଣି । ୧୩୨୨ ।

ସମସ୍ତ ବାଡ଼ିଣ ମୁଂ ଦେବ ବସିଲି ସେ ଭୃଙ୍ଗି
ଏମନ୍ତ ସମସ୍ତେ ଦେବ ଡମ୍ବରୁ ଶବଦ ବାଜି । ୧୩୨୩ ।

କ୍ଷୁଧାରେ ତୁମ୍ଭେ ମୋତେ କୋପ କରିବ ବୋଲି
ଦସ୍ତୁ ନେଇ ବୃକ୍ଷର ଗୁଆଣିରେ ପୂରେଇଲି । ୧୩୨୪ ।
ସଦାନନ୍ଦ ହସିଲେ ଶିଶୁଙ୍କର ବଚନେ
ଏସନ କଣ ପ୍ରାପତ କରନ୍ତି ଦେବତାମାନେ । ୧୩୨୫ ।
କହନ୍ତି ବ୍ୟାସେ ପାରେଶ୍ୱରଙ୍କ ନନ୍ଦନେ
ଚତୁଫଳ ଶୂନ୍ୟ ହାଦେ ଅଛି ଏସନେ । ୧୩୨୬ ।
ସ୍ଥୂଳ ହୋ ରାଜନ ସାହାଡ଼ା ବୃକ୍ଷକୁ ଦେଖିବା
ଗାନ୍ଧାରୀଙ୍କ ତାହାକୁ ପ୍ରଦାନ କରିବା । ୧୩୨୭ ।
ଭିତର ନବର ଅଗଣା ମଧ୍ୟସ୍ଥାନେ
ସେ ଗୋଲକ ବୃକ୍ଷକୁ କଲେ ବଟବେଶ ବିଧାନେ । ୧୩୨୮ ।
କନ୍ୟା ବେଶ କରାଇ ଆଣିଲେ ଗାନ୍ଧାରୀ
ମଙ୍ଗଳ ବାକ୍ୟ ପିତୃକାର ବରଣ କରି । ୧୩୨୯ ।
ହୃଦପାଦ ଗୋତ୍ର ସେ ଶାକୋଟ ବୃକ୍ଷ
ବୃନ୍ଦା ଅର୍କ ଗୋତ୍ର ସେ ଗାନ୍ଧାର ସେନ ନୃପ । ୧୩୩୦ ।
ଓହୋ କୁଳଗୋତ୍ର ଉଚ୍ଚାରଣ କଲେ ମୁନେ୍ୟ
ଗୋଲକ ବୃକ୍ଷକୁ କଲେ ଗାନ୍ଧାରୀଙ୍କ ପ୍ରଦାନେ । ୧୩୩୧ ।
ଗାନ୍ଧାରୀ ତରେଣ ଗୋଲକ ବୃକ୍ଷ ଡାଳେ
ମନ୍ତ୍ର କୁଶ ବନ୍ଧନ କରନ୍ତି ତପଶୀଳେ । ୧୩୩୨ ।
ଗାନ୍ଧାରୀ ବୃକ୍ଷର ସହିତ ଏକ ଯୋଗ ହୋଇଲି
ସେ ସାହାଡ଼ା ବୃକ୍ଷ ଗୋଟି ତତ୍‌କ୍ଷଣେ ଜଳି ଗଲି । ୧୩୩୩ ।
ଦେଖିଣ ଚକିତ ହୋଇଲେ ମୂନ ବ୍ୟାସେ
ଗାନ୍ଧାର ସେନ ନୃପତି ବସିଲି ତରସେ । ୧୩୩୪ ।
ବ୍ୟାସେ ବୋଇଲେ ହୋ ନ ଭାଳ ନରପତି
ସମସ୍ତ ଅରିଷ୍ଟି ସଂହାର ହୋଇଲି ବିନଶ୍ୟତି । ୧୩୩୫ ।
ତୁ ଏବେ ଆମ୍ଭର ବଚନ କରିବା
ସେ ତୋର କୁମାରୀଙ୍କ ଆମ୍ଭ ଧୃତରାଷ୍ଟ୍ରକଇ ଦେବା । ୧୩୩୬ ।
ବ୍ୟାସଙ୍କର ବଚନେ ରାଜା ସମଦଣ୍ଡ ପାଳି
ଗାନ୍ଧାରୀଙ୍କ ଘେନିଣ ତହିଁ ଚଳିଲେ ବେଗି । ୧୩୩୭ ।
କନ୍ୟାକଇ ଘେନି ବ୍ୟାସ ମହାସତି
ଧୃତରାଷ୍ଟ୍ରକୁ ସମର୍ପଣ କଲେ ସେ ଯୁବତି । ୧୩୩୮ ।

ଧୃତରାଷ୍ଟ୍ର ଜାତ ବ୍ରହ୍ମ ଅସୁର କୃତକା ବୃଷ ରାଶି
ଗାନ୍ଧାରୀ ବ୍ରହ୍ମ ଅସୁରୀ ଆବର ହଅଂଶୀ । ୧୩୩୯ ।
ଧୃତରାଷ୍ଟ୍ର ନାସ୍ତେଂ ବରଣ ଅନେକ କନ୍ୟା ମଲେ
ଗାନ୍ଧାରୀ ବରଣେ ବାଇଶି ରାଜା ନାଶ ଗଲେ । ୧୩୪୦ ।
ଧୃତରାଷ୍ଟ୍ରକୁ ଅନ୍ୟ କନ୍ୟା ନାହିଂ ଗାନ୍ଧାରୀକ ନାହିଂ ଅନ୍ୟ ବର
ସ୍ୱେ ଜାତ ବ୍ରହ୍ମ ଅସୁରୀ ସେ ବ୍ରହ୍ମ ଅସୁର । ୧୩୪୧ ।
ଦୁହିଂଙ୍କର ଏକ ଯୋଗ ବଢ଼ିଲ ପୀରତ
ଧୃତରାଷ୍ଟ୍ର ଗାନ୍ଧାରୀ ଏକ ମେଳ ମତ । ୧୩୪୨ ।
ବଦସ୍ତନ୍ତ ଅଗସ୍ତି ଶୁଣ ବଇବସୁତ ମନୁ
ଗାନ୍ଧାରୀକ ଧୃତରାଷ୍ଟ୍ର ହୋଇଲେ ପ୍ରଦାନୁ । ୧୩୪୩ ।
ବେନ ଅସୁରେ ହୋଇଲେ ସମ ଯୋଗ
ବଢ଼ିଲ ଭାବ ଯେ ଉପୁଜିଲ ବହୁତ ରଙ୍ଗ । ୧୩୪୪ ।
ବଇବସୁତ ମନୁ ପୃଚ୍ଛା କଲେ ଅଗସ୍ତିଙ୍କି
ପଣ୍ଡୁ କେମନ୍ତେ ଜନ୍ମ ହୋଇଲେ କହିବା ମାହାଯତି । ୧୩୪୫ ।
ଶୁଣ ହୋ ମାହାତମା ଯୁଗ ଯୁଗାନ୍ତ ପୁରୁଷ
ପଣ୍ଡୁର ଚରିତ ଅମୃତ ମଧ୍ୟେ ରସ । ୧୩୪୬ ।
ସିଧ୍ୟ ପୁର ନଗ୍ରେ କୋନ୍ତ ଭୋଜ ବୋଲି ନୃପତି
ତାହାର ଭାରଯା ନାମ ଅଟଇ ଜମ୍ବୁବତୀ । ୧୩୪୭ ।
ମଦନ ମାହାଦେବୀର ସେ ଅଟଇ କୁମାରୀ
କରବୀର ପୁରର ସେ ଅଟଇ ଅଧିକାରୀ । ୧୩୪୮ ।
କୋନ୍ତ ଭୋଜ ରାଜାର ଏକଇ ଦୋହିତା
ସ୍ତାରେଣ ନୃପତି ତାହାର ନାମ ଦେଲ କୋନ୍ତା । ୧୩୪୯ ।
ବଡ଼ ସୁନ୍ଦର ସେ ଅଟଇ ଭାଗ୍ୟବନ୍ତୀ
ଅତି ସୁନ୍ଦର ଅରୂଳାସ୍ଥିତ ଯୁବତୀ । ୧୩୫୦ ।
ପୁଏ ନାହିଂ ସେ କୋନ୍ତ ଭୋଜ ରାଜାର
ଏକଇ ଦୁଲଣୀକ ସେନେହ ଅପାର । ୧୩୫୧ ।
ଶ୍ରପଭ ଶୁକଳ ପୁର୍ଣ୍ଣିମୀର ଦିନ
ବୃହସ୍ପତି ବାର ପୁଷ୍ୟା ନକ୍ଷତ୍ର ଉଦ୍ୟମାନ । ୧୩୫୨ ।
ବାଇବ ନାମେ କରଣ ଶୁଭ ନାମେ ଯୋଗ
ଶ୍ରପଭ ସଂକରାନ୍ତିକ ତେର ଦିବସ ଭୋଗ । ୧୩୫୩ ।

ଏମନ୍ତ ସମୟେ ଦୁର୍ବାସା ମହର୍ଷି
କୋନ୍ତ ଭୋଜ କଟକେ ବିଜୟେ କଲେ ଆସି । ୧୩୫୪ ।
ଦେଖି କୋନ୍ତଭୋଜ ପାଦା ଅର୍ଘ ଦେଲେ
ନମ୍ରଶିଳ ମହାତ୍ମା ଆଜଦିନ ସୁଫଳ ହୋଇଲା । ୧୩୫୫ ।
ଅନେକ କାର୍ଯ୍ୟ ସୁଫଳ ହୋଇଲା ଦେବ ମୁକୁ
ମୁହିଁ କ୍ଷମ ହୋଇଲି ତୋହର ପାଦ ପଖାଳିବାକୁ । ୧୩୫୬ ।
ଦୁର୍ବାସାଏ ବୋଇଲେ ତୁ ଅଛୁନା କୁଶଳେ
ପାତ୍ର ଅମାତ୍ୟ ତୋତେ ଖଟନ୍ତିନା ସକଳେ । ୧୩୫୭ ।
ସର୍ବ କୁଶଳ ବୋଲି ବୋଇଲେ କୋନ୍ତ ଭୋଜ
ଜୀବନ ସାର୍ଥକ ତୋତେ ଦେଖିଲି ମୁଁ ଆଜ । ୧୩୫୮ ।
ଦୁର୍ବାସାଏ ବୋଇଲେ ଅଇଲୁଁ ତୋହୋର ରାଜ୍ୟକୁ
ଚତୁର୍ମାସ୍ୟା ରହିବୁଁ ଆଶ୍ରମ ଖଣ୍ଡିଏ ଦେବୁ ଆମ୍ଭକୁ । ୧୩୫୯ ।
ବଢ଼ଇ ସଂପଦ ରାଜା ଦେଖିଲୁଁ ତୋର ପୁର
ରହିବାକୁ ତୃଷ୍ଣା ହୋଇ ବଳିଲା ଆମ୍ଭର । ୧୩୬୦ ।
କୋନ୍ତ ଭୋଜ ବୋଇଲେ ମୁନି ମୁଁ କିସ କରିବି
ରୁହାଇଲେ ତୋତେ ମୁଁ ଉଗଡି ହୋଇ ନ ପାରିବି । ୧୩୬୧ ।
ଯାଅ ବୋଲି ବୋଇଲେ କୋପ ବଢ଼ିବ ତୋର ତନୁ
ଜାଣି ଅନୁଗ୍ରହ ମୋତେ କରିବା ମହାମନୁ । ୧୩୬୨ ।
ଦଶ ସହସ୍ର ଯୋଜନେ ମୁଁ ଅଟଇ ଅଧିକାରୀ
ବନ୍ଧୁ ଭ୍ରାତ ପୁତ୍ର କେହି ନାହିଁ ନା ମୋହର । ୧୩୬୩ ।
ରାଜ୍ୟ ଚଳାଏଣ ପାଶୋରଇ ଜନଙ୍କ ତୋତେ
ତୁ ଈଶ୍ୱର ସମାନେ ଦୃଷ୍ଟି ନ ପୁଣ କୋପ କରୁ ମୋତେ । ୧୩୬୪ ।
ଦୁର୍ବାସାଏ ବୋଇଲେ ତୁ କେସନେକେ ଆମ୍ଭନ୍ତ ସେବା କରିବୁ
ତୋହର କଣ ଜଣେ ଆମ୍ଭନ୍ତ ଦେଇଥିବୁ । ୧୩୬୫ ।
ଆଶ୍ରମ ଗୋଟି ଲିପିବ ଅଗଣା ଝାଟଅଇ ଦେବ
ପାଣି ଘଟ ଗୋଟିଏ ଫୁଲ ଗୁଚ୍ଛଏ ଆଣିବ । ୧୩୬ ।
ପାଲଟା ବସ୍ତ୍ର ଖଣ୍ଡି ପଖାଳିବ ନେଇ
ଏତେକ କରି ସେ ଥିବ ଆମ୍ଭଙ୍କୁ ଜଗଢି ହୋଇ । ୧୩୬୭ ।
କୋନ୍ତ ଭୋଜ ବୋଇଲେ ମୁଁ ଆନକୁ କନ୍ୟା ଦେବି
ଏକା ଦୋହିତା ଗୋଟିଏ ମୋହୋର ତୁମ୍ଭଙ୍କ ଥାଇ ସେବି । ୧୩୬୮ ।

ଦୋହିତାଙ୍କୁ ରାଇ ଅର୍ଘ୍ୟଂ ଦେଲେ କୋନ୍ତ ଷେଜ
ଆଶ୍ରମ ଖଣ୍ଡିଏ କଲେ ନ ଗ୍ରର ବାହ୍ୱିଜ । ୧୩୬୯ ।

କୋଇନ୍ତାଙ୍କୁ ବଳସ୍ଥ ହୋଇଥାଇ ଅନୁବ୍ରତେ
ଦୁର୍ବାସ୍ୟା ମହର୍ଷିଙ୍କ ଘଟିଥାଇ ଭଗତେ । ୧୩୭୦ ।

ରାଜପ୍ରଷ୍ଟେଣ ଅଗଣା ପଥଂର
ଛଡ଼ା ପାଣି ମନ୍ଦାଙ୍କୁ ପକାଇ ବନ୍ଦନ କର । ୧୩୭୧ ।

ପଢତ ଆମ୍ବପତ୍ର ଲେଚନ୍ତେ ଆଣଇଂ ପାଙ୍ଗିଂଟି
ପଖାଲ ପିଢ଼ାଙ୍କୁ ପଖାଇ ପାଲଟା କାଛିଟି । ୧୩୭୨ ।

ଗଡ଼ୁ ପାତ୍ରି କପୋତ୍ର ମାଜଇ ଆମ୍ବିଲେ
ଆଶ୍ରମ ଝଣ୍ଡି ଲିପିଆଣଇ କୃଷ୍ଣ ଗୋମଳେ । ୧୩୭୩ ।

ବଲ୍ଲଢ ଗୁଡ଼ାଙ୍କୁ ମେଦଇ ପଷ୍ଟକର
ପତ୍ର ଗୁଡ଼ାଙ୍କୁ ଆଣଇ ବେଲ ଗଛରୁ ପାଶ । ୧୩୭୪ ।

ବାକ୍ରୁତ ସୁକୁମାର ଯେ ରାଜାର କୁମାରୀ
ସୁର୍ଯ୍ୟାଜପଣେ ଋଷିଙ୍କି ଆଇ ସେବା କଣ । ୧୩୭୫ ।

ଋଷି ରାଜେଣ ବସିଥାନ୍ତି ଭିତରେ
କବାଟ ଗୋଟି ପାଣ୍ଡୁ କୋଇନ୍ତା ବସିଥାଇ ଦୁଆରେ । ୧୩୭୬ ।

କୋନ୍ତାର ଭଗତେ ଅନେକ ସନ୍ତୋଷ ଦୁର୍ବାସ୍ୟା
ନାନା ତୀର୍ଥକୁ ମୁଢ ନ କଲେ ମନଷ୍ୟା । ୧୩୭୭ ।

କୋନ୍ତଷେଜ ରାଜ୍ୟରେ ରହିଲେ ନିଷ୍ଟିନ୍ତେ
ଚତୁମାସ୍ୟା ବୋଲି ରହିଲେ ପଞ୍ଚୁ ବରଷ ପର୍ଯନ୍ତେ । ୧୩୭୮ ।

ମାହାତୀର୍ଥେ ଅର୍ଧ ଭିତଆ ପଶ୍ଚିମ ପାଦ ସ୍ତ୍ରୀର
ଦକ୍ଷିଣ ମହଦଧିକ ଋଷିମାନେ ଯାଉଛନ୍ତି ସ୍ନାହାନ କଣ । ୧୩୭୯ ।

କୋନ୍ତାଷେଜ ଅଗ୍ରତେ ମିଳଲେ ତପୋବନ୍ତ
ଦଣ୍ଡ କମଣ୍ଡଳ ଘେନ ଆବର ତମ୍ବା ପାତ୍ର । ୧୩୮୦ ।

ଦେଖିଣ ଉଠିଲା ସେ ମସ୍ତାଧର‍୍ସ୍ୱାମି
ମୁନିଙ୍କର ପାଦତଳେ ହୋଇଲାକ ପଣାମି । ୧୩୮୧ ।

ସେତେକାଳେ ମୋତେ ଅନୁଗ୍ରହ କଲେ ଦୁର୍ବାସ୍ୟା
ସେତେକାଳ ଭଗତେ ବଢ଼ାଇଲେ ମନଷ୍ୟା । ୧୩୮୨ ।

ଦୁର୍ବାସ୍ୟାଙ୍କୁ ବୋଇଲେ ଆମ୍ଭେ ସେହାନ୍ତି ଅଇଲୁଂ
ପାଞ୍ଚ ବରଷ ପର୍ଯନ୍ତେ ତୋହୋର ରାଜ୍ୟେ ରହିଲୁଂ । ୧୩୮୩ ।

ବୋଲଇ ଗଜନ ନନ୍ଦଶଳ୍ପ ତପୋବନ୍ତ
କେସନେକେ କୋଇନ୍ତା ହୋଇଲ୍ପ ଏତେକ ଭଗତ । ୧୩୮୪ ।
ଦୁଷ୍ମସ୍ୟାସ୍ତେ ବୋଇଲେ ବଡ଼ ସୁଣ୍ଟେ ଥିଲୁଂ
କୋଇନ୍ତାର ଭଗନେ ନାନା ତୀର୍ଥ ପାସୋଶଲ୍ପଂ । ୧୩୮୫ ।
ଆମ୍ଭେ ତୋହୋର ଗଜ୍ୟେ ପାଳଲୁଂ ବହୁତ ସୁ ସ୍ତ
ଆହୋ କୋଲ୍ପୋକ ତୋହୋର ହୋଉ ଘାତପୁଣ । ୧୩୮୬ ।
ସୋମବଂଶେ ସୁଲକ୍ଷଣୀ ହୋଉ ତୋର କୋଇନ୍ତା
ୟାଙ୍କ ପ୍ରଦାନ ଏହାଙ୍କୁ କରୁ ଧର୍ମ ଦେବତା । ୧୩୮୭ ।
ଧର୍ମବନ୍ତ ହୋଉ ତୋହୋର ପୁଣ ହୋଉ ଜାତ
ପଞ୍ଚୁ କଣ୍ଟକରେ ଠାକୁରାଣୀ ହୋଉ ତୋ ହୋହୁତ । ୧୩୮୮ ।
ଏସନେକ ବର ଦେଇ ଚଳିଲ ବ୍ରହ୍ମସନ୍ତ
କୋଇନ୍ତା ଗୋଡ଼ାଇଛନ୍ତି ମୁନଙ୍କର ପଛ କଉ । ୧୩୮୯ ।
ଗଜ୍ୟ ତେଜ ମହାସ୍ମାସ୍ତେ ପଶିଲେ ବନସ୍ତେ
କୋଇନ୍ତା ଗୋଡ଼ାଇଛନ୍ତି ଧଞ୍ଚୁ ଯୋଜନ ପଶସନ୍ତେ । ୧୩୯୦ ।
ଗୋଡ଼ାବନ୍ତେ ବନସ୍ତରେ ଝୁଣ୍ଟି ଲ ତେ ଫୁଟ
ଧାଉକାରେ ଦୁଷ୍ମସ୍ୟାସ୍ତେ ସ୍ୱହୁଂଲେ ଲେଉଟି । ୧୩୯୧ ।
ଦୁଷ୍ମସ୍ୟାସ୍ତେ ବୋଇଲେ ଗୁ ଗୋଡ଼ାଇ ଅଛୁ ଆଇ
ଅମ୍ଭନ୍ତ ଗ୍ରନ୍ତ କ ତୋହୋର ଚିତ ନ ବଳଇ ଯାଇ । ୧୩୯୨ ।
ବାହୁତ କୋଇନ୍ତା ଗୋ ନ ପଶ ବନ୍ୟକୁ
ବାଘ ଭାଲୁକ ନାଶ ଯେ କଶବେ ଶ୍ରୀମନ୍ତ୍ରୁ । ୧୩୯୩ ।
କୋଇନ୍ତାସ୍ତେ ବୋଇଲେ ମୁଂ ଈଶ୍ୱର ସମାନେ ଋଷିଙ୍କି ସେବା କଲ୍ପ
ଏତେକାଳ ହେବ ମୁଂ କଛୁ ହୁଂ ନ ପାଇଲ୍ପ । ୧୩୯୪ ।
ବାଲ ଗୁଡ଼ସ୍ତେ କୁଡ଼ାଇ ପଣ ଲେଚସ୍ତେ ଦେଇ
ଲସ୍ତେ କଣ ସେବଲେ ଗ୍ରସନ ହୋଅଇ ସେହୁ । ୧୩୯୫ ।
ତୋହୋର ଗ୍ରାସ୍ତେ ଋଷିଙ୍କି ଏତେକାଳ ସେବା କଲ୍ପ
ନିଷ୍ଫଳ ହୋଇଲ୍ପ ମୁଂ କଛୁ ନ ପାଇଲ୍ପ । ୧୩୯୬ ।
ଦୁଷ୍ମସ୍ୟାସ୍ତେ ବୋଇଲେ ଗୁ ତ ଗୁନ ହୋଇ ରହିଲୁ
ପାଞ୍ଚ ବରଷ ସେବାକଲ କଛୁ ହୁଂ ନ ମାଗିଲୁ । ୧୩୯୭ ।
ମହାମନ୍ତ୍ର ମହୌଷଧି ନ ଦେଉଂ ହାଦେ ଯାଚ
ଅମ୍ଭେ କସ୍ମଶଲ୍ପଂ ସ୍ୱେହାର କାର୍ଯ୍ୟ ନାହୁଂ କଛୁ । ୧୩୯୮ ।

ସେବେ ହେ ମାହାତ୍ମା ମୋତେ ଅନୁଗ୍ରହ କରିବା
ଋଷି ଆମ୍ଭେ ମନବାଗୀ ପଦାର୍ଥେକ ଦେବା । ୧୩୯୯ ।
ଦୁର୍ବସ୍ୟାଏ ବୋଇଲେ ଯେ ତୋହୋର ଇଚ୍ଛା
ଦେବୁଂ ଅବଶ୍ୟ ମାଗରେ ଯେ ତୋହୋର ମନବାଞ୍ଛା । ୧୪୦୦ ।
ମୁହିଂ ବାଳ ଋଷି ନ ଜାଣଇଂ ସନ୍ଦେହ
ଜାଣି ମହାତ୍ମା ମୋତେ କରିବା ଅନୁଗ୍ରହ । ୧୪୦୧ ।
ଦୁର୍ବସ୍ୟାଏ ବୋଇଲେ ଋଷିଙ୍କର ଯେତେକ ବ୍ରତ
ସୁନ୍ଦର ଭ୍ରୁଆ ହୋଇବ ପଣ୍ଡିତ ଭାଗ୍ୟବନ୍ତ । ୧୪୦୨ ।
ପୁଣ ହୋଇବ ଅତି ବଳବନ୍ତା
ସେସନେକ ବାଞ୍ଛା ଋଷିମାନଙ୍କର କଥା । ୧୪୦୩ ।
ଆମ୍ଭେ ତୋତେ ଦେବୁ ମାଧ୍ୟମନ୍ତ୍ର ନଦୋମାଳ
ଯତନ କରି ସେହା ଥିବୁଟି ସମ୍ଭାଳି । ୧୪୦୪ ।
ଶେଯ୍ୟାଗତେ ସୁମରିବୁ ଯାହାକୁ
ସେହୁ ପ୍ରାପତ ହୋଇବ ଜାଣ ତୁଚ୍ଛୁ । ୧୪୦୫ ।
ଜପାମାଳି ଦେଇଣ ଚଳିଲେ ବ୍ରହ୍ମଯତି
ଅନାତ୍ତେ ମାହାତ୍ମାଏ ଗଲେକ ତଡ଼ତି । ୧୪୦୬ ।
ଦୁର୍ବସ୍ୟାଙ୍କର ଚରିତ ଏସନେକ ଶୁଣି
ବସ୍ତ୍ର କାଢ଼ି ସେ କୋନ୍ତଭୋଜର ଦୁଲଣୀ । ୧୪୦୭ ।
ସେ ମାଳା ଗୋଟି ଯତି ଦେଇଗଲେ ମୋତେ
ସେଥିର ତତନ୍ତ ମୁଂ ଜାଣିମି କେମନ୍ତେ । ୧୪୦୮ ।
ଯମୁନାକୂଳେ ଦେଖି ଶାଳପତ୍ର ଶେଯ୍ୟା ଗୋଟିଏ କଲେ
ମେରୁ ଅସ୍ତ ହୋଅନ୍ତେ କରତାର ନାଥଙ୍କୁ ସୁମରିଲେ । ୧୪୦୯ ।
ଅସ୍ତ ହୋଅନ୍ତେ ଭୂମିର ଆସନ କଂପିଲା
ଦୁର୍ବସ୍ୟାର ମହାମନ୍ତ୍ର ସେ କୋଇନ୍ତୀ ସୁମରିଲା । ୧୪୧୦ ।
ମୁହିଂ ସେହା ଚାହାଁଇ ନ ସିବଇଂ କେମନ୍ତେ
ବଳଏ ତରଣିନାଥେ କୋଇନ୍ତୀର ଶେଯ୍ୟାଗତେ । ୧୪୧୧ ।
କୋଇନ୍ତୀକୁ କରତାର ଧଇଲେକ କୋଳେ
ମୁଖେ ଚୁମ୍ବନ ଦେଲେ ମଦନ ରସ ଖେଳେ । ୧୪୧୨ ।
କରପତ୍ର ଯୋଡ଼ି ବୋଲଇ ଭୋଜର କୁମାରୀ
କେ ତୁମ୍ଭେ ମାହାତ୍ମା ମୋତେ ବଳତ୍କାର କରି । ୧୪୧୩ ।

ବଦନ୍ତ କରତାର ଅଙ୍ଗେ ବଟଣ୍ଡି ନାରାୟଣ
ଋଷିଙ୍କର ମାହାମନ୍ତେ ମୋତେ କଲୁ ସୁମରଣ । ୧୪୧୪ ।
ଏବେ ମୋତେ ଶୃଙ୍ଗାର ଉପରିରେ ତାକ
ଅନେକ ନାରେଣ କଟାଳିଲେ ଅଂଶୁମାଳି । ୧୪୧୫ ।
କୋଇଲ୍ୟାଙ୍କେ ବୋଇଲେ ମୁଂ ଅଭୟଙ୍କ ଅରଜଚଗା
ରୂ ଉଗପାଳ ହୋଇ ମୋତେ କରୁ ଅଗାଧ । ୧୪୧୬ ।
ଉନକର ନାଥ ବୋଇଲେ ରୂ ମନ୍ଦକୃତ୍ୟ କଲୁ
ଅମାଙ୍କର କନ୍ୟା ହୋଇ ମୋତେ କେସନେକେ ସୁମରିଲୁ । ୧୪୧୭ ।
ସେ ବଟଣ୍ଡି ନାରାୟଣ ସମ ଲ ପଶ୍ଚାତ୍ ଅମନେ
ରୂ ଗ୍ୟାନବନ୍ତ ହୋଇ ମୋତେ ହୃଣବୁ କେମନ୍ତେ । ୧୪୧୮ ।
ବଟଣ୍ଡି ବୋଇଲେ ଦୃଷ୍ଟାସ୍ୟାଙ୍କର ମାହାମନ୍ତ କହୁ ମେଣ୍ଟି
ଅତଣ୍ୟ ପ୍ରାଣ ଯିବ ମୂର୍ଦ୍ଧନା ଯାଇ ଫାଟି । ୧୪୧୯ ।
ରୂ ମୋତେ ସୁମରଣା କଲୁ ନ ବାୟୁତ
ରମଣ ନ ଦେଲେ ମୁଂ ନ ଯାଇ ବାହୁଡି । ୧୪୨୦ ।
ଯମୁନା ନଦୀ ତୀରେ ନନ୍ଦନ ଅଟବୀ
କୋଇଲ୍ୟାକୁ ଶୃଙ୍ଗାର ଇଚ୍ଛିଲେ କରତାର ଦେବ । ୧୪୨୧
ଶ୍ୟାମନ୍ତ ରୂପ ହୋଇଲେ ସେ କମଳ ଲୋଚନ
ଇନ୍ଦ୍ରେ ବନ୍ଧ ଇଲେ ଯୋଗମାର୍ଗ ଥାନ । ୧୪୨୨ ।
ଅଖଳିତ କନ୍ୟା ସେ ଅଟଇ ଅଭେଦ
ସୁତ୍ର ପ୍ରମାଣେ ଇନ୍ଦ୍ରେ କଲେ ବଟଣ୍ଡିଦେବ । ୧୪୨୩ ।
ବିବସନରାହୁ ହୋଇଲେ ଦେବାଦେବୀ
ଅଗ୍ୟାନ ବାଳସ୍ୱବ ଦେବୀ କାମେଣ ଅକ୍ଷ୍ମୀ । ୧୪୨୪ ।
ବଞ୍ଚିତ ଶୃଙ୍ଗାର କରନ୍ତ କରତାରେ
ବାହୁଡ଼ି ନ ଗଲେ ସେ ଦୃଷ୍ଟାସ୍ୟାଙ୍କ ଡରେ । ୧୪୨୫ ।
ସ୍ପର୍ଶ ପତନ କାଳେ ସେ ସ୍ୱେଜର କୁମାରୀ
ବଇକୁଳ ହୋଇ ଦେବୀ ଅନେକ ବନନ୍ତେ କରି । ୧୪୨୬ ।
ସେ ଉନକର ନାଥ ନ ଛାଡ଼ ରୂ ସ୍ପର୍ଶ
ଅମୋଘ ରେତ ପଡ଼ନ୍ତେ ଗର୍ଭେ ବହିବ ଅଂଶଜ । ୧୪୨୭ ।
ଅବଶ୍ୟ ଅଟଇ ମୁଁ ନୋହଇ ରଜବତୀ
ଆବର ଗର୍ଭରେ ମୋହୋର ବହିବ ସନ୍ତତି । ୧୪୨୮ ।

ପିତାର ବଚନ ମୁଁ ଲଙ୍ଘିବି କେମନ୍ତେ
ଆବର ପ୍ରଧାନ ନୋହୁଁବେଟି କେହୁ ମୋତେ । ୧୪୨୯ ।
ଉଦ୍ଧାରିବ କୁଳକୁ ପୁଜନ ବଚନ ଲଜ
ଅନୁଗ୍ରହ କର ନାଥ ଗର୍ଭେ ନ ଛୁଉଁ ବୀର୍ଯ୍ୟ । ୧୪୩୦ ।
ଦିନକର ନାଥ ବୋଇଲେ ଗଦଗଦ କଲେ
ଲିଙ୍ଗ ଭଗ୍ନ ଦୋଷ ହୋଅଇ ବୀର୍ଯ୍ୟ ନ ଛାଡ଼ିଲେ । ୧୪୩୧ ।
ଯେବଣ ବୀର୍ଯ୍ୟ ତୁ ଗ୍ରହିବୁ ଦିନକର
ସଇନ୍ଧ ଉତପତି ହୋଇବ ଯେ କୁମର । ୧୪୩୨ ।
କୋଇନ୍ତାର ବଚନ ଶୁଣିଣ ରବିଶ୍ରୀ
ତୋଳିଲେକ ବୀର୍ଯ୍ୟ ଯେ ଗର୍ଭେ ଗଲା ପୁଷ୍ଟି । ୧୪୩୩ ।
ବୀର୍ଯ୍ୟ ପତନ କାଳେ ସ୍ୱାମୀ ଗାଢେ କୋଳ କଲା
ଅନେକ ସାନନ୍ଦେ କାମେମା ଶୃଙ୍ଗାର ସହିଲା । ୧୪୩୪ ।
ଉପୋସ୍ତ ପୋଷିଲା କୋଇନ୍ତାଙ୍କ ଗର୍ଭଗତେ
ବରଷ୍ଟି ବୋଇଲେ ଜନ୍ମ ହୋଇଅଛୁ ଏକ ସୁତେ । ୧୪୩୫ ।
ସ୍ୱେ ଦେବ ଭବମୁଖେ ଜନ୍ମ ନୋହୁ ସନ୍ତତ
ଲଭ ଏକାଳେ ମୁଁ ହୋଇବି ଅପସ୍ତ । ୧୪୩୬ ।
କୁଳକୁ ଦୂଷିତ କଲି ଦୋହ୍ୱତାପଣେ
ବିକଳ ଦେଖି ଧ୍ୟାୟାକଲେ ବରଷ୍ଟି ନାରାୟଣେ । ୧୪୩୭ ।
କର୍ଣ୍ଣବାଟେ ବୀର୍ଯ୍ୟ ଯେ ଟେକିଲେ ଉଜାଣି
ଯେସନେକ ଅଛଇ ପୂର୍ବରୁ କର୍ମଣି । ୧୪୩୮ ।
ମାହା ଅମୋଘ ରେତ ଅଷଷ୍ଟ ବୀର୍ଯ୍ୟ
କର୍ଣ୍ଣବାଟେ ସଇନ୍ଧ ଉପୁଜିଲା ତନୁଜ । ୧୪୩୯ ।
ଦେଖିଣ ପରମ ସାନନ୍ଦ ହୋଇଲେ ବରଷ୍ଟି ନାରାୟଣେ
କୋଳେ ଧରି ତାହାର ନାମ ଦେଲେ ବୀର କର୍ଣ୍ଣ । ୧୪୪୦ ।
କର୍ଣ୍ଣେଣ ସ୍ଥାପିଲେ ଦେବ ଅମୃତ କୁଣ୍ଡଳ ବେନି
ତାହୁରେ ଗୋପ୍ୟ କଲେ ଅଭେଦ କପଟ ମଣି । ୧୪୪୧ ।
ସୁଷରେ ଲେପନ କଲେ ବଜ୍ର ଛଉଡ଼ି
କୁମର କର୍ଣ୍ଣେଣ ମହାମନ୍ତ୍ର ପଢ଼ି । ୧୪୪୨ ।
ଅକୋଷ୍ଣିତ କେଶ ରସାଣ ପାନ୍ତି କପୋଳ
ଖରେଶ୍ୱର ନାସା ଚକ୍ଷୁ ସୁନ୍ଦର ଗଣ୍ଡସ୍ଥଳ । ୧୪୪୩ ।

ଶାର୍ଦ୍ଦୋଳ ଆକର୍ଷଣ ହଣଇ ଶ୍ୱଶୁର
ହସ୍ତିର ଠାର ପ୍ରାୟେ ହଣଇ ବେନକର । ୧୪୪୪ ।
ଆରକ୍ତ ଲୋଚନ ଅବ୍ଜଜାତ ବେନ ନେତ୍ର
କର୍ଣ୍ଣେଣ କୁଣ୍ଡଳ ଅଧର ସୁଶୋଭିତ । ୧୪୪୫ ।
ଅଙ୍ଗୁଷ୍ଠ ଚମ୍ପକ କଡ଼ି ଜାଣି ଅଙ୍ଗୁଷ୍ଠି
ଉଲଟ ରମ୍ଭା ପ୍ରାଏ ବେନ ଜାନୁ ଗୋଟି । ୧୪୪୬ ।
ସୁଦର୍ଶ ସୁନ୍ଦର ଅରୁଣାର୍ପିତ ବଳା
ଅନଙ୍ଗ ସୁନ୍ଦର ଜାଣି ତେଜ ଅନର୍ଗଳା । ୧୪୪୭ ।
ନାନା ଶସ୍ତ୍ରାସ୍ତ୍ର ତୋହର ଶରୀରେ ନ ଫୁଟୁ
କୋଟି ପ୍ରଭୁ କୃପାଣ ଶରୀରେ ନ କାଟୁ । ୧୪୪୮ ।
ରଣେ ଅଭଯ୍ୟ ତୁ ହୋଅସି କୁମର
ଦାନେଣ ହାସ୍ତ ବୃଦ୍ଧ ହୋଅସି ମାହାଶୂର । ୧୪୪୯ ।
ଯେତେବେଳେ ପଶରଥେ ତୁ ରଥେ ବସିଥିବୁ
ତୈଲୋକ୍ୟେ ତୋତେ କେହି ଜଣନ୍ତା ନୋହୁ ବାବୁ । ୧୪୫୦ ।
ଅନେକ ଶସ୍ତ୍ରାସ୍ତ୍ର ବିଦ୍ୟା ଦେଇଣ ମାରକଣ୍ଡ
ଉଦୟେ ଗିଶ ଦେଉ ବକାଣିଲେ ପରଚଣ୍ଡ । ୧୪୫୧ ।
କୁମର ବୋଲେ ଧର୍ମ କୋନ୍ତ୍ରଶ୍ୱେଳର କୁମାଶ୍ମ
କସ ବୁଧ କରବ ବୋଲି ମନେଣ ବିସ୍ମର । ୧୪୫୨ ।
ସ୍ୱେ ସୁଦର୍ଶ ପୁତ୍ର ଗୋଟିକ କେମନ୍ତ କରବ
ପିତା ମାତାଙ୍କୁ କସ ବୋଲଣ କହିବ । ୧୪୫୩ ।
ଅବଶ୍ୟ ପସ୍ତ୍ରରବେ ମୋତେ ସ୍ୱେ ପୁତ୍ରକଇ ଦେଖି
ବୋଲିବେ ଜାତୁଂ ପାଇଲୁ ସ୍ୱେ ପୁତ୍ର ଗୋଟିକ । ୧୪୫୪ ।
ମାହାଗୁରୁ ଛାମୁରେ ତ ନ କହିବ ମିଥ୍ୟା
ସତ କହିଲେ ତ ହୋଇବ ଲଜ୍ୟା ଅପ୍ରମିତା । ୧୪୫୫ ।
ପର ଦାରେଣି ବୋଲି କେହି ମୋତେ ପ୍ରଦାନ ନୋହିବେ
ସମସ୍ତେ ଦୁର୍ବାସ୍ୟା ଋଷିଙ୍କି ଦୋଷ ଦେବେ । ୧୪୫୬ ।
ବୋଲିବେ ଋଷିଙ୍କ ସଙ୍ଗତେ ଥିଲେ ସମସ୍ତେ
ଦୁର୍ବାସ୍ୟାଙ୍କ ରମଣେ ଉପୁଜିଲା ତନୟେ । ୧୪୫୭ ।
ଏ ଜପାମାଳ ଥିଲେ କସ ମୋର ସୀତ
ଅନେକ ବାରେ ମୁଂ ଯେ ହୋଇବ ପୁତ୍ରବନ୍ତୀ । ୧୪୫୮ ।

ଜରେ ଯେଜନଲେ ଦେଖୀ କର୍ଦ୍ଦମ ଲେଟସ୍ତେ
ଆପଣେ ଗଢ଼ିଲେ ଦେଖୀ ମଂନୁଷ ଗୋଷ୍ଟିସ୍ତେ । ୧୪୫୯ ।
ଚନ୍ଦ୍ରଂର ଭିତରେ ସେ ପୁଟକଇ ଭଣ
ଯମୁନା ନଦୀଜଳେ ଦେଲେ ଫିଙ୍ଗି କଣ । ୧୪୬୦ ।
ପ୍ରତକ୍ଷେ ବାଳ ଆଦତ୍ୟ ତେଜ ତନସ୍ତେ
ତେଜଲଗି ମଂଜୁଷ ହୋଇଲା ସୁବର୍ଣ୍ଣମସ୍ତେ । ୧୪୬୧ ।
ଯମୁନା ନଦୀରେ ସେ ଗଲାକ ଭସୁଚଆଇ
ଈଶାନ୍ୟ ମୁଖରେ ଚଳଇ ହେଠ ବୁଡ଼ି ହୋଇ । ୧୪୬୨ ।
ବାରୁଣାବନ୍ତ ଚନ୍ଦ୍ରଂଙ୍କ ପଞ୍ଚଦଶଣ ଯୁଣ
ସେ ମଂଜୁଷ ଲାଗିଲା ଯାଇ ଉଦାକ୍ତ୍ରର ଗାର୍ଥେଣ । ୧୪୬୩ ।
ଗାଲବ୍ୟର ନନ୍ଦନ ଯେ ଅଟଇ ସଂଜସ୍ତେ
ସ୍ୱଧେଶ୍ୱୀ ନାମେଣ ତାହାର ଦୋହିତା ଗୋଷ୍ଟିସ୍ତେ । ୧୪୬୪ ।
ପୁର୍ବ ଜନ୍ମେଣ ସେ ଅନୁଗ୍ରହ୍ୟା ଅପଛରା
ବାସବଙ୍କ୍ର ସେନେହ ନ ବହିଲା ଗର୍ବ କରି । ୧୪୬୫ ।
ସ୍ୱଗେଣ ସୁନାସିର ତାଙ୍କ ଶାପ୍ୟ ଲକ୍ଷି
ଯାଅ ଲୋ ପାମର ରୁ ହୋଅସି ମାନୁଷୀ । ୧୪୬୬ ।
ସଂଜସ୍ତେର ଭାରଯା ନାମ ଶରଧା
ସେ ତୋତେ ପାଳ୍ପ ଲୋ ତୋହୋର ନାମ ହୋଉ ସ୍ୱଧା । ୧୪୬୭ ।
ବାସବର ଶାପ୍ୟେ ସେ ଗଗନୁ ପତିତ
ସେହି ରୂପ ଦେହେ ହୋଇଲା ବାଳୁତ । ୧୪୬୮ ।
ସିଂହ ବୃହସ୍ପତି ପଡିଲା ଗନ୍ଧକମୀ
ଅନେକ ଜନେ ଚନ୍ଦ୍ରଂ ଗଲେ ତୀର୍ଥ ଭୁମି । ୧୪୬୯ ।
ଜନ ଗହଳ ମେଳେ ସେ ବାଳୁତ ହୋଇଥିଲା
ସଂଜସ୍ତେ ଭାରଯା ତାହାକୁ ତୀର୍ଥରେ ଦେଖିଲା । ୧୪୭୦ ।
ଅନୁରାଗ ହୋଇ ସେ ଭାବଇ କୁମାରୀ
ଶରଧାବତୀ ତାହାକୁ କୋଳ କରି ଧରି । ୧୪୭୧ ।
କେହି ତାଙ୍କୁ ମୋହୋର ବୋଲନ୍ତା ନୋହିଲା
ସଂଜସ୍ତେର ଭାରଯା ତାଙ୍କୁ ହସ୍ତିନା ଘେନ ଅଇଲା । ୧୪୭୨ ।
ସ୍ୱଧେଶ୍ୱୀ ନାମ ଦେଲା ତାହାକଇ ଭାଳି
ସୁନ୍ଦର ଦେଖିଣ ତାହାକୁ ଯତନେ ପ୍ରତିପାଳି । ୧୪୭୩ ।

ସେ ସଂଜୟେ ଦୋହିତା ଗଲେ ଯମୁନା ସ୍ନାହାନେ
ମଂଜୁଷ ହେଠ ବୁଡ଼ିଦେଖିଲେ ଜଳର ଉଦ୍ୟାନେ । ୧୪୭୪ ।
କରେଣ ଧଇଲେ ଦେହୀ ଚନ୍ଦ୍ର ଶୋଭା
ମଂଜୁଷ ଘେନ ବଜୟେ କଲେ ଗୃଧା । ୧୪୭୫ ।
କୂଳେଣ ଆଣି ତାହାକୁ କଲକ ବେଦନଫାଳ
ଦେଖିଲେ ଆଦିତ୍ୟର ଜ୍ୟୋତି ଦଶଗ ବାଳ । ୧୪୭୬ ।
ପୁତ କୋଳେ ଧଣ ଗଲେକ ନଜ ପୁରେ
ସଂଜୟେ ବୋଇଲେ ଆଉ ତୁ ସମ୍ଭାଳ କୁମରେ । ୧୪୭୭ ।
ସେ ପୁତ ଗୋଟିକ ରୂ ଗୋ ଆଣିଲୁ ଶରଧାୟେ
ସେହ୍ନାଳ ନାମ ବୋଟି ହୋଇବ ରାଧେୟେ । ୧୪୭୮ ।
କର୍ଣ୍ଣକଇ ପାଳିଲେ ସେ ସଂଜୟେ କୁମାଶ
ଅନୁଭବ ନୃପତିକ ରାଧେୟ କନ୍ୟାକୁ ପ୍ରଦାନ କରି । ୧୪୭୯ ।
ଶରୀର ସମ୍ଭାଳି ଚଳଲେ ତହୁଂ କୋନ୍ତେ
ଅନ୍ତେଶ୍ୱର ପୁରେ ପ୍ରବେଶ ହୋଇଲେ ଦୋହିତେ । ୧୪୮୦ ।
ଦୁଷ୍ଟସ୍ୟାଙ୍କର କଲ୍ୟାଣ ପ୍ରତକ୍ଷେ ଫଳିଲେ
କୋନ୍ତ ଦେବ ନନ୍ଦାର ଧନପ୍ରାନ ସମ୍ଭଳିଲେ । ୧୪୮୧ ।

କର୍ଣ୍ଣସେନ ବୀରସେନ ସୁନ୍ଦରସେନ
ଏମନ୍ତ ଉପୁଜିଲେ ରାଜାର ଧନ ଆତ୍ମଜ । ୧୪୮୨ ।

ବଳବନ୍ତ ଭାଗ୍ୟବନ୍ତ ସେ ଅନନ୍ତ ଜଗଜଣା
ବିଦ୍ୟାୟେ କୁଶଳ ହୋଇଲେ କୋନ୍ତ ସେନର ଦୁଲଣା । ୧୪୮୩ ।
କାର୍ତ୍ତିକ ମାସ ଶୁକ୍ଳ ପକ୍ଷ ପୌର୍ଣ୍ଣମୀ
ଆ କା ମା ବଇ ସ୍ନାହାନକୁ ଗଲେ କୋନ୍ତସେନ ସ୍ୱାମୀ । ୧୪୮୪ ।
ସେହୁ ଗଙ୍ଗାକଇ ଖ୍ୟେତ୍ରେ ଯାଇଥିଲେ
କୋନ୍ତସେନର କୂଳେ ସେ ମଇତ୍ର ହୋଇଲେ । ୧୪୮୫ ।
ବେଦନନ୍ଦନଙ୍କର ହୋଇଲା ସେହେଣି ବୃଷ ରାଶି
ମଇତ୍ରଯୋଗ ହୋଇଲେ ସେ ଗଙ୍ଗାକୂଳେ ବସି । ୧୪୮୬ ।
ପଣ୍ଡୁ କୁମର ଯାଇଥିଲେ ଖ୍ରୀଷ୍ଣଙ୍କର ତୂଳେ
ହୋଇଲ୍ୟା କୁମାଶମାନଙ୍କ ସଙ୍ଗତେ ଯାଇଥିଲେ । ୧୪୮୭ ।
ପଣ୍ଡୁ ବସିଲେ ଯାଇ ଖ୍ରୀଷ୍ଣଙ୍କର କୋଳେ
ହୋଇଲ୍ୟାୟେ ବସିଛନ୍ତି କୋନ୍ତସେନ ଜାନୁରେ । ୧୪୮୮ ।

ସ୍ୱେଦ୍ୱେଷ୍ଟେକ ସ୍ୱରୂପ ଦେଖିଲେ ସତ୍ୟବତୀ
କୋଳ୍ପଧ୍ୱଜକୁ ପଶ୍ୱରଲେ ସ୍ୱେକ ତୋହୋର ଦୋହିତୀ । ୧୪୮୯ ।
ଦୋହିତା ପୁତ୍ର ସେନ କୋଳ୍ପ ଧ୍ୱଜ ରସ୍ତେ
ପ୍ରଣପତ୍ୟ ହୋଇଲେ ସେ ସତ୍ୟବତୀଙ୍କର ପାସ୍ତେ । ୧୪୯୦ ।
ପାରେଶ୍ୱର ବୋଇଲେ ହୋ ଶୁଣ ନରନାଥ
ଆମ୍ଭ ପଣ୍ଡୁକୁ ପ୍ରଦାନ କର ତୋର ଦୋହିତ । ୧୪୯୧ ।
ଶୁଣି କୋଳ୍ପଧ୍ୱଜ ସାନନ୍ଦ ହେ ଇଲ
ଦେବ ଦୋହିତା ବୋଲି ସତ୍ୟ ମନାଇଲ । ୧୪୯୨ ।
ସେହୁ ତୀର୍ଥଆନେ ଉଛବ ଉଆଇଲେ
ବସ୍ତ୍ରଯୋଗେ ଶୁଭ ଅନକୁଳ କଲେ । ୧୦୯୩ ।
କାଶ୍ୟପ ଗୋତ୍ର କୋଳ୍ପଧ୍ୱଜ ନୃପତି
ସୋମବଂଶ ଗୋତ୍ର ସାସ୍ତେଂତନୁର ଜାତି । ୧୪୯୪ ।
ଓହୋ କୁଳ ଗୋତ୍ର ଉଚ୍ଚର ବେଦବାକ୍ୟ
ବସ୍ତ୍ରଯୋଗ କରାଇଲେ ପ୍ରୋହିତ ଉଦାଳକ । ୧୪୯୫ ।
ଶୁଭ ଯୋଗେ ପ୍ରଦାନ ହୋଇଲେ କୁମାରୀ
ଅନେକ ରଥ ଗଜ ଯଉତୁକ ଦେଲ ଦଣ୍ଡଧାରୀ । ୧୪୯୬ ।
ବେଜ ପଦ୍ମ ଗଜ ସୁବ ପଦ୍ମ ହୟେ
ଦ୍ୱାଦଶ ଯୋଜନ ରାଜ୍ୟ ଯଉତୁକ ଦୟେ । ୧୪୯୭ ।
ପାଟଛତ୍ର ଆଲମ୍ବ ସ୍ୱେକଲକ୍ଷ ଅନେକ ବାଦ୍ୟ
ଯଉତୁକ ଦେଲ ରାଜା ପରମ ସାନନ୍ଦ । ୧୪୯୮ ।
ସାତ ପଦ୍ମ ଗୋଧନ ଦେଲ୍ଲକ ନୃପମଣି
ଚଉବଂଶ ଭଣ୍ଡାର ଧନ ଯଉତୁକ ଦେଲ ଆଣି । ୧୪୯୯ ।
ଖିଷ୍ଟେଂ ବୋଇଲେ ସାସ୍ତେଂତନୁକ୍କୁ ବନସ୍ତେ କର
ଅପୁତ୍ରିକ ଦୋଷ ମୁଁ ନୋହିବ ଦଣ୍ଡଧାର । ୧୫୦୦ ।
ଭୂଣ ସର୍ବାସ୍ତେ ତ ନ ପଶିବେ ରାଜ୍ୟଯୋଗେ
ଧୃତରାଷ୍ଟ୍ର ନ ଯୋଗାଇ ଅନ୍ଧ ମନ୍ଦସ୍ତଗ୍ୟ । ୧୫୦୧ ।
ବିଦୁର ବିଚକ୍ଷଣ ସେ ଅଟଇ ଅନ୍ୟ ଜାତି
ପଣ୍ଡୁକୁ କରାଇବା ପଞ୍ଚଭୂତକେ ଆଧିପତି । ୧୫୦୨ ।
ପାରେଶ୍ୱର ବୋଇଲେ ରୂ ସତ କ ମିଛ କହୁ
ପଣ୍ଡୁକୁ ରାଜ୍ୟ ଦେଲେ ନ ପୁଣ ଅମରଷ ବହୁ । ୧୫୦୩ ।

ଯାଜ୍ଞେ ବୋଇଲେ ମୋହର ଚତ୍ତେ ଆନ ନାହିଂ
ସତ୍ୟ ସତ୍ୟ ବାକ୍ୟ ତ୍ରିବାର ସତ୍ୟ କଲି ମୁହିଂ । ୧୫୦୪ ।
ପାରେଶ୍ବର ଯାଜ୍ଞେଂଙ୍କୁ ପରମ ସନ୍ତୋଷ ହୋଇଲେ
ରାଜ୍ୟେ ଅଭିଷେକ ପଣ୍ଡୁଙ୍କୁ କରାଇଲେ । ୧୫୦୫ ।
ବ୍ୟାସ ବଶିଷ୍ଠ ମାରକଣ୍ଡ ଆଦି କରି
ପୁଷ୍ପି ଅର୍ଘ୍ୟ ଦେଲେ ସକଳ ତପସ୍ବିରି । ୧୫୦୬ ।
ଅନେକ ଯାଗ ଯାଗ୍ୟଂ ପୁଣ୍ଡି ଯେ ଆହୁତି
କୋଟିସ୍ନେକ ତୀର୍ଥ ଯେନ ପୁଷ୍କର କ୍ଷେତ୍ର ଆଧିପତି । ୧୫୦୭ ।
ଅଭିଷେକ କଲେ ନେଇ ପଣ୍ଡୁ କୁମର ଶିରେ
ଜୟେ ଜୟେ ବାଣୀ ଶୁଭିଲା ତିନପୁରେ । ୧୫୦୮ ।
ଖୀର ଅଭିଷେକ କଲେ କଳପବଟ ତଳେ
ନରେନ୍ଦ୍ର ପଦ ପଣ୍ଡୁଙ୍କୁ ଦେଲେ ଶୁଭ ବେଳେ । ୧୫୦୯ ।
ଯମଦଣ୍ଡ ଯେନ ଚଳିଲେ ନିଜ ଦେଶେ
ପୁର ଜନମାନେ ଅନେକ ହରଷେ । ୧୫୧୦ ।
ଆହୋ କାଶିଦେଶର କାଶୀଶ୍ବର ନୃପତି
ଭଦ୍ରବତୀ ନାମେଣ ତାହାର ଦୋହିତୀ । ୧୫୧୧ ।
ବିଦୁରକଇ ପ୍ରଦାନ କଲେ ଭଦ୍ରବତୀ
ସେ କାଶୀଶ୍ବର ରାଜା ଅଟଇ ବଣ୍ୟ ଜାତି । ୧୫୧୨ ।
ଅନ୍ଧ ପଣ୍ଡୁ ବିଦୁର ତିନି ହୋଇଲେ ତିନଭ୍ରାଏ
ପଣ୍ଡୁ ରାଜା ପଦେ ବସିଲେ ଧର୍ମ ଅର୍ଥେ । ୧୫୧୩ ।
ଶୁଣ ବଇବସୁତ ମନୁ ବଧନ୍ତ୍ୟ ଅଖଣ୍ଡି
ତଇଲୋକ୍ୟେ ବିଦିତ ହୋଇଲେ ପଣ୍ଡୁ ନୃପତି । ୧୫୧୪ ।
ଧାର୍ମିକ ବିବେକ ସେ ପଣ୍ଡୁ ମାହାରାଜା
ବାନେ ଶୂରବନ୍ତୀ ସେ ଦେବ ବିପ୍ରେ ପୂଜା । ୧୫୧୫ ।
ହସ୍ତିନାର ଅନୁକ୍ରମେଣ ଆହୁତି
ନଯୋଗ ଭିଆଣ ସେ କଲେ ରାଜ୍ୟ ନୀତି । ୧୫୧୬ ।
ଯାଜ୍ଞେ ବିଦ୍ୟାଗୁରୁ ହୋଇଲେ ପଣ୍ଡୁଙ୍କୁ
ଅନେକ ବିଦ୍ୟା ଶିଖାଇଲେ ତାହାଙ୍କୁ । ୧୫୧୭ ।
ଶସ୍ତ୍ର ବିଦ୍ୟା ଶାସ୍ତ୍ର ବିଦ୍ୟା ଉତ୍ତମ ଧନୁଶର ବିଦ୍ୟା
ମାଲବନ୍ଧ ବିଡ଼ମ୍ବଣ ପଦମବ୍ରମାନ ଶିକ୍ଷା । ୧୫୧୮ ।

ଯେମନ୍ତେ ମାହାଛତ୍ରି ମାହାପଣ୍ଡିତ ଅଟଇ
ବଳବନ୍ତ ବୁଦ୍ଧିବନ୍ତ ପଣେ ଅଷ୍ଟାଦଶ ବଂଶ ଖଟଇ । ୧୬୧୯ ।
ଶୁଦ୍ଧିବନ୍ତ ଷୈଣ୍ୟବନ୍ତ ଭଲାବର ସିଂହରଥ
ହତ୍ୟା ଉବାଦ କରଣ ସମସ୍ତ କଳ ସାଧି । ୧୬୨୦ ।
ସୂର୍ଯ୍ୟ ବଂଶ ରାଜା ଖରୂପକ ନୃପତି
ପଣ୍ଡୁ ରାଜାଙ୍କୁ ସେ ଖଟଇ ଅନୁବ୍ରତ । ୧୬୨୧ ।
ଗଙ୍ଗା ବଂଶେଣ କ୍ଷେତ୍ର ମାହାରଥୀ
ଆଶିଅଣି ଆଠେ ଚଳଇ ସେ ପ୍ରତଗାଂ ସକଳା । ୧୬୨୨ ।
ହରିହର ବଂଶର ରାଜା ରୁଦ୍ର ମାହାମନ୍ତ୍ରେ
ଦଶଲକ୍ଷ ଯୋଧା ଘେନି ଖଟଇ ପଣ୍ଡୁ ନୃପତିଏ ତୁଲେ । ୧୬୨୩ ।
ଅନ୍ଧ୍ରେକ ବଂଶେଣ ରାଜା ବିରୂପାକ୍ଷ
ତାହାଣ ପଶ୍ଚାତ୍ୟେ ଖଟଇ ତୁଲେ ନବଲକ୍ଷ । ୧୬୨୪ ।
ଭୋଜ ବଂଶ ନୃପତି ଅଟଇ ଭୋଜ ସେନ ·
ପାଞ୍ଚଲକ୍ଷ ରଥ ଘେନି ଖଟଇ ପଣ୍ଡୁର ସନିଧ୍ୟାନ । ୧୬୨୫ ।
ବ୍ରହ୍ମ ବଂଶେଣ ରାଜା ମଦନ ମାହାବ୍ରହ୍ମ
ସମଦଣ୍ଡ ଘେନି ଖଟଇ ପଣ୍ଡୁ ରାଜା ସନିଧେଣ । ୧୬୨୬ ।
ରୁଦ୍ର ବଂଶେଣ ରାଜା ଭଉବେବ ନୃପତି
ଦଶ ଲକ୍ଷ ପାଦଦଣ୍ଡ ଘେନି ଖଟଇ ନିତିପ୍ରତି । ୧୬୨୭ ।
କାକୁସ୍ଥ ବଂଶର ନୃପତି ଇନ୍ଦ୍ରପାଦ
ସେହି ଖଟଇ ହାଦେ ସୋମବଂଶ ନରେନ୍ଦ୍ର । ୧୬୨୮ ।
ନବଦ୍ୱୀପ ସପତ ସାଗରେ ଯେତେ ରାଜା
ସୋମବଂଶ ନୃପତିଙ୍କ ସମସ୍ତେ କରନ୍ତି ପୂଜା । ୧୬୨୯ ।
ଏମନ୍ତେ ପଣ୍ଡୁଙ୍କୁ ଖଟନ୍ତି ଅଷ୍ଟାଦଶ ବର୍ଣ୍ଣ
ବାରୁଣାବନ୍ତ ରାଜ୍ୟ ଜାଣି ଦୃଢ ସ୍ୱର୍ଗ । ୧୬୩୦ ।
ଅନେକ ସମ୍ପୁରେ ଖଟନ୍ତି ମାହାରାଜେ
ସମ୍ପୁରେ ସନ୍ୟ ଘେନି ପଣ୍ଡୁ ହିଗ ଭଜେ । ୧୬୩୧ ।
ପାରେଶ୍ୱର ସାସ୍ୱେଂତନୁ ଗାଧି ସମଦ ଅଗ୍ନି
ଏହାନ୍ତ ସେବା କରଇ ଶୁଭ ଅନକୂଳ ଘେନି । ୧୬୩୨ ।
ଏହାଙ୍କର ପୁତ୍ରେ ଯେ ବ୍ୟାସ ବଶିଷ୍ଠାମିତ୍ରେ
ପ୍ରଶୁରାମ ଷ୍ଟେପ୍ଷ୍ଟ ଅଟନ୍ତି ସ୍ତବ ଭ୍ରାଏ । ୧୬୩୩ ।

ଏହାନ୍ତ ଆରାଧନା କରନ୍ତି ରାଜ୍ୟେ ପଣ୍ଡୁ
ଏହାଙ୍କର ମହାମନ୍ତ୍ରେ ସମସ୍ତ ବିଘ୍ନ ଖଣ୍ଡୁ । ୧୫୩୪ ।
ଶବଦଭେଦ ଶସ୍ତ୍ର ପେଷିଲେ ପୃଥ୍ୱୀ ନବଖଣ୍ଡେ
ସପତଦ୍ୱୀପା ପୃଥ୍ୱୀରେ ଥାପିଲେ ପାଣଦଣ୍ଡ । ୧୫୩୫ ।
ଜମ୍ବୋଦ୍ୱୀପ ବାରବର୍ଷ ଛତ୍ରଣ ମଣ୍ଡଳେ
ସୋମ ବଂଶକୁ ପାଣଦଣ୍ଡ ଖଟନ୍ତି ଦକ୍ଷକାଳେ । ୧୫୩୬ ।
ଧୃତରାଷ୍ଟ୍ର ରହିଲେ ହସ୍ତିନା ଭୁବନେ
ଭୁଶଦହାକୁ ବସାଇଲେ ଇନ୍ଦ୍ର ପ୍ରଶସ୍ତ ସ୍ଥାନେ । ୧୫୩୭ ।
ସ୍ୱପେ ରହିଲେ ଯମ ପ୍ରଶସ୍ତ ମାଢ଼ି
ଜଇନ୍ତ୍ରା ରାଇକେ ପଣ୍ଡୁ ବସିଲେ ବାରୁଣୀବନ୍ତେ ବହୁରକୁ ଗୁଢ଼ି । ୧୫୩୮ ।
ଦେଖ ହୋ ପଣ୍ଡୁ ରାଜାର ଭାଗ୍ୟବନ୍ତ ପଣ
ସହୋଦ୍ର ସମ୍ଭାଳି ଦ୍ୱିଗ ବଜେଷ୍ଟେ କରଇ ଆପଣ । ୧୫୩୯ ।
ଧ୍ୱଂସଇ ଶତ୍ରୁଦର୍ପ ରଖଇ ତପିଜନେ
ଦଇତ୍ୟ ଦାନବର ଉପଦର୍ପ ନାହିଁ ପୃଷ୍ଠଆନେ । ୧୫୪୦ ।
ଆହେ ମାଦ୍ରମୂଳ କଣ ପଯାଣ ଭଆଇଲେ
ମାଦ୍ରକେ ବାଟିଷ୍ଟେ କର ପଣ୍ଡୁ ରାଜା ସରଞ୍ଜଲେ । ୧୫୪୧ ।
ବାଟିଷ୍ଟେ ଚଷିଣ ପଢ଼ଟିଷ୍ଟେ ବଅନ୍ତ ସଞ୍ଜା
ଦ୍ୱାଦଶ ଫଳ ଅରଜ ସୁଖେ ଭୋଗ୍ୟ କର ପ୍ରଜା । ୧୫୪୨ ।
ଅନେକ ଧନ ଧାନ୍ୟ ସମ୍ପଦ ଅଚଳ
ସାଧୁ ସାଧୁ ବୋଲି ପଣ୍ଡୁଙ୍କୁ ସମସ୍ତେ ହେଂ ବୋଲି । ୧୫୪୩ ।



# ପ୍ରଥମ ଅଧ୍ୟାୟ

# କାରକ-ବିଭକ୍ତି

ସାରଳା ମହାଭାରତରେ ନିମ୍ନଲିଖିତ ବିଭକ୍ତିଚିହ୍ନ ମାନ ବ୍ୟବହୃତ ହୋଇଅଛି ।

ପ୍ରଥମା—ଏ
ଦ୍ୱିତୀୟା—କଇ, କଇଂ, କୁଇ, କୁଇଂ, କୁ, କ, ଏ, ରେ, ତେ, ନ୍ତ, ନ୍ତ
ତୃତୀୟା—ଏ, ଏଂ, ଏଣ, ରେ, ରେଣ
ଚତୁର୍ଥୀ—କଇ, କଇଂ, କୁଇ, କୁଇଂ, କୁ, କ, ଏ, ତେ
ପଞ୍ଚମୀ—ଉ, ଉଂ, ହୁଂ, ରୁ
ଷଷ୍ଠୀ—କର, କଣ, କ, ର, ଣ
ସପ୍ତମୀ—ଇ, ଇଂ, ଏ, ଏଣ, ରେ, ରେଣ, ନେ

## ବିଭିନ୍ନ କାରକରେ ବିଭକ୍ତି ଚିହ୍ନଗୁଡିକର ବ୍ୟବହାର

### କର୍ତ୍ତା କାରକ-ପ୍ରଥମା ବିଭକ୍ତି

### ଅବିଭକ୍ତିକ କର୍ତ୍ତା । *

ସାଧାରଣତଃ କର୍ତ୍ତା ଅବିଭକ୍ତିକ ଆକୃତିରେ ରହିଅଛି—

ବଧି ଗାଢେ ଆଗ୍ୟାଂ ତୋତେ ଦେଲେ ନଗ୍ରଳସେ ୧୦ । ୨
ଗଙ୍ଗାକୂଳେ ବସି କାନ୍ଦଇ ସୁବଳ ୭୧୭ । ୧
ପଦ୍ମନାଭ ରାଜାକୁ କହିଲେ ଯାଇଂ ଚର ୪୯୯ । ୧
ଭୀଷ୍ମଙ୍କର ତହିଂକ ଯେ ଦୂତ ଯାଇଥିଲେ ୭୧୮ । ୧

ଏପରି ସ୍ଥଳରେ କ୍ରିୟାର ଏକବଚନରୁ କର୍ତ୍ତାର ଏକବଚନ ଓ କ୍ରିୟାର ବହୁବଚନରୁ କର୍ତ୍ତାର ବହୁବଚନ ସୂଚିତ ହୁଏ । (ବଚନ ପ୍ରକରଣରେ 'କ୍ରିୟାର ବଚନ' ଦ୍ରଷ୍ଟବ୍ୟ)

### ସବିଭକ୍ତିକ କର୍ତ୍ତା

କେତେକ ସ୍ଥଳରେ କର୍ତ୍ତାରେ ପ୍ରଥମା ଚିହ୍ନ '-ଏ' (-ସ୍ଥେ) ଲାଗିଅଛି । ଏହି -'ଏ' ମୂଳତଃ ବହୁବଚନ-ପ୍ରଥମା ଚିହ୍ନ । ଓଡ଼ିଆରେ ବହୁବଚନ ଓ ସମ୍ମାନସୂଚକ ଏକବଚନ ମଧ୍ୟରେ ଆକୃତିଗତ ପାର୍ଥକ୍ୟ ନ ଥାଏ । ତେଣୁ '-ଏ' (-ସ୍ଥେ) ସମ୍ମାନସୂଚକ ଏକବଚନରେ ମଧ୍ୟ ବ୍ୟବହୃତ ହୋଇଅଛି ।

---

* ବିଭକ୍ତି ଚିହ୍ନ ଅର୍ଥରେ 'ବିଭକ୍ତି' ବ୍ୟବହୃତ ହୁଏ । ତେଣୁ 'ଅବିଭକ୍ତିକ'ର ଅର୍ଥ ବିଭକ୍ତି ଚିହ୍ନ ରହିତ ।

-ଏ ( -ଙ୍କେ )

(କ) ବହୁବଚନରେ—

କୃଷିଭୂମିରେ ମେଘେ କରନ୍ତି ନତ୍ୟେ ବୃଷ୍ଟି ୧୭୨ । ୨

( ମେଘ-ଏ=ମେଘେ )

ବାବୁ ପଦ୍ମଲୋଚନ ପୁତ୍ରେ ଆମ୍ଭ ପୁରେ ଆସିଛନ୍ତି ୭୩୦ । ୨

( ପୁତ୍ର-ଏ=ପୁତ୍ରେ )

ନାସ୍ତି କଲେ ରାଜାଏ ନାଆଁଲବେ କି ମୋତେ ୫୦୭ । ୨

ତ୍ରିଦଶ୍ୟ ଦେବତାଙ୍କେ ବସିଲେ ଆସ୍ଥାନେ ୧୨୧ । ୧

( ଦେବତା-ଏ=ଦେବତାଏ>ଦେବତାଙ୍କେ )

( 'ବିଶେଷ୍ୟ ଓ ବିଶେଷଣ ପ୍ରାତିପଦିକ' ପ୍ରକରଣରେ ସୂତ୍ର ୩ ଦ୍ରଷ୍ଟବ୍ୟ )

(ଖ) ସମ୍ମାନସୂଚକ ଏକବଚନରେ—

ବ୍ୟାସେ କହନ୍ତି ତୁମ୍ଭେ ଲେଖନ କର ସ୍ୱାମି ୧୭ । ୧

( ବ୍ୟାସ-ଏ=ବ୍ୟାସେ )

ପୁତ୍ରକୁ କୋଳେ ଧଇଲେ ପାରେଶ୍ୱର ମହାମୁନେ୍ୟ ୬୦୩ । ୨

( ମହାମୁନି-ଏ=ମହାମୁନେ୍ୟ )

## କର୍ମକାରକ-ଦ୍ୱିତୀୟା ବିଭକ୍ତି

### ଅବିଭକ୍ତିକ କର୍ମ

ସାଧାରଣତଃ ଅପ୍ରାଣିବାଚକ କର୍ମରେ ବା ମୁଖ୍ୟ କର୍ମରେ ଦ୍ୱିତୀୟା ବିଭକ୍ତିର କୌଣସି ଚିହ୍ନ ଲଗି ନାହିଁ । —

ଲଭି ତୁ କପଳାସ ମାହାଭାରଥ ଗ୍ରନ୍ଥ କର ୪୩ । ୨

ସତ୍ୟ ନ ଲଙ୍ଘଇ ସ୍ୱେଚ୍ଛେ ସିବଇଂ କେମନ୍ତ ୩୧୮ । ୨

ତବ ପ୍ରସାଦେ ଅର୍ଜିଲି ଅନେକ ସଂପଦ ୫୮ । ୨

ସେହି ଯୋଗାଢ଼ମାନ * ଭକ୍ଷିଲେ କନ୍ୟାନାଥ ୭୨୩ । ୨

ପିଠା ଖିରଯାକ ନେଇ ପୁରେଇଲେ ସନ୍ନିଧରେ ୧୨୧୫ । ୧

### ସବିଭକ୍ତିକ କର୍ମ

ପ୍ରାଣିବାଚକ କର୍ମରେ ବା ଗୌଣ କର୍ମରେ ଏବଂ ସ୍ପଷ୍ଟ ରୂପେ ନିର୍ଦ୍ଦେଶ କରାଯାଇଥିବା ଅପ୍ରାଣିବାଚକ ବା ମୁଖ୍ୟ କର୍ମରେ ଦ୍ୱିତୀୟା ବିଭକ୍ତିର ଚିହ୍ନମାନ ଲାଗିଅଛି ।—

* -ମାନ, -ଯାକ ବିଭକ୍ତିଚିହ୍ନ ନୁହେଁ । ଏ ଦୁଇଟି ବହୁବଚନପ୍ରତ୍ୟୟ । ବଚନ ପ୍ରକରଣ ଦ୍ରଷ୍ଟବ୍ୟ ।

-କଇ

ପୁତ୍ରକଇ କୋଳେ ଧଇଲେ ପାରେଶ୍ୱର ମହର୍ଷି ୯୨୦ । ୨
ମୁହିଂ ତାହାକଇ ପୂଜା କରଇ ପ୍ରଥମେ ୨୬୮ । ୨
ପୁଣ ଗଙ୍ଗାକଇ ମାଧୁର୍ଯ୍ୟବଚନେ କହିଲେ ୩୬୮ । ୨
ସମସ୍ତେ ବୋଇଲେ ପଦ୍ମଲଭକଇ ଘଇ ୫୨୧ । ୧

-କଇଂ

ପାଣ୍ଡବେନ୍ଦ୍ରରୁ ମାହାରାଜା ରୁଦ୍ରକଇଂ ସେବା କଲ ୧୬୨ । ୧
ସମସ୍ତେକେ ବଚନ୍ଧାର୍ଥୀ ପ୍ରୟାଗକଇଂ ଗଲ ୨୨୩ । ୧ *

-କୁଇ

ପ୍ରପନେ ଅଗ୍ୟାଂ ମୂ କୁଇ ଦେଲେକ ଶାକମ୍ଭେଷ୍ଣ ୪୩ । ୧

-କୁଇଂ

ବଳୀ ବେଲ୍କଳ ଯାହାକୁଇଂ ପ୍ରହାରଇ ସ୍ମ୍ପୋଡ଼େ
( ବନପର୍ବ ୧ମ ଖଣ୍ଡ, ପୃ ୩୬୯ )

ଗ୍ରନ୍ଥର ସଂକଳିତ ଅଂଶରେ -କଇ, -କଇଂ, -କୁଇ ଓ -କୁଇଂ ବହୁବଚନ କମ୍ବା ସମ୍ମାନସୂଚକ ଏକବଚନରେ ବ୍ୟବହୃତ ହୋଇ ନାହିଁ । ଏଗୁଡ଼ିକ ଅନ୍ୟତ୍ର ବ୍ୟବହୃତ ହୋଇଛି । ଯଥା—

ଦୁର୍ଗାଂକଇଂ ଉର୍ବଶୀ ଯତ୍ନଂ ଅନେକ କଲ ସ୍ତୁତ
( ବନପର୍ବ, ୧ମ ଖଣ୍ଡ, ପୃ ୧୬୭ )
( ଦୁର୍ଗାଂକ-କଇଂ > ଦୁର୍ଗାଂକଇଂ, ଦୁର୍ଗାଙ୍କଇଂ ) †

---

* ବଳରାମ ଦାସଙ୍କ ରାମାୟଣରେ-କଇ, -କଇଂ, -କୁଇ ପ୍ରଭୃତିର ବହୁଳ ବ୍ୟବହାର ଦେଖାଯାଏ ।—
ଗୁଣ ଦେବାକଇ କରନ୍ତ ରାମ ମତ ।
ଲକ୍ଷ୍ମଣ ବୋଇଲ ଦଣ ଦଗକଇଂ ସ୍ୱୟଂ ଇତ୍ୟାଦ ।

† -କଇ, -କଇଂ,-କୁ, -ରେ,-ରୁ ପ୍ରଭୃତି ସଂଯୋଗାତ୍ମକ ବିଭକ୍ତି ଚିହ୍ନ ବହୁବଚନ ବା ସମ୍ମାନସୂଚକ ଏକବଚନରେ ଶବ୍ଦର ଷଷ୍ଠ୍ୟନ୍ତ ରୂପରୁ ଲଗେ । ଯେପରି—
ଦୁର୍ଗାଙ୍କ-କୁ = ଦୁର୍ଗାଙ୍କୁ, ମୁନଙ୍କ-କଇ = ମୁନଙ୍କଇ, ପବନଙ୍କ-ରେ = ପବନଙ୍କରେ ଇତ୍ୟାଦ । ଙ୍କ-କୁ = ଙ୍କୁ, ଙ୍କ-କଇ, = ଙ୍କଇ, ଙ୍କ-କ = ଙ୍କି, ଏପରି ସ୍ଥଳରେ ଦୁଇଟି 'କ'ରୁ ଗୋଟିକର ଲୋପ ଘଟିଛି । ଏହା ସମାକ୍ଷରଲୋପର ଅନ୍ତର୍ଗତ । (ବିଭକ୍ତି ବିଶେଷଣ ଦ୍ରଷ୍ଟବ୍ୟ ।)

ତେତେ ଲୋକଂକଇଂ ଅଛୁ ମୂକଦ୍ଧ କାରଣ ।

( ତତ୍ରୈବ, ପୃ ୬୫୮ )

( ଲୋକଂକ-କଇଂ >ଲୋକଂକଇଂ, ଲୋକଙ୍କଇଂ )

.........ବନ୍ଧୁରଙ୍କଇ ଦେଖି

( ଆଦ୍ୟପର୍ବ, ୧ମଖଣ୍ଡ, ପୃ ୫୬୫ )

( ବନ୍ଧୁରଂଙ=ବନ୍ଧୁରଙ୍କ-କଇ >ବନ୍ଧୁରଙ୍କଇ )

-କୁ

(କ) ଏକବଚନରେ—

ପଦ୍ମନାଭ ରାଜାକୁ କହିଲେ ଯାଇଂ ଶୁର ୪୧୯ । ୧

ପାପକୁ ଭ୍ରାନ୍ତ ନ କଲେ ପାରେଶ୍ୱରେ ୯୧୧ । ୨

(ଖ) ବହୁବଚନରେ—

ବସ ହେ ଋଷି ବୋଲି ଲୋକଙ୍କୁ ବାହାର କଲା ୮୭୬ । ୧

( ଲୋକଙ୍କ-କୁ=ଲୋକଙ୍କୁ )

ବଧୂଙ୍କୁ ମେଳ କରାଅ ବ୍ୟାସଙ୍କର ସହିତେ ୭୭୯ । ୨

( ବଧୂଙ୍କ-କୁ=ବଧୂଙ୍କୁ )

(ଗ) ସମ୍ମାନସୂଚକ ଏକବଚନରେ—

---

ଦୁର୍ଗାଂକ, ଦୁର୍ଗାଙ୍କ, ଲୋକଂକର, ଲୋକଙ୍କର; ଏପରି ଦୁଇପ୍ରକାର ଲେଖା ପ୍ରାଚୀନ ପୋଥିମାନଙ୍କରେ ରହିଛି ।

ଭୁବନେଶ୍ୱର ଦ୍ୱିଭାଷିକ ଶିଳାଲେଖରେ-କୈ ('-କଇ'ର ସଂକୁଚିତ ରୂପ) ବ୍ୟବହୃତ ହୋଇଛି । ଯେପରି—

ଆଗୁସାଁଏଙ୍କୈ ବନ୍ଧା କଲା

( E. O. L. S. ଶିଳାଲେଖ ୧, ଧାଡ଼ି ୧୦ )

( ଆଗୁସାଁଏଙ୍କ-କୈ=ଆଗୁସାଁଏଙ୍କୈ )

ଦ୍ୱିତୀୟା/ଚତୁର୍ଥୀ ଚିହ୍ନରୂପେ '-କେ'ର ମଧ୍ୟ ବ୍ୟବହାର ଦେଖାଯାଏ । ଯେପରି—

(କ) ଏକବଚନରେ—

ତାବନ୍ତକାଳ ଏ ପୂଜା କଲାନ୍ତରକେ.........

( E. O. L. S. ଶିଳାଲେଖ ୩, ଧାଡ଼ି ୧୦ )

(ଖ) ସମ୍ମାନସୂଚକ ଏକବଚନରେ—

ଉତ୍ତେଶ୍ୱର ନାଏକଙ୍କେ ଦେଇ.........

( ତତ୍ରୈବ, ଶିଳାଲେଖ ୧, ଧାଡ଼ି ୧୬ )

ନାଏକଙ୍କ- କେ=ନାଏକଙ୍କେ

ଗଙ୍ଗାଙ୍କୁ ଚନୋପନ୍ତ ସାଧ୍ୱେନ୍ଦ୍ରନୁ ସ୍ନାନଦେବେ ୩୧୭ । ୧

( ଗଙ୍ଗାଙ୍କ-କୁ=ଗଙ୍ଗାଙ୍କୁ )

ସାଧ୍ୱେନ୍ଦ୍ରନୁଙ୍କୁ ପ୍ରଣପତ୍ୟ ଜସ୍ୱେଳଭ ହଲ୍ଲଭ ୬୨୭ । ୧

( ସାଧ୍ୱେନ୍ଦ୍ରନୁଙ୍କ-କୁ=ସାଧ୍ୱେନ୍ଦ୍ରନୁଙ୍କୁ )

-ଙ୍କ

ଏହା କେବଳ ଇବର୍ଣ୍ଣାନ୍ତ ପ୍ରାତିପଦିକରୁ ଲାଗିଅଛି ।

(କ) ଏକବଚନରେ—

ଏକଭାଗ ପୃଥ୍ୱୀଙ୍କ ସେ ନବ ଭାଗ କଲେ ୯୧ । ୧

ଗାନ୍ଧାରୀଙ୍କ ବଚନ ସେ ମନ୍ତ୍ର ତତ୍‌କ୍ଷଣାତ୍ ୧୧୯୯ । ୨

(ଖ) ବହୁବଚନରେ—

ଚଉପିତୃଲଙ୍କ କରନ୍ତି ଗମନ ୨୧୫ । ୧

( ପିତୃଲଙ୍କ-କ=ପିତୃଲଙ୍କି )

ଅଗ୍ୟାନ ପ୍ରାଣିଙ୍କି ବହୁତ ଦୋଷ ନାହିଁ ୮୯୭ । ୧

( ପ୍ରାଣିଙ୍କ-କ=ପ୍ରାଣିଙ୍କି )

(ଗ) ସମ୍ମାନସୂଚକ ଏକବଚନରେ—

ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି ୪୭ । ୧

ଶୃଙ୍ଗାର ନ ଦେଇ ଋଷିଙ୍କି ପକାଇଲା ପେଲ ୩୫୨ । ୨

( ଋଷଙ୍କ କ=ଋଷିଙ୍କି )

-ଏ (-ଯେ)

(କ) ଏକବଚନରେ—

ସଞ୍ଜୟେ ବୋଇଲେ ଆଜ ତୁ ସମ୍ଭାଳ କ୍ଷୁମରେ ୧୦୬୭ । ୨

( କ୍ଷୁମର-ଏ=କ୍ଷୁମରେ )

କସ କସ ଖାଇଲୁ ଯେହ୍ନା ସାହାଡ଼ା ବୃକ୍ଷେ ଧାଇଁ ୧୩୧୨ । ୨

( ବୃକ୍ଷ-ଏ=ବୃକ୍ଷେ )

ଯାହା ବାଞ୍ଛା କଲୁ ପ୍ରାପତ ହୋଉ ତୋୟେ । (ଆ.ପ. ୧ମଖଣ୍ଡ ପୃ/୧୮୦)

( ତୋ-ଏ>ତୋୟେ )

(ଖ) ବହୁବଚନରେ—

ଲେଙ୍କେଶ୍ୱର ଗୁରୁ ଆଡ଼େ ଶିଖାବନ୍ତି କୁମାରେ ୧୧୩୧ । ୧

( କୁମାର-ଏ=କୁମାରେ )

ଜାତ ବ୍ରହ୍ମ ଅସୁର ସ୍ୱେମନ୍ତେ କନ୍ୟାୟେ ବିନାଶି ୧୧୫୪ । ୨

( କନ୍ୟା-ଏ=କନ୍ୟାଏ>କନ୍ୟାୟେ )

(ଗ) ସମ୍ମାନ ସୂଚକ ଏକବଚନରେ—

ଯେତେକାଳେ ଆସିବେ ବଣର ବଶ୍ୱମ୍ଭରେ ୧୮୨ । ୨

( ବିଶ୍ୱମ୍ଭର-ଏ=ବିଶ୍ୱମ୍ଭରେ )

-ରେ

ସ୍ନାହାନ ପାଣ ପାସ୍ତେନ୍ଦ୍ରନୁ ଅଇଲେ ରାଜ୍ୟରେ ୩୮୨ । ୨

-ତେ

ଏହା କେବଳ ପ୍ରଥମ ପୁରୁଷ ଓ ଦ୍ୱିତୀୟ ପୁରୁଷ ସର୍ବନାମର ଏକବଚନରେ ବ୍ୟବହୃତ । —

ପ୍ରମନେ ଆଗ୍ୟାଂ ମୋତେ ଦେଲେକ ଶାକମ୍ଭେଶ୍ୱ ୪୩ । ୧

ବୃଷ୍ଟ ଗାଢ଼େ ଆଗ୍ୟାଂ ତୋତେ ଦେଲେ ଜଗ୍ଲପେ ୧୦ । ୨

-ନ୍ତ

(କ) ବହୁବଚନରେ—

ଦୈତ୍ୟ ଦାନବନ୍ତ ଜରୁଅଛୁ ନା ସାଧି ୧୨୩ । ୨

ଦେବତାନ୍ତ ସମାର୍ଜନା କଲେ ଦେବ ଆଦ ୧୮ । ୨

ପୁତ୍ରନ୍ତ ନାଶ କମ୍ପା କରୁ ରେ ଧବଳବଦନ ୩୪ । ୨

ଏହାନ୍ତ ସେବା କରଇ ଶୁଦ୍ଧ ଅନୁକୂଳ ଯେନ ୧୫୩୨ । ୨

(ଖ) ସମ୍ମାନସୂଚକ ଏକବଚନରେ—

ବ୍ୟାସନ୍ତ ସଙ୍ଗେ ଯେନ ଅଇଲେ ନଣା ଘାଡ ୯୨ । ୨

-ନ୍ତି

ବହୁବଚନରେ—

ସପ୍ତେମ୍ଭର ଜମନ୍ତ୍ରେ ମୁଂ ବଣଲ ସନ୍ତୁନ୍ତି ୧୩୦ । ୨

ଅମ୍ବିକା ଅମ୍ବାଳିକା ଉଆର ଦୁହିନ୍ତି ୭୭୮ । ୨

ସକଳର ଅଂଶରେ -ନ୍ତି ସମ୍ମାନସୂଚକ ଏକବଚନରେ ବ୍ୟବହୃତ ହୋଇ ନାହିଁ ।

## ଅବିଭକ୍ତିକ ପ୍ରାଣିବାଚକ କର୍ମ

କେତେକ ସ୍ଥଳରେ ପ୍ରାଣିବାଚକ କର୍ମ ମଧ୍ୟ ଅବିଭକ୍ତିକ ଆକୃତିରେ ରହିଛି । ପଦ୍ୟ ପ୍ରକୃତି ଏହାର କାରଣ ବୋଲି ମନେହୁଏ ।

ଏସନେକେ ସେବା କରିଥାନ୍ତି ବିଶ୍ୱନାଥ ୧୬୮ । ୧

( ବିଶ୍ୱନାଥଙ୍କୁ )

ଜର୍ଯାତ ପାଳଇ ଅନାଦ ନିରଞ୍ଜନ ୧୭୫ । ୧

( ନିରଞ୍ଜନଙ୍କୁ )

ଏକାନ୍ତେ ବସାଇଲେ ପଦ୍ମଲଭର ବେନି କୁମାଙ୍କ ୮୩୧ । ୧

( କୁମାଙ୍କଙ୍କି )

ସ୍ବବେଶ ସ୍ବବେଶ ଆବଷଗ ଉପସିଙ୍କା ୧୦୫୨ । ୨

( ଉପସିଙ୍କାଙ୍କୁ )

## କରଣ କାରକ–ତୃତୀୟା ବିଭକ୍ତି

-ଏ ( -ଯ୍ୟେ )

ମାନ୍ଧାତ୍ରହ୍ମଲୋଚନ ସିନ୍ଦୂରେ ମୁଖ ମଣ୍ଡି ୪ । ୧

( ସିନ୍ଦୂର-ଏ = ସିନ୍ଦୂରେ )

ବାମ କରେ ଗୁପି ପ୍ରହାର କଲେ ମୁଥେ ୭୫୪ । ୨

( କର-ଏ = କରେ )

କ୍ଷୁଧାଯ୍ୟେ ତୁମ୍ଭେ ମୋତେ କୋପ କରିବ ବୋଲି ୧୩୨୪ । ୧

( କ୍ଷୁଧା-ଏ = କ୍ଷୁଧାଏ > କ୍ଷୁଧାଯ୍ୟେ )

-ଏଂ

କାମେଂ ବେଭଳ ହୋଇଲେ ବ୍ରହ୍ମସୁତ ୮୮୧ । ୧

( କାମ -ଏଂ = କାମେଂ )

ଭୁଜେଂ ଧରି ଶମ୍ଭୁବାଣ ବସାଇଲା ବୋଲ ୧୫୫ । ୨

( ଭୁଜ-ଏଂ = ଭୁଜେଂ )

-ଏଣ ( -ଯ୍ୟେଣ )

କରେଣ ଘେନଲେ ଦେଖା ବନେ କର୍ଣ୍ଣ କଟାର ୪୨୫ । ୧

( କର-ଏଣ = କରେଣ )

ନଖ ଦନ୍ତ ଘାତେଣ ଶରୀର ବଦାରି ୩୨୫ । ୧

( ଘାତ-ଏଣ = ଘାତେଣ )

ରାଜା ଚନ୍ଦ୍ରାଯ୍ୟେଣ ପାଣୋଦଇକଳ ତୋତେ ୧୩୬୪ । ୧

( ଚନ୍ଦ୍ରା-ଏଣ = ଚନ୍ଦ୍ରାଏଣ > ଚନ୍ଦ୍ରାଯ୍ୟେଣ )

ତୋହୋର ଅବସ୍ଥାଯ୍ୟେଣ ଅନେକ ଦୋଷ ମୋତେ ୧୮୯ । ୨

( ଅବସ୍ଥା-ଏଣ = ଅବସ୍ଥାଏଣ > ଅବସ୍ଥାଯ୍ୟେଣ )

-ରେ

ଦେବୀ ଚକ୍ଷୁରେ ଦେଖନ୍ତି ପଡଲେ ଅଗ୍ନି ୧୭୧ । ୨

ସତ୍ୟରେ ସଂସାର ଅଛୁ ଅନୁବ୍ରତ ୭୮୦ । ୧

-ରେଣ

ମୁଥେ ମାରଣ ପାଦରେଣ ପ୍ରହାର ୩୨୫ । ୧

ମୋହୋରେଣ ଅକଣ୍ୟ ରୁ ହୋଇବୁ ପଗ୍ଭଭବ ୬୯୩ । ୨

### ଅବଭକ୍ତିକ କରଣ

କରଣ କାରକରେ ମଧ୍ୟ କେତେକ ସ୍ଥଳରେ ବିଭକ୍ତିଚିହ୍ନ ଲାଗିନାହିଁ । ପଦ୍ୟପ୍ରକୃତି ଏହାର କାରଣ ବୋଲି ମନେହୁଏ ।—

ରୁ ସାସ୍ତେନ୍ଦ୍ରକୁ ଶିରଚ୍ଛେଦ ହୁଅ ତାହାର ହସ୍ତ ୪୪୧ । ୨

( ହସ୍ତରେ )

ତାହାର ଶ୍ରୋଣିତ ପିତୃଲୋକେ ଶ୍ରାଦ୍ଧାନ କରନ୍ତି ୧୨୩୦ । ୨

( ଶ୍ରୋଣିତରେ )

କଟେଣ ଧଇଲା ଦେଖା ବଡ଼ଇ ଶରଧା ୧୦୭୫ । ୧

( ଶରଧାରେ )

### ସଂପ୍ରଦାନ କାରକ-ଚତୁର୍ଥୀ ବିଭକ୍ତି

ଆକୃତି ଦୃଷ୍ଟିରୁ ପ୍ରାଣିବାଚକ/ଗୌଣ କର୍ମ ଓ ସମ୍ପ୍ରଦାନ କାରକ ସମାନ ଏବଂ ଦ୍ୱିତୀୟା ଓ ଚତୁର୍ଥୀ ବିଭକ୍ତି ସମାନ । କେବଳ ଅର୍ଥଦୃଷ୍ଟିରୁ ଉଭୟ କାରକ ଓ ଉଭୟ ବିଭକ୍ତି ସ୍ୱୀକୃତ । ଏଠାରେ ସମ୍ପ୍ରଦାନ କାରକରେ ଚତୁର୍ଥୀ ବିଭକ୍ତିର କେତୋଟି ମାତ୍ର ପ୍ରୟୋଗ ଦିଆଗଲା ।

-କୁଇଂ

ବିଭୀଷଣକୁଇଂ ରାଜ୍ୟ ସମର୍ପି ସୀତାଙ୍କୁ ଘେନ ଆସନ୍ତି ବାହୁଡ଼ି ।

( ବନପର୍ବ ୨ୟ ଖଣ୍ଡ ପୃ-୯୬ )

-କୁ

କାଳେ ଦୋହିତାକୁ ମୋର ପ୍ରଦାନ କୋହିଲ ୬୩୮ । ୨

ଭୀଷ୍ମଙ୍କୁ କନ୍ୟା ଦେବ ବୋଇଲେ ଆନନ୍ଦେ ୫୨୭ । ୨

-କ

କେହ୍ନ ପ୍ରଦାନ କୋହିଲେ ଗାନ୍ଧାରୀକ ୬୨୦୨ । ୧

ଦେବୀଙ୍କି ଅନେକ ଶୀତଳ ଯୋଗାଡ଼ ପୂଜା ୫୫୪ । ୧

( ଦେବୀଙ୍କ-କ > ଦେବୀଙ୍କି ) ( ବିଭକ୍ତି ବିଶେଷଣ ଦ୍ରଷ୍ଟବ୍ୟ )

-ଏ

ଦେବେ ଅର୍ଘ୍ୟ ପାଣି ଦେଇ ପଞ୍ଚ ଗୁଣ୍ଡି ମୁଖେ ଲଇ ୧୨୯୧ । ୨

( ଦେବ-ଏ = ଦେବେ )

### ଅପାଦାନ କାରକ-ପଞ୍ଚମୀ ବିଭକ୍ତି

-ଉ

ଅସୁର କୁଳୁ ପ୍ରଦାନ ହୋଇଲେ ଶତ୍ରମେଷ୍ଟା ୮୧ । ୧

( କୁଳ-ଉ = କୁଳୁ )

କାହ୍ନଂର ଫଳ୍ନୁ ଯୋମବଂଶ ସ୍ତ୍ରେଢ଼େକ ବଯୋଗ ୧୦୦୮ । ୨
( ଫଳ-ନ୍ତ=ଫଳ୍ନୁ )

-ଉଂ

ଶଶଧରୁଂ ଉତପତ ହୋଇଲା ସନ୍ତତ ୭୧ । ୧
( ଶଶଧର-ଉଂ=ଶଶଧରୁଂ )

ସ୍ତ୍ରେହ୍ଵାଉଂ ଭ୍ରଗୀ ପାଇବ ଆତ୍ର କାହ୍ନଂ ୫୨୮ । ୨

-ହୁଂ

ଆବହୁଂ ଶୂନ୍ୟ ଶୂନ୍ୟରୁ ଜାତ ପବନ ୭୪ । ୧
ଆଗହୁଂ ନ ଫୁଟାଅରେ ଗୋପ୍ୟ କର ଝାଢ ୫୦୪ । ୨

-ରୁ

ପବନରୁ ଯୋନ ପୁରୁଷେ ଉତପନ ୭୪ । ୨
ମହାମନ୍ତ୍ରରୁ ଜାତ ହୋଇଲେ ଗୁଣ ବେଦ ୭୭ । ୧

## ସମ୍ବନ୍ଧ ପଦ-ଷଷ୍ଠୀ ବିଭକ୍ତି

-କର, -କଶ, -କ, ଏହି ତିନିଟି ଷଷ୍ଠୀବିଭକ୍ତି ଚିହ୍ନ କେବଳ ବହୁବଚନରେ ଓ ସମ୍ମାନସୂଚକ ଏକବଚନରେ ବ୍ୟବହୃତ ।

-କର

(କ) ବୃଷସ୍ୟାସ୍ତେ ବୋଇଲେ ସ୍ତ୍ରିଗୀଙ୍କର ସେହ୍ନେ ବ୍ରତ ୧୪୦୨ । ୧
( ସ୍ତ୍ରିଗ୍ଣଂ-କର=ସ୍ତ୍ରିଗ୍ଣଙ୍କର ) *

ଗ୍ଭନ୍ତଲେ ମାୟାମୋହ ପୁତ୍ରଙ୍କର ଯୋଗ ୧୧୦୩ । ୧
( ପୁତ୍ରଂ-କର=ପୁତ୍ରଙ୍କର )

---

* -କର, -କଶ, -କ, ଏହି ତିନିଟି ଷଷ୍ଠୀଚିହ୍ନ ଲଗିଲେ ପ୍ରାତିପଦିକ (ମୂଳଶବ୍ଦ) ଅନୁନାସିକ ହୁଏ । ଉକ୍ତ ଅନୁନାସିକତା ପ୍ରା. ଭା. ଆ. ଷଷ୍ଠୀ ବହୁବଚନ -ନାମ୍ (ମ. ଭା. ଆ. -ଣେ୍ମ)ର ଅବଶେଷ । ମ. ଭା. ଆ. ବିଶେଷଣାତ୍ମକ ସମ୍ବନ୍ଧପ୍ରତ୍ୟୟ '-କେର-'ରୁ ଓଡ଼ିଆ -କର, କଶ, -କ ଉତ୍ପନ୍ନ । - କେର-ଷଷ୍ଠୀବହୁବଚନାନ୍ତ ପଦରୁ ପ୍ରଯୁକ୍ତ ହେଉଥିଲା । ଯଥା—ପ୍ରା ଭା. ଆ. ଜନାନାଂ > ମ. ଭା. ଆ. ଜଣାଣଂ କେର- > ଓ ଜଣଂଙ୍କର = ଜଣଙ୍କର । ଷଷ୍ଠୀବହୁବଚନାନ୍ତ ପଦର ସେହି ଅନୁନାସିକତା ଅଦ୍ୟାବଧି ଓଡ଼ିଆରେ ରହିଅଛି । ତେଣୁ ସ୍ତ୍ରିଗ୍ଣଂ-କର=ସ୍ତ୍ରିଗ୍ଣଙ୍କର, ପୁତ୍ରଂ-କର=ପୁତ୍ରଙ୍କର, ସ୍ତ୍ରେହ୍ଵାଂ-କ=ସ୍ତ୍ରେହ୍ଵାଙ୍କ, ତାହାଂ-କଶ=ତାହାଙ୍କଶ, ଏହିପରି ବିଶ୍ଳେଷଣ କରାଯାଇଛି ।

(ଙ) ସମ୍ମାନସୂଚକ ଏକବଚନରେ—

ଋଷିଙ୍କର ବଚନମାନ ଖଣ୍ଡି ଖଣ୍ଡି କରି ପକାଏସେ ଚିର ୩୨୭ । ୧

( ଋଷିଂ-କର=ଋଷିଙ୍କର )

ଭୀଷ୍ମଙ୍କର ନଦରେ ଖଟଇ ଦନଗ୍ରଥ ୬୮୭ । ୨

( ଭୀଷ୍ମଂ-କର=ଭୀଷ୍ମଙ୍କର )

-କର

ଅନେକ ବାରେ ପୃଜ ନୋହିଲ ତ'ହାଙ୍କର ୭୬୮ । ୨

( ତାହାଂ-କର=ତାହାଙ୍କର )

ଚରଣ ପ୍ରମାଣେ କରି ଯେ ସାତଂକର ଶରୀର କାଟି । ( ବନପର୍ବ ୧ମ ଖଣ୍ଡ ପୃ ୪୧୫ )

-ଙ୍କ

(କ) ବହୁବଚନରେ —

ଗୁରୁଜନଙ୍କ ବଚନ ନ କରନ୍ତି ସେବଣ ବଳା ୩୧୦ । ୧

( ଜନଂ-କ=ଜନଙ୍କ )

ସେହିହାଙ୍କ ପୁତ୍ର ଯେ ବ୍ୟାସ ବଶ୍ମୀମିନେ ୧୫୩୨ । ୧

( ସେହିହାଂ-କ=ସେହିହାଙ୍କ )

(ଖ) ସମ୍ମାନସୂଚକ ଏକବଚନରେ—

ଚନ୍ଦ୍ର ଯେ ହରିଲ ବୃହସ୍ପତଙ୍କ ଭାରିଯା ତାର ୭୩ । ୧

( ବୃହସ୍ପତିଂ-କ=ବୃହସ୍ପତିଙ୍କ )

ମାତାଙ୍କ ଭାର ଓଢ଼ାରିଷ୍ଟ ମଣ୍ଡଳେ ୯୩ । ୧

( ମାତାଂ-କ=ମାତାଙ୍କ )

-ର

ଯୋଗେ ଯୋଗେଶ୍ୱର ଭୂ ସଦାନନ୍ଦର ତନୟେ ୧୯ । ୧

ବଟର ତଳେ ସେ ବସିଲେ ଯୋଗାସନେ ୧୫ । ୧

-ର

ନଷ୍ଟଦୃଷ୍ଟଂ ବ୍ରତ ଗୋ ପୁରିଲ ତୋହୋର ୪୩୩ । ୨

କାହାର ବଚନ ନ କଲେ ଭୀଷ୍ମ ଦୃଢ଼ ବାକ୍ୟେ ୭୭୯ । ୨

'-ରି' କେବଳ ସର୍ବନାମରେ ବ୍ୟବହୃତ ।

## ଅବଭକ୍ତିକ ସମ୍ବନ୍ଧ

ସମ୍ବନ୍ଧ ପଦ ମଧ୍ୟ କେତେକ ସ୍ଥଳରେ ଅବଭକ୍ତିକ ଆକୃତରେ ରହିଛି । ଏହାର କାରଣ ମଧ୍ୟ ପଦପ୍ରକୃତ ।—

ସାରଳା ଚଣ୍ଡିନାମ ଅଟଇ ସେ ଦେବୀ ୪୨ । ୧

( ଦେବୀର )

ତୀର୍ଥେ ଉପଦର୍ପ ନାହିଁ ନା କହୁଣୋପ ୧୨୨୫ । ୧

( କହୁଣୋପଙ୍କର )

ପଢପତ୍ନୀ କେମନ୍ତେ ସହବାସ ହୋଇବ ୨୩୮ । ୨

( ପଢପତ୍ନୀଙ୍କର )

ଏ ବେଳ ସେ ଗଙ୍ଗା ଧଉଳି ହୋଇବ ତନୁ ୩୩୭ । ୨

( ଗଙ୍ଗାର )

## ଅଧିକରଣ କାରକ ସପ୍ତମୀ-ବିଭକ୍ତି

-ଇ

ସେଥି ଜନ୍ମ ହେଲେ ବେନି ବରଷକୁ ମାତ୍ର ଗଣ ୧୨୪୧ । ୨

( ସେଥ-ଇ=ସେଥି )

-ଇଂ

ଇନ୍ଦୁ ଦେଶର ରଜା ସେ ପଞ୍ଚମ ସଉବସ୍ଥିଇଂ ୮୮ । ୧

-ଏ ( -ସେ )

ଉଦିଲେ ସନ୍ୟ ଯେସନ୍ତେ ଗଗନେ ପୂର୍ଣ ନ ଦିଶି ୫୫୨ । ୨

( ଗଗନ-ଏ=ଗଗନେ )

ଶ୍ରୀ ରମେଶ୍ୱର ଲିଙ୍ଗ ମହୋଦଧି ଉତ୍ତର ତଟେ ୩୨ । ୧

(ତଟ-ଏ=ତଟେ)

ସେମନ୍ତେ ରାଜଦ୍ୱାରେ ନାଉକାଏ ଶୋଚଥାନ୍ତି ୮୭୦ । ୧

ସମୋଦ୍ର ସ୍ନାନ ସାରି ଚନ୍ଦ୍ରଭାଗାସେ ପଶି ୩୭୨ । ୧

( ଚନ୍ଦ୍ରଭାଗା-ଏ > ଚନ୍ଦ୍ରଭାଗାସେ )

-ଏଣ (-ସେଣ )

ଆକାଶେଣ ଓଷ୍ଠ ଗୋ ପାତାଳେଣ ବୃଷ୍ଟି ୫୬୭ । ୧

(ଆକାଶ-ଏଣ=ଆକାଶେଣ, ପାତାଳ-ଏଣ=ପାତାଳେଣ )

ବଜେ ବଲେ ସୁରନାଥ ପୂର୍ଣ ସଭାସେଣ ୧୨୨ । ୨

( ସଭା-ଏଣ=ସଭାଏଣ > ସଭାସେଣ )

-ରେ

କୃଷି ଭୂମିରେ ମେଘେ କରନ୍ତି ଅତ୍ୟୋ.ବୃଷ୍ଟି ୧୭୨ । ୨

ରାଜ ପାଞ୍ଚ ଦଣ୍ଡରେ ଉତ୍ପନ୍ନ ତନୁଜ ୪୦୫ । ୨

ଅନେକ ଜନ୍ମରେ ମୁହିଁ ସଦାଶିବମନୋହାସ୍ତ । ୧୮ । ୨

Digitized by srujanika@gmail.com

-ରେଣ

ଏମାନ ବସାଇଲେ ନେଇ ଗୁଳାଦଣ୍ଡ କାଠିରେଣ ୫୪ । ୨

-ତେ

ସକଳ ସୁରଗଣ ଅଗ୍ରତେ କଲେ ପୂଜା ୯ । ୨

ଗଙ୍ଗାକୁ ସଙ୍ଗତେ ନେଲେ ଉପୋଧନେ ୩୭୦ । ୨

### ଅବିଭକ୍ତିକ ଅଧିକରଣ

ଅଧିକରଣ କାରକ ମଧ୍ୟ ପଦ୍ୟପ୍ରକୃତିବଶତଃ କେତେକ ସ୍ଥଳରେ ଅବିଭକ୍ତିକ ଆକୃତିରେ ରହିଅଛି । —

ଇନ୍ଦ୍ର ପଦେ ବସିଲି ସେ ଅମର ଆମର ଆକାଶ ୭୮ । ୨ ( ଆକାଶରେ )

ଗଙ୍ଗାକୁ ଲୁଚ୍ଚାଇ ନେଲେ ଜଣା ଗ୍ରାମ ୩୫୮ । ୧ ( ଜଣାଗ୍ରାମରେ )

ସବୁ ପୁରୋଇଲେ ନେଇ ଗୁଳାଦଣ୍ଡ କାଠି ୫୧ । ୨ ( କାଠିରେ )

## ଦ୍ୱିତୀୟ ଅଧ୍ୟାୟ

### ଚତୁର୍ଥୀ ଓ ଷଷ୍ଠୀ ବିଭକ୍ତିର ବ୍ୟବହାର ବୈଶିଷ୍ଟ୍ୟ

ସାଧାରଣତଃ ବିଭକ୍ତିଚିହ୍ନ କାରକସମ୍ପର୍କକୁ ଅଭିବ୍ୟକ୍ତ କରେ । କିନ୍ତୁ କାରକତ୍ୱବିହୀନ ପଦରେ ମଧ୍ୟ ବିଭକ୍ତିଚିହ୍ନ ଲାଗିଥାଏ । ଏହା ବିଭକ୍ତିର ବ୍ୟବହାରବୈଶିଷ୍ଟ୍ୟ । ସକଳିତ ଉଦ୍ଧୃତାଂଶରେ ବିଭକ୍ତିଗୁଡ଼ିକର ବହୁବିଧ ବ୍ୟବହାରବୈଶିଷ୍ଟ୍ୟ ରହିଛି । ତନ୍ମଧ୍ୟରେ ଚତୁର୍ଥୀ ଓ ଷଷ୍ଠୀର ପ୍ରୟୋଗରେ ବୈଶିଷ୍ଟ୍ୟ ଅଧିକ । ତେଣୁ ଏଠାରେ କେବଳ ଏହି ବିଭକ୍ତିଦ୍ୱୟର କେତେକ ପ୍ରୟୋଗ ପ୍ରଦର୍ଶିତ ହେଲା ।

ଦ୍ୱିତୀୟା ଓ ଚତୁର୍ଥୀ ଆକୃତିଦୃଷ୍ଟିରୁ ସମାନ । ମାତ୍ର ବ୍ୟାକରଣରେ କେତେକ ଅର୍ଥରେ ଦ୍ୱିତୀୟା ଏବଂ କେତେକ ଅର୍ଥରେ ଚତୁର୍ଥୀ ସ୍ୱୀକୃତ । ତେଣୁ ଏଠାରେ ଚତୁର୍ଥୀ ବିଭକ୍ତି ନିର୍ଦ୍ଧାରଣରେ ବ୍ୟାକରଣନିୟମ ଅବଲମ୍ବନ କରାଯାଇଅଛି ।

### ଚତୁର୍ଥୀ

(କ) ଷଷ୍ଠୀପରିବର୍ତ୍ତେ—

ପ୍ରିୟ ଜନ୍ମ ନିଷ୍ଫଳ ହୋଇଲା ମାତା ତୁକୁ ୮୫ । ୧

(ତୁକୁ-ତୋର)

ସତ୍ୟ ସତ୍ୟ ବିଚାର ଅଲଙ୍ଘିତ ନିୟମ ମୋତେ ୬୦୭ । ୨

( ମୋତେ-ମୋର)

ରାଜୁକୁ କଷ୍ଟ ତ ହୋଇବେ ବ୍ୟାସ ମାହାମୁନି ୧୧ । ୧

( ରାଜୁକୁ-ରାଜୁର )

ଋଷିଙ୍କି ପ୍ରିୟ ଭାବ ବଢ଼ାଇଲା ଧବଳମୁଖୀ ୨୫୭ । ୨
( ଋଷିଙ୍କି-ଋଷିଙ୍କର )

କ୍ଷତବୃତ୍ତି ନ ଛାଡ଼ିଲ ବଂଶକୁ ଦ୍ରୁତ ଅର୍ଥେ ୨୭୭ । ୨
( ବଂଶକୁ-ବଂଶର )

ସମସ୍ତ ଜନଜନ୍ତୁ ତାହାଙ୍କୁ ଜାଣ ବଶ ୨୯୭ । ୨
( ତାହାକୁ-ତାହାର)

ସପତଦୀପା ପୃଥ୍ୱୀକ ସୋମବଂଶ ହୁଂ ଅଧିପତି ୭୩ । ୨
(ପୃଥ୍ୱୀକ-ପୃଥ୍ୱୀର )

ମୋକ୍ଷକଇ କାରଣ ମୋତେ କହିବା ମାହାତ୍ମ୍ୟ ୫୧ । ୨
( ମୋକ୍ଷକଇ-ମୋକ୍ଷର )

ହଭ କୁଳକୁ ବାବୁ ଉପେକ୍ଷା କର ଲଜ ୮୧୫ । ୧
( କୁଳକୁ-କୁଳର )

ଆବର କରତାରକୁ କେ ହୋଇବ ଭଗତେ ୧୧୧୫ । ୨
( କରତାରକୁ-କରତାରର )

ରଜାକୁ ଉପବାସ ନାହିଁ ରଜମତି ୨୭୮ । ୧
( ରଜାକୁ-ରଜାର ) *

(୯) ନିମିତ୍ତ ଅର୍ଥରେ—

ଭୀଷ୍ମଙ୍କୁ କନ୍ୟା ଯେ ଲୋଡ଼ନ୍ତି ସୋମବଂଶି ୪୮୭ । ୨
( ଭୀଷ୍ମଙ୍କୁ-ଭୀଷ୍ମଙ୍କ ନିମିତ୍ତ )

ଯେବଣ କନ୍ୟାକୁ ରଜା କରନ୍ତି ସଯ୍ୟମ୍ବର ୫୧୭ । ୧
( କନ୍ୟାକୁ-କନ୍ୟା ନିମିତ୍ତ )

କଳକାଳ ଧଂସନକୁ ଶ୍ୱେତ କୋଟିପୂଜା ୩୪ । ୧
ଧଂସନକୁ-ଧଂସନ ନିମିତ୍ତ )

ଧର୍ମକୁ ଆଗମ କଲେ ମୋତେ ପିତା ୮୭୪ । ୨
( ଧର୍ମକୁ-ଧର୍ମ ନିମିତ୍ତ )

ଗାନ୍ଧାରୀକ ମୋର କରିବା କେବଣ ଉପାଏ ୧୨୩୨ । ୨
( ଗାନ୍ଧାରକ-ଗାନ୍ଧାରୀ ନିମିତ୍ତ )

* ମ. ଭା. ଆ. ରେ ସାଧାରଣତଃ ଚତୁର୍ଥୀ ସ୍ଥାନ ଷଷ୍ଠୀ ଗ୍ରହଣ କରିଥିଲା । କିନ୍ତୁ ଓଡ଼ିଆରେ ଷଷ୍ଠୀର ସ୍ଥାନ ଚତୁର୍ଥୀ ଗ୍ରହଣ କରିଛି । ଏ ଦୁଇ ବିଭକ୍ତିର ତାଦାତ୍ମ୍ୟ ମୂଳରେ ମ. ଭା. ଆ. ସ୍ୱରୂପ ନିହିତ ।

ବସ୍ତ୍ର କାର୍ପ୍ୟକଇ ଆଗ୍ୟା° ଦେବା ସ୍ୱାମି ୫୮୩ । (କାର୍ପ୍ୟକଇ-କାର୍ପଣ୍ୟ ନମିତ୍ତ )

(ଗ) ହେତୁ ଅର୍ଥରେ—

ଗାଙ୍ଗି ନ ବୋଇଲାକୁ ଛଡ଼ପୁନ ମାଇଲ ୪୩୧ । ୨

( ନ ବୋଇଲାକୁ-ନ ବୋଧୁଲା ହେତୁ )

ନପ୍ତନ ବୁଜିଲାକୁ ଅନ୍ଧପୁଦ ଉପୁଜିଲା ୧୦୬୩ । ୨

(ବୁଜିଲାକୁ-ବୁଜିଲା ହେତୁ )

(ଘ) ଅବଧ ଅର୍ଥରେ—

ସଂସାର ଅଗାଦକୁ ନାଉକା ଅଟଇ ଧର୍ମ ୨୫୯ । ୨

( ଅଗାଦକୁ-ଅଗାଦରେ )

ଶ୍ରୀକୃଷ୍ଣଙ୍କର ତେଜକୁ ଭ୍ରମର କସ ପ୍ରତଗ୍ୟା° ୫୧୯ । ୨

( ତେଜକୁ-ତେଜନକଟରେ )

ବଇବସୁତ ମନୁ ଅଗସ୍ତିଙ୍କି ହୋଇଲେ ପ୍ରଳମ୍ବିତ । ୫୮ । ୧

( ଅଗସ୍ତିଙ୍କି-ଅଗସ୍ତିଙ୍କ ପ୍ରତ )

ହେ ସ୍ୱାମି ଶ୍ରୀକୃଷ୍ଣେ ଆମ୍ଭଙ୍କୁ ବହୁତ କୋପ କଲ୍ ୭୧୫ । ୨

( ଆମ୍ଭଙ୍କୁ-ଆମ୍ଭ ପ୍ରତ ) *

## ଷଷ୍ଠୀ

ଅସଂପନ୍ନ କ୍ରିୟା ବାଚକ ବିଶେଷଣ, ବର୍ତ୍ତମାନକାଳିକ ସମ୍ପନ୍ନ କ୍ରିୟାବାଚକ ବିଶେଷଣ, ଭୂତକାଳିକ ସମ୍ପନ୍ନ କ୍ରିୟା ବାଚକ ବିଶେଷଣ ଏବଂ ଭବିଷ୍ୟତକାଳିକ କ୍ରିୟା ବାଚକ ବିଶେଷଣ, ଏଗୁଡ଼ିକର କର୍ତ୍ତା ଶବ୍ଦମାନେ ଷଷ୍ଠୀଯୁକ୍ତ ହୋଇଅଛି । ଏଠାରେ କେବଳ ସେହି ଷଷ୍ଠୀରୂପ ପ୍ରଦର୍ଶିତ ହେଲା । (କ୍ରିୟା ବାଚକ ବିଶେଷଣ ଦ୍ରଷ୍ଟବ୍ୟ)

( କ ) ଅସଂପନ୍ନ କ୍ରିୟାବାଚକ ବିଶେଷଣର କର୍ତ୍ତା—

ଆମ୍ଭର ଆଉଂଣ ମାଳା ଦେଇ ବଣ

ଶ୍ରୀକୃଷ୍ଣ ପ୍ରଦାନ ହାଦେ ହୋଇବେ କ୍ଷମାଶ୍ୱ । ୬୫୮ । ୧

---

* ଷଷ୍ଠୀ ଅର୍ଥରେ ଚତୁର୍ଥୀ ରୁଦ୍ରସୁଧାନିଧି (ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ) ଗ୍ରନ୍ଥରେ ଅନେକତ୍ର ଦେଖାଯାଏ । ଯଥା—

ଏ ମାୟାକୁ ମୂଳ ହୋଇ ଯେ ବିଶ୍ୱକର୍ତ୍ତା ଈଶ୍ୱର ଅଛି । (ପୃ. ୬୯)

ଦେହ ଅନ୍ଧକାରକୁ ସଦ୍ଗୁଣ କଲା । (ପୃ. ୮୯)

କୁମରକୁ ପ୍ରତିପାଳନା ନମିତ୍ତେ ଅବା ଷଷ୍ଠୀଦେବୀ ଅବା ମୂର୍ତ୍ତିମନ୍ତ ହୋଇ ଥଇଲେ ବୋଲି । (ପୃ. ୯୪)

ତୁମ୍ଭର ମଣୋହିଂ ନ କରୁଂ ଆଗ ମୁଂ ଖାଇଲ । ୧୩୬୮ ।

(ଖ) ବର୍ତ୍ତମାନକାଳିକ ସପ୍ତମ୍ୟନ୍ତ କ୍ରିୟାବାଚକ ବିଶେଷଣର କର୍ତ୍ତା—

ଗଙ୍ଗାର ଆନ୍ତେ ସେ ପୁସ୍ତକ ପକାଇଲ ହାଣି ୧୯୩ । ୧

ଋଷିଂକର ଦେଖନ୍ତେ ପୁସ୍ତକୁ ପକାଇଲ ହାଣି । ୩୮୯ । ୧

ଏ ମୋହର ଏଥିରେ ନିପତ ହୋଅନ୍ତେ ୧୩୦୨ । ୧

ଆମ୍ଭର ଜାଣନ୍ତେ ସେ ବଳିଲୁ ଯୋହାକୁ ୭୨୩ । ୧

(ଗ) ଭୂତକାଳିକ ସପ୍ତମ୍ୟନ୍ତ କ୍ରିୟାବାଚକ ବିଶେଷଣର କର୍ତ୍ତା—

ସାମ୍ୟେନ୍ତନୁଙ୍କର ଥିଲେ ସେ ନ ପଶଇ ଅନ୍ତେଶ୍ବର ପୁର । ୨୮୬ । ୨

ଆମ୍ଭର କୋପ କଲେ ବାହାର ହୋଇ ଦେବ ୩୪୮ । ୨†

ଏହାର କୋପ କଲେ ବାବୁ କେହି ନ ବୃଡ । ୭୩୮ । ୨

(ଘ) ଭବିଷ୍ୟତକାଳିକ କ୍ରିୟାବାଚକ ବିଶେଷଣର କର୍ତ୍ତା—

ତୋହୋର ମୋହୋର ବଇକୁଣ୍ଠେ ବସିବା ସଘାତ । ୨୬୩ । ୨

## ତୃତୀୟ ଅଧ୍ୟାୟ

### ବିଭକ୍ତି ବିଶ୍ଳେଷଣ

ଦ୍ବିତୀୟା ୪ର୍ଥୀ,-କଇଂ ଗୋଟିଏ ପୃଥକ୍ ବିଭକ୍ତିଚିହ୍ନ ନୁହେଁ । ଏହା '-କଇ'ର ଅନୁନାସିକ ରୂପ ମାତ୍ର । ସେହିପରି '-କୁଇ'ର ଅନୁନାସିକ ରୂପ—କୁଇଂ ।

ତୃତୀୟା-ଏ,-ଏଂ ମଧ୍ୟ ଅଭିନ୍ନ । '-ଏଂ'ର ନିରନୁନାସିକ ରୂପ-ଏ । (-ଏଂ ହେଉଛି ମୂଳ ରୂପ । 'ବିଭକ୍ତିଚିହ୍ନଗୁଡ଼ିକର ଉତ୍ପତ୍ତି ସ୍ଥଳ' ଦ୍ରଷ୍ଟବ୍ୟ)

ପଞ୍ଚମୀ -ଉ, -ଉଂ, -ହୁଂ, ଏ ତିନୋଟିକୁ ମଧ୍ୟ ଏକ ବୋଲି ବୁଝାଯାଇପାରେ । '-ଉ'ର ଅନୁନାସିକ ରୂପ -ଉଂ । '-ଉଂ'ର ଘୋଷ ଧ୍ବନି—ହୁଂ

ସପ୍ତମୀ -ଇ, -ଇଂ ମଧ୍ୟ ସେହିପରି ଅଭିନ୍ନ । *

ଅବଶିଷ୍ଟ ବିଭକ୍ତିଚିହ୍ନଗୁଡ଼ିକ ଦୁଇ ଶ୍ରେଣୀରେ ବିଭାଜ୍ୟ—ମୌଳିକ ଓ ଯୌଗିକ ।

---

† ବର୍ତ୍ତମାନ କର୍ତ୍ତାରେ ଏଭଳି ଷଷ୍ଠୀପ୍ରୟୋଗ ଆଉ ନାହିଁ । କଥିତ ଭାଷାରେ କେବଳ (ଘ) ପ୍ରକାର ପ୍ରୟୋଗର ସତ୍ତା ଅଛି । ଯଥା—ତୋର ମୋର ଖେଳିବା । ( ତୁ ଓ ମୁଁ ଖେଳିବା ) ବର୍ତ୍ତମାନ ଏହି କ୍ରିୟାବାଚକ ବିଶେଷଣ ଗୁଡ଼ିକର କର୍ତ୍ତା ଅବିଭକ୍ତିକ ଆକୃତିରେ ରହେ । ଯଥା—ଏ କୋପ କଲେ କେହି ବର୍ତ୍ତିବେ ନାହିଁ । ଲୋକମାନେ ଜାଣନ୍ତେ ଦଉଡ଼ି ଆସିଲେ ।

* ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସପ୍ତମୀ -ଇ,-ଇଂ ର ବ୍ୟବହାର ଖୁବ୍ ଅଳ୍ପ ଦେଖାଯାଏ । ପଞ୍ଚଦଶ ଶତକ ବେଳକୁ ଏହି ବିଭକ୍ତିଚିହ୍ନ ଦୁଇଟି ଲୁପ୍ତ ହୋଇ ଆସୁଥିଲା ବୋଲି ମନେ ହୁଏ ।

## ମୌଳିକ ବିଭକ୍ତି

ପ୍ରଥମା—ଏ
ଦ୍ୱିତୀୟା—କଇ, କୁଇ, କୁ, କ, ଏ, ଡେ, ନ୍ତ, ନ୍ତି
ତୃତୀୟା—ଏ, ଏଣ
ଚତୁର୍ଥୀ—କଇ, କୁଇ, କୁ, କ, ଏ
ପଞ୍ଚମୀ—ହୁ
ଷଷ୍ଠୀ—କର, କେର, କ, ର, େର
ସପ୍ତମୀ—ଇ, ଏ, ଏଣ

## ଯୌଗିକ ବିଭକ୍ତି

୨ୟା—ରେ ( ର+୨ୟା -ଏ )
୩ୟା—ରେ, ରେଣ ( ର+୩ୟା - ଏ, ର+୩ୟା -ଏଣ )
୫ମୀ—ରୁ ( ର+୫ମୀ -ହୁ )
୭ମୀ—ରେ, ରେଣ ( ର+୭ମୀ -ଏ, ର+୭ମୀ -ଏଣ ) *

ପ୍ରୟୋଗ ଦୃଷ୍ଟିରୁ ସମସ୍ତ ବିଭକ୍ତିଚିହ୍ନ ଦୁଇ ଶ୍ରେଣୀରେ ବିଭାଜ୍ୟ—ସଂଶ୍ଳେଷାତ୍ମକ ଓ ସଂଯୋଗାତ୍ମକ । ସଦ ଓ ସ୍ୱରାନ୍ତ ଚିହ୍ନଗୁଡ଼ିକ ସଂଶ୍ଳେଷାତ୍ମକ ଏବଂ ବ୍ୟଞ୍ଜନାନ୍ତ ଚିହ୍ନଗୁଡ଼ିକ ସଂଯୋଗାତ୍ମକ । ସଂଶ୍ଳେଷାତ୍ମକଗୁଡ଼ିକ କେବଳ ଅକାରାନ୍ତ ପ୍ରାତିପଦିକ ( ମୂଳ ଶବ୍ଦ )ରେ ସଂଶ୍ଳିଷ୍ଟ ହୁଅନ୍ତି । ( 'ବିଶେଷ୍ୟ ଓ ବିଶେଷଣ ପ୍ରାତିପଦିକ' ଦ୍ରଷ୍ଟବ୍ୟ ) ସଂଯୋଗାତ୍ମକଗୁଡ଼ିକ ପ୍ରାତିପଦିକର ଅବ୍ୟବହିତ ପରେ ଲାଗି ରହନ୍ତି ।

ଗ୍ରନ୍ଥରେ ଅନ୍ୟାନ୍ୟ କେତୋଟି -ଠା- ଯୁକ୍ତ ସଂଯୋଗାତ୍ମକ ବିଭକ୍ତିଚିହ୍ନ ମଧ୍ୟ ଦେଖାଯାଏ । ଅବଶ୍ୟ, ସେଗୁଡ଼ିକର ପ୍ରୟୋଗ ବିରଳ । ଯେପରି—

ସଂପୂର୍ଣ୍ଣ ବିଦ୍ୟା ନ ବଣଇ ସ୍ୱେଚ୍ଛେନଣ ଠାଏ୍ଁ ।
( ଆ. ପ. ୧ମ ଖଣ୍ଡ, ପୃ ୩୧୩ )
( ଠା -ଏ > ଠାଏ୍ଁ )

---

* ଯୌଗିକ ବିଭକ୍ତିମାନଙ୍କର ମୂଳ ଅଂଶଟି ହେଉଛି ଷଷ୍ଠୀ -ର ଏବଂ ପରବର୍ତ୍ତୀ ଅଂଶ ଅନ୍ୟ ବିଭକ୍ତି । ଏଗୁଡ଼ିକ ପ୍ରଥମେ ଅସଂଯୁକ୍ତ ଅବସ୍ଥାରେ କିଛି କାଳ ରହି କ୍ରମେ ସଂଯୁକ୍ତ ହୋଇଥିବା ଅନୁମାନ । କାରଣ, ଏଗୁଡ଼ିକର ଅସଂଯୁକ୍ତ ଆକୃତିର ନିଦର୍ଶନ ମିଳେ । ଯେପରି—

ତପ ଚନ୍ଦ୍ରବଂଶୀଙ୍କ ହାଥରଇ.........
( E. O. L. S. ଶିଳାଲେଖ ୧, ଧାଡ଼ି ୧୫ )
ହାଥରଇ=ହାଥରେ ( ହାତରେ )

ଶ୍ରୀମତ୍ ବନ୍ଦେନ୍ଦ୍ର ଜଳା ଆନଠାରେ ପଣି ✻

( ତତ୍ରୈବ, ପୃ ୩୦୭ )

ବର୍ତ୍ତମାନ ଓଡ଼ିଆରେ -ଠା- ଯୁକ୍ତ ବିଭକ୍ତିଚିହ୍ନମାନ ବହୁଳଭାବେ ବ୍ୟବହୃତ ହୁଏ । ଯେପରି—

୨ୟା—ଠାକୁ, ଠିକୁ, ଠିକି ·
୫ମୀ—ଠାରୁ, ଠାଉଁ, ଠଉଁ, ଠୁଁ, ଠୁ
୭ମୀ—ଠାରେ, ଠାଇଁ, ଠେଇଁ, ଠି, ଠି

ଏହି ଗ୍ରନ୍ଥରେ 'ଠାବ' ରେ ବିଭକ୍ତିଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୋଇଛି । ଯଥା— ଠାବରୁ, ଠାବରେ, ଠାବେ ଇତ୍ୟାଦି । ଠାବରୁ >ଠାରୁ, ଠାବରେ >ଠାରେ, ଠାବକୁ > ଠାକୁ, ଏହିପରି '-ଠା-'ର ବିକାଶ ଘଟି ସେଥିରୁ ଠାଉଁ, ଠଉଁ, ଠୁଁ, ଠାଇଁ, ଠିଁ, ଠି ପ୍ରଭୃତିର ଉତ୍ପତ୍ତି ଘଟିଛି ।

'ଠା' ପ୍ରାତିପଦିକ ରୂପେ ମଧ୍ୟ ବ୍ୟବହୃତ ହୁଏ । ଯେପରି—

ମୁଁ ସେଠା ଖୁଣ୍ଟି ଖୁଲିଗଲି । ( ସେଠା-ସେ ଠାବ )

-ନ୍ତ, -ନ୍ତି କୁ ଛାଡ଼ି ଅନ୍ୟ ସମସ୍ତ ସଂଯୋଗାତ୍ମକ ବିଭକ୍ତିଚିହ୍ନ ବହୁବଚନ ତଥା ସମ୍ମାନ ସୂଚକ ଏକବଚନରେ ପ୍ରାତିପଦିକର ଷଷ୍ଠ୍ୟନ୍ତ ଆକୃତିକୁ ଲାଗେ । ଯେପରି—

୨ୟା { ଲୋକଙ୍କ-କଇ = ଲୋକଙ୍କଇ
ଲୋକଙ୍କ-କୁ = ଲୋକଙ୍କୁ
ଲୋକଙ୍କ-ଠାକୁ = ଲୋକଙ୍କଠାକୁ

୩ୟା ଲୋକଙ୍କ-ରେ = ଲୋକଙ୍କରେ †

---

✻ ପଞ୍ଚଦଶ ଶତାବ୍ଦୀ ଶିଳାଲେଖରେ -ଠା- ଯୁକ୍ତ ବିଭକ୍ତିର ବ୍ୟବହାର ଦେଖାଯାଏ । ଯଥା—

······ବ୍ରାହ୍ମଣ ଦାଣ୍ଡକାଠୋ···(E O.L.S. ଶିଳାଲେଖ ୩୪, ଧାଡ଼ି ୩) ( ଠୋ = ଠାରୁ )

† ସମସ୍ତେ ବ୍ରତଆଥ ଯୁଦ୍ଧେଷ୍ଟିଙ୍କରେ ନ କର ଭୁ ଦ୍ୱନ୍ଦ ।

( ଆ: ପ: ୧ମ ଖଣ୍ଡ, ପୃ ୪୬୨ )

ଏମନ୍ତେ ଏ ଦଣ ପବନଙ୍କରେ ଅଗ୍ନିରୁ ଦଣ କଲା ବସଇ ।

(ରୁ: ସୁ. ନି:, ପୃ ୧୨୪ )

ବିଭୂଷଣ ଭୁଷା ନଚାନ୍ତୁ ସବ ସୁନ୍ଦରୀଙ୍କରେ । ( ବୈ ବ ୩-୪୭ )

ସଂଶ୍ଳେଷାତ୍ମକ ବିଭକ୍ତିଚିହ୍ନ-ଏ (୧ମା) ମଧ୍ୟ ଷଷ୍ଠ୍ୟନ୍ତ ପ୍ରାତିପଦିକରୁ ଲାଗିଥିବାର ନିଦର୍ଶନ ରହିଛି । ଯେପରି, ତାଙ୍କ-ଏ = ତାଙ୍କେ (ସେ) । ଏହି ସର୍ବନାମଟି ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ।

୪ର୍ଥୀ { ଲୋକଙ୍କ-କଇ = ଲୋକଙ୍କଇ
ଲୋକଙ୍କ-କୁ = ଲୋକଙ୍କୁ

୫ମୀ { ଲୋକଙ୍କ-ରୁ = ଲୋକଙ୍କରୁ
ଲୋକଙ୍କ-ଠୁ = ଲୋକଙ୍କଠୁ

୬ଷ୍ଠୀ ଲୋକଙ୍କ-ର = ଲୋକଙ୍କର

୭ମୀ { ଲୋକଙ୍କ-ରେ = ଲୋକଙ୍କରେ
ଲୋକଙ୍କ-ଠାରେ = ଲୋକଙ୍କଠାରେ ଇତ୍ୟାଦି ।

ବର୍ତ୍ତମାନ ପ୍ରଚଳିତ -ମାନେ, -ମାନଙ୍କୁ, -ମାନଙ୍କରୁ, -ମାନଙ୍କରେ ଇତ୍ୟାଦିରେ ସବୁ ଅଂଶ ବିଭକ୍ତିଚିହ୍ନ ନୁହେଁ । ଏଗୁଡ଼ିକରେ -ମାନ- ଅଂଶଟି ବହୁବଚନପ୍ରତ୍ୟୟ ଏବଂ -ଏ, -ଙ୍କୁ, -ରୁ, -ରେ ପ୍ରଭୃତି ବିଭକ୍ତିଚିହ୍ନ । ('ବଚନ' ଦ୍ରଷ୍ଟବ୍ୟ)

**ବିଭକ୍ତି ବ୍ୟତ୍ୟୟ**

କେତେକ ସ୍ଥଳରେ ଆବଶ୍ୟକ ବିଭକ୍ତି ପରିବର୍ତ୍ତେ ଅନ୍ୟ ବିଭକ୍ତି ବ୍ୟବହୃତ ହୋଇଛି । ପଦ୍ୟ ପ୍ରକୃତିରେ ଏପରି ଘଟିଛି ବୋଲି ମନେ ହୁଏ ।—

**ପଛେଣି** କୋଳ କରି ଧରିଲେ ମହାମୁନି ୪୩୬ । ୧

(ପଛେଣି-ପଛରୁ)

ଏମନ୍ତେ **ଗଙ୍ଗାଗର୍ଭେ** ଛଡ଼ପୂନି ଉପୁଜିଲା ୩୪୩ । ୧

( ଗଙ୍ଗାଗର୍ଭେ-ଗଙ୍ଗାଗର୍ଭରୁ )

ବରଣ କର୍ଦ୍ଦମ ବସାଇଲା **କୋଳର** ୨୧୦ । ୨ *

( କୋଳର-କୋଳରେ )

ସପ୍ତନିଧି ଯେନ କରି ରଜଯୋ **ସଭାର** ୧୨୦ । ୨

( ସଭାର-ସଭାରେ )

# ଚତୁର୍ଥ ଅଧ୍ୟାୟ

## ବିଭକ୍ତିଚିହ୍ନଗୁଡ଼ିକର ଉତ୍ପତ୍ତିସ୍ଥଳ

| ବିଭକ୍ତିର ନାମ | ଚିହ୍ନ | ଉତ୍ପତ୍ତିସ୍ଥଳର ନମୁନା |
|---|---|---|
| ପ୍ରଥମା | ଏ | ପ୍ରା. ଭା. ଆ. ତୃତୀୟାବହୁବଚନ '-ଏଭିଃ'ରୁ ଉତ୍ପନ୍ନ । ଯେପରି—ନରେଭିଃ > ନରେହି > ନରେଇ > ନରେ । ଅସ୍ମାଭିଃ > ଅମ୍ହେହି > ଅମହେଇ > ଆମ୍ଭେ, ଆମେ । |

* ବର୍ତ୍ତମାନ ଉତ୍ତର ଓଡ଼ିଶାରେ ସପ୍ତମୀ ଅର୍ଥରେ ଷଷ୍ଠୀ ବ୍ୟବହୃତ ହୁଏ । ଯଥା—କାଲି ଘରର ମତେ ଭଲ ଜାଣ ହଲାନେଇଁ । (କାଲି ଘରରେ ମୋତେ ଭଲ ଜଣା ହେଲାନାହିଁ ।)

ବିଭକ୍ତିର ନାମ ଶବ୍ଦ ଉତ୍ପତ୍ତିସ୍ଥଳ

(ମ. ଭା. ଆ. ରେ କର୍ତ୍ତୃବାଚ୍ୟ ଓ କର୍ମବାଚ୍ୟର ଏକୀଭୂତତା ଫଳରେ ପ୍ରା. ଭା. ଆ. ର କର୍ମବାଚ୍ୟକର୍ତ୍ତା କ୍ରମେ କର୍ତ୍ତୃବାଚ୍ୟ-କର୍ତ୍ତା ହୋଇଗଲା । ଯେପରି—ନରେଭିଃ (ନରୈଃ) କୃତମ୍—ନରେ କଲେ । )

ଦ୍ୱିତୀୟା କଇ, -କଇଁ, -କୈଁ,
-କେ, କୁଇ, -କୁଇଁ, ଏ ସମସ୍ତର ଉତ୍ପତ୍ତି ପାରସର୍ଗିକ ପଦ
-କୁ, କ 'କକ୍ଷେ'ରୁ ହୋଇଥିବା ଅନୁମାନ । ✻

ଦ୍ୱିତୀୟା -ଏ ମାଗଧୀ ପ୍ରାକୃତରେ ଅକାରାନ୍ତ ଶବ୍ଦ ପ୍ରଥମା ଏକବଚନରେ -ଏ
(ଏକବଚନ) ହୁଏ । ଯଥା—ପୁତ୍ରଃ > ପୁତ୍ତେ, ଜନଃ > ଜଣେ । କର୍ତ୍ତା ଓ କର୍ମର ଆକୃତିଗତ ସମାନତା ଫଳରେ ଏହି 'ଏ' ଓଡ଼ିଆରେ କର୍ମର ଚିହ୍ନ (ଦ୍ୱିତୀୟା ବିଭକ୍ତି) ରୂପେ ବ୍ୟବହୃତ ।

-ଏ ପ୍ରଥମା ବହୁବଚନ '-ଏ' କର୍ତ୍ତା ଓ କର୍ମର ଆକୃତିଗତ
(ବହୁବଚନ) ସମାନତା ଫଳରେ ଆସ୍ତା ବହୁବଚନରେ ମଧ୍ୟ ବ୍ୟବହୃତ ।
-ରେ ଷଷ୍ଠୀ -ର + ଦ୍ୱିତୀୟା ଏକବଚନ-ଏ
-ତେ ଉପରି > ଉପ୍ପରି > ଉପ୍ପି > ତଣ୍ଡି > ତଲ > ତେ †

---

✻ ପା, ଭା. ଆ. ରେ ବିଭକ୍ତି ଚିହ୍ନ ପ୍ରାତିପଦିକ ସହିତ ସଶ୍ଳିଷ୍ଟ ହୋଇ ରହୁଥିଲା । କାଳକ୍ରମେ କେତେକ ସଶ୍ଳିଷ୍ଟ ବିଭକ୍ତି ଚିହ୍ନ ଉଚ୍ଚାରଣରେ କ୍ଷୀଣ ହୋଇ ମ. ଭା. ଆ. ର ଶେଷ ସ୍ତରରେ ସମ୍ପୂର୍ଣ୍ଣ ଲୋପ ପାଇଗଲା । ଏହିପରି ବିଭକ୍ତିଯୁକ୍ତ ପଦ ଅବିଭକ୍ତିକ ହୋଇ-ଯିବା ଫଳରେ ବାକ୍ୟରେ କାରକସମ୍ପର୍କ ଅଭିବ୍ୟକ୍ତ କରିବା ସହଜ ହେଲା ନାହିଁ । ତେଣୁ ଅବିଭକ୍ତିକ ପଦର ପରେ ଅନ୍ୟ ପଦ ବ୍ୟବହାର କରାଯାଇ କାରକ ସମ୍ପର୍କ ଅଭିବ୍ୟକ୍ତ କରିବାକୁ ପଡ଼ିଲା । 'କକ୍ଷେ' ସମ୍ଭବତଃ ଏହିପରି ଏକ ପାରସର୍ଗିକ ପଦ ଥିଲା । ଏହାର ବିବର୍ତ୍ତନର ଯଥାସମ୍ଭବ ଧାରା—କକ୍ଷ > କକ୍ଖେ > କହେ > କଏ > କଇ ପ୍ରଭୃତି । ଅପଭ୍ରଂଶ (ମ. ଭା. ଆ. ଶେଷ ସ୍ତର)ରେ '-କେଁ'ର ବ୍ୟବହାର ରହିଛି ।

(ଆସ୍ତା - କୁ ପ୍ରଭୃତିର ଉତ୍ପତ୍ତି ସମ୍ପର୍କରେ ଭିନ୍ନ ବିଦ୍ୱାନ୍ ଭିନ୍ନ ମତ ପୋଷଣ କରିଛନ୍ତି । ସେଗୁଡ଼ିକର ସଂକ୍ଷିପ୍ତ ତଥ୍ୟ E. O. L. S. ପୁସ୍ତକର ୧୪୬ ପୃଷ୍ଠାରେ ଦ୍ରଷ୍ଟବ୍ୟ । )

† ଅଧିକରଣ କାରକ ଓ କର୍ମକାରକ ମଧ୍ୟରେ ଅନେକତ୍ର ଅର୍ଥଗତ ପାର୍ଥକ୍ୟ ରହେ ନାହିଁ । ଯେପରି, ଗଛରେ ଚଢ଼ିଲ, ଗଛକୁ ଚଢ଼ିଲ । ତେଣୁ 'ଉପରି' ପଦଜାତ

| ବିଭକ୍ତିର ନାମ | ଚିହ୍ନ | ଉତ୍ପତ୍ତିସୂତ୍ର |
| --- | --- | --- |
| | -ନ୍ତି, -ନ୍ତି | (ପ୍ରତ୍ୟୟ ଆଲୋଚନା ଦ୍ରଷ୍ଟବ୍ୟ, ପୃ. ୧୨୭) |
| ତୃତୀୟା | -ଏଂ, ଏ, -ଏଣ | ପ୍ରା. ଭା. ଆ. ତୃତୀୟା ଏକବଚନ '-ଏନ', '-ଏଣ' ରୁ ଉତ୍ପନ୍ନ । ଯଥା ଭୁଜେନ > ଓ ଭୁଜେଁ. (ଭୁଜେଂ), ଭୁଜେ; ଧର୍ମେଣ—ଓ ଧର୍ମେଣ । ମ. ଭା. ଆ. ରେ ପ୍ରା.ଭା.ଆ.ର -ଏନ-ଏଣ ହୋଇଥିଲା -ଏଣ ବା -ଏଣଂ । ଯଥା ପୁତ୍ତେଣ, ପୁତ୍ତେଣଂ (ପୁତ୍ରେଣ) |
| ତୃତୀୟା | -ରେ | ଷଷ୍ଠୀ-ର + ତୃତୀୟା ଏ |
| | -ରେଣ | ଷଷ୍ଠୀ-ର + ତୃତୀୟା-ଏଣ |
| ଚତୁର୍ଥୀ | -କଇ, -କଇଂ -କୁଇ, କୁଇଂ, କୁ, -କି | ପାରସର୍ଗିକ ପଦ 'କୃତେ'ରୁ ଉତ୍ପନ୍ନ ହୋଇଥିବା ସମ୍ଭବ । * (କୃତେ > କଏ, କଇ, କୁଇ, କୁ, କି ଇତ୍ୟାଦି) |
| | -ଏ | ଦ୍ୱିତୀୟା-ଏ ସହିତ ସମାନ । |
| ପଞ୍ଚମୀ | -ଉ, -ଉଂ, ହୁଂ | ପ୍ରା.ଭା.ଆ. ପଞ୍ଚମ୍ୟର୍ଥକ '-ତସ୍' ପ୍ରତ୍ୟୟରୁ ଉତ୍ପନ୍ନ । ଯଥା—(ତସ୍) ତଃ > ମ.ଭା.ଆ.—ଦୋ, ଦୁ > ଓ.-ଉ, ଉଂ, ହୁଂ ( ଗୃହତଃ > ଘରଦୋ > ଘରଦୁ > ଘରହୁଁ > ଘରୁ) † |

---

ଅଧିକରଣାତ୍ମକ ପାରସର୍ଗିକ ପଦ କର୍ମଚିହ୍ନରୂପେ ବ୍ୟବହୃତ ହେବା ଅସ୍ୱାଭାବିକ ନୁହେଁ । ବର୍ତ୍ତମାନ ମଧ୍ୟ କର୍ମଚିହ୍ନ '-ତେ'ର ମୂଳରେ ଅଧିକରଣ ଅର୍ଥ ନିହିତ ରହିଛି । ଯେପରି, **ମୋତେ** କହିଲା । (ମୋତେହିଁ ଅର୍ଥାତ୍ ମୋଠାରେ କହିଲା । )

* ଓଡ଼ିଆ ପ୍ରାଚୀନ ସାହିତ୍ୟରେ ଚତୁର୍ଥୀ ଅର୍ଥରେ 'କୃତେ' ପଦର ବ୍ୟବହାର ରହିଛି । ଯଥା—

ବିଶାଳ ମଖଶାଳକୃତେ ଘେନେ ଚନ୍ଦ୍ର ଅବନୀ (ବୈ.ବି. ୬-୪)

(ମଖଶାଳକୃତେ-ମଖଶାଳନିମନ୍ତେ)

ସୀତା ଶ୍ରୀରାମଚରିତ ଗୀତକୃତେ ଲାଳସ ଯେ (ବୈ.ବି ୧-୬)

( ଗୀତକୃତେ-ଗୀତ ନିମନ୍ତେ)

† ପଞ୍ଚମୀଚିହ୍ନରୂପେ 'ସୁ' ମଧ୍ୟ ବ୍ୟବହୃତ ହୁଏ । ଯଥା—ଏ ନାମ ବେଳସୁ (ବେଳସୁଁ) କରିଥିଲେ ଏତେ କଥା ଘଟିନଥାନ୍ତା । ଏହି 'ସୁଁ' ପ୍ରାକୃତ ପଞ୍ଚମୀଚିହ୍ନ 'ସୁଂତୋ' (ବଣେସୁଂତୋ—ବଣରୁ, ବାଉସୁଂତୋ—ବାୟୁରୁ ଇତ୍ୟାଦି)ରୁ ଉତ୍ପନ୍ନ ବୋଲି ମନେ ହୁଏ ।

| ବିଭକ୍ତିର ନାମ | ଚିହ୍ନ | ଉତ୍ପତ୍ତିସୂଚନା |
|---|---|---|
| | -ରୁ | ଷଷ୍ଠୀ-ର + ପଞ୍ଚମୀ-ଉ |
| ଷଷ୍ଠୀ | କର | ମ.ଭା.ଆ ବିଶେଷଣାତ୍ମକ ସମ୍ବନ୍ଧପ୍ରତ୍ୟୟ -କେର -ରୁ ଉତ୍ପନ୍ନ । † |
| ଷଷ୍ଠୀ | -କର | 'କେର'ର ସ୍ତ୍ରୀଲିଙ୍ଗ '-କେରି'ରୁ ଉତ୍ପନ୍ନ । କିନ୍ତୁ ଓଡ଼ିଆରେ '-କର' ଲିଙ୍ଗନିରପେକ୍ଷ । |
| | -କ,-ର | '-କେ'ର ର ସଂକ୍ଷିପ୍ତ ରୂପ । |
| | ରି | '-କେରି'ର ସଂକ୍ଷିପ୍ତ ରୂପ |
| ସପ୍ତମୀ | -ଇଂ,-ଇ | ପ୍ରା.ଭା.ଆ.-ସ୍ମିନ୍ > ମ.ଭା.ଆ. ମ୍ହି > ହିଁ > ଇଂ, ଇ * |
| | -ଏ | ସପ୍ତମୀ-ଇ > -ଏ । ପ୍ରା. ଭା. ଆ. ସପ୍ତମୀ '-ଏ' ( ଯଥା—ଗୃହେ, ଆକାଶେ ) ଦ୍ୱାରା ମଧ୍ୟ ପ୍ରଭାବିତ । |
| | -ଏଣ | ତୃତୀୟା ସହିତ ସମାନ । କରଣ ଓ ଅଧିକରଣ କାରକଦ୍ୱୟର ଯୋଗାଯୋଗ ଫଳରେ ତୃତୀୟା -ଏଣ ସପ୍ତମୀରୂପେ ବ୍ୟବହୃତ । |
| | -ରେ | ଷଷ୍ଠୀ-ର + ସପ୍ତମୀ-ଏ |
| | -ରେଣ | ଷଷ୍ଠୀ -ର + ସପ୍ତମୀ-ଏଣ |
| | -ତେ | ତୃତୀୟା-ତେ ସହିତ ସମାନ । |

† ମ.ଭା.ଆ.ରେ -କେର-ଥିଲା ଏକ ସମ୍ବନ୍ଧପ୍ରତ୍ୟୟ । ଏହା ଲିଙ୍ଗସାପେକ୍ଷ ଥିଲା । ଯଥା—ପୁତ୍ତାଣଂକେରେ ପିଅରେ (ପୁତ୍ରଙ୍କର ପିତା), ପୁତ୍ତାଣଂକେରି ମାଆ (ପୁତ୍ରଙ୍କର ମା) ପୁତ୍ତାଣଂକେରଂ ପୋତ୍ଥଅଂ (ପୁତ୍ରଙ୍କର ପୁସ୍ତକ) ଇତ୍ୟାଦି । ଏହି—କେର-କେତେକଙ୍କ ମତରେ ପାରସର୍ଗିକ ପଦ 'କୃତ' ରୁ, ଅନ୍ୟ କେତେକଙ୍କ ମତରେ 'କାର୍ଯ'ରୁ ଉତ୍ପନ୍ନ ।

* ପ୍ରା. ଭା. ଆ. ଶବ୍ଦରୂପର ବୈଚିତ୍ର୍ୟ ମ. ଭା. ଆ. ରେ ହ୍ରାସ ପାଇଲା ଏବଂ ଶବ୍ଦରୂପ କ୍ରମଶଃ ସରଳ ହେବାକୁ ଲାଗିଲା । ଏହି ଧାରାରେ ଏକ ଶବ୍ଦର ରୂପ ଅନ୍ୟ ଶବ୍ଦର ରୂପକୁ ପ୍ରଭାବିତ କଲା । ଯେପରି ଜଣସ୍ସ > ଜନସ୍ୟ, ମୁଣିସ୍ସ > ମୁନିସ୍ୟ (ମୁନେଃ), ବାଉଣୋ > ବାଉଣଃ, ବାଉଣୋ > ବାୟୁନଃ ( ବାୟୋଃ) ଇତ୍ୟାଦି । ସେହିପରି, ସର୍ବ-ନାମର ରୂପ ମଧ୍ୟ ଅନ୍ୟାନ୍ୟ ଶବ୍ଦର ରୂପକୁ ପ୍ରଭାବିତ କଲା । ଯଥା—ଧମ୍ମମ୍ହି < ଧର୍ମସ୍ମିନ୍ ( ଧର୍ମେ ), ଅଗ୍‌ଗିମ୍ହି < ଅଗ୍ନିସ୍ମିନ୍ ( ଅଗ୍ନୌ), ବାଉମ୍ମି < ବାୟୁସ୍ମିନ୍ ( ବାୟୌ) ଇତ୍ୟାଦି ।

## -ନ୍ତ, -ନ୍ତ ବିଭକ୍ତି ଶବ୍ଦର ଉତ୍ପତ୍ତିସ୍ଥଳ

ପ୍ରାଚୀନ ଓଡ଼ିଆ ସାହିତ୍ୟରେ କର୍ମ ଓ କର୍ତ୍ତାରେ ଶବ୍ଦରୂପେ ଏ ଦୁଇଟିର ବହୁଳ ବ୍ୟବହାର ଦେଖାଯାଏ ।

କର୍ମରେ—

ତୁ ସତ୍ୟଂ ଧାର୍ମିକ ଅଟୁ ଜ୍ଞାନବନ୍ତ
କାର୍ଯ୍ୟକାଳେ କମ୍ପା ନ ବୁଝୁ କଥାନ୍ତ ।
( ଦା: ଗ୍ରା:—ହରଧନୁ ଭଙ୍ଗ )

ନାନା ପକ୍ଷୀ କ୍ରୀଡ଼ା କରନ୍ତି ପୁଷ୍ପ ଫଳନ୍ତ ଖାଇ
(ବ୍ରମହଂସ—ଶବ୍ଦ ଗ୍ରନ୍ଥ)

କୃଷ୍ଣର ନୃତ୍ୟ ଗୋପେ ଦେଖି
ମିଳିଲେ ଘରନ୍ତ ଉପେକ୍ଷି ।
(ଭାଗବତ—୧୦ମ ସ୍କନ୍ଧ)

କୈରବନ୍ତ ରମଣ କରନ୍ତି। ଭ୍ରମରମାନେ ପଦ୍ମବନକୁ ଗମିଲେ ।
(ରୁ: ସୁ: ପୃଷ୍ଠା ୪୭)

ଐଶ୍ୱର୍ଯ୍ୟ ମାନନ୍ତ ସେ ମୋହନଦ୍ୱାରେ ମୋହିଲା ।
(ରୁ: ସୁ: ପୃଷ୍ଠା ୫)

ଏ ଦୁହିନ୍ତ ସୂକ୍ଷ୍ମ ବସ୍ତ୍ରଶ ଜଙ୍ଘରେ ପକାଇ······
(ରୁ: ସୁ: ପୃଷ୍ଠା ୩)

ଘର କରୁଛନ୍ତି ଭର୍ତ୍ତାନ୍ତ ଯେନ
ଦାଣ୍ଡ ଗୁଆଳୀ ବିଟପୀ କାମିନୀ ।
(ର: ମ: ୩-୧୫)

ଏହମନ୍ତ ସବୁନ୍ତ ସୁଖ
ଯୁବତୀକେ ଭୁଜଯୁଗ ମୃଗକେ ମୁଖ ।
(ର: ମ: ୭-୧୦)

କର୍ତ୍ତାରେ—

ଯାବତ୍‌ଜନ୍ମେ ତୁମ୍ଭେ ଆମ୍ଭର ଶତ୍ରୁରନ୍ତ ।
(ବନପର୍ବ ୧ମ ଖଣ୍ଡ ପୃ ୧୦୯)

ଭ୍ରମରନ୍ତ ପଦ୍ମେ ଲେଉଟି ଚୁମ୍ବିବାକୁ ସଲଜ୍ଜେ ମନ୍ଦମନ୍ଦ
ହୋଇ ହସିଲେ ।
(ରୁ: ସୁ: ପୃ ୭)

କ୍ଷୀରସାଗରେ ଶୟନ ଅନନ୍ତ
ମାଇ ଗୁହାରି କରିବା ଦେବକନ୍ତ । (ମ: ମ: ୧-୪୪)
ଏକ ଉପରେ ଆଉ କ ଅଛନ୍ତି
ବସିଲେ ସନ୍ତୁଷ୍ଟ ନୟନ ବୃନ୍ଦ । (ଗ:: ମ: ୧୭ ୨)

-ନ୍ତ ପରେ ଅନ୍ୟ ବିଭକ୍ତି ଚିହ୍ନ ମଧ୍ୟ ବ୍ୟବହୃତ ହୋଇଅଛି—

ତେଣୁ କରି ସମସ୍ତ ଲକ୍ଷଣ ମାନନ୍ତରେ ହୋଇବ ଆସମୁଦ୍ରାନ୍ତ ପୃଥ୍ୱୀରେ ଚକ୍ରବର୍ତ୍ତୀ । (ରୁ: ସୁ: ପୃ ୧୦୦)

ଏହି -ନ୍ତ, -ନ୍ତ ପଦାଶ୍ରୟୀ ପରସର୍ଗ '-ସନ୍ତ' (ପ୍ରା ଭା: ଆ: ଂଅସ୍ + ଶତୃ > ପୁଂ ସନ୍ > ମ:ଭା:ଆ: ସନ୍ତୋ > ଓ ସନ୍ତ)ରୁ ଉତ୍ପନ୍ନ ବୋଲି ମନେହୁଏ । ପ୍ରାଚୀନ ଆସାମୀ ଭାଷାରେ ମଧ୍ୟ ପଦାଶ୍ରୟୀ ପରସର୍ଗ (enclitic post position) ରୂପ -ହନ୍ତ,-ସନ୍ତ ର ବ୍ୟବହାର ଥିଲା । ସଂଖ୍ୟା ଶବ୍ଦରୁ ଏବଂ ସର୍ବନାମର ଉତ୍ସର୍ଗିକ୍ ରୂପରୁ ଏ ଦୁଇଟି ପ୍ରଯୁକ୍ତ ହେଉଥିଲା । ଯଥା— ଦୁଇହନ୍ତ (ଦୁଇ ଜଣ), ଯନହନ୍ତ (ଯେଉଁ ଜଣ), ଏ-ସନ୍ତ (ଏହି ଲୋକ) ଇତ୍ୟାଦି । ଆଧୁନିକ ଆସାମୀ ଭାଷାରେ ହନ୍ତ > ହାଁତ୍ ହୋଇ ଉପର୍ଯ୍ୟୁକ୍ତ ବ୍ୟବହାର ସୀମା ଅତିକ୍ରମ କରି ଏକ ବହୁବଚନ ପ୍ରତ୍ୟୟରେ ପରିଣତ ହୋଇଅଛି । (Assamese., Ist Formation and Development, page—624)

କଥିତ ଆସାମୀରେ ଏକୋଟି-ହାଁତ୍ (ନିର୍ଦ୍ଦିଷ୍ଟଭାବେ ଜଣେ), ଏକୋଖନ୍ ହାଁତ୍ (ନିର୍ଦ୍ଦିଷ୍ଟଭାବେ ଖଣ୍ଡେ), ଏଭଳି ବ୍ୟବହାର ମଧ୍ୟ ପ୍ରଚଳିତ । ଏହି ପଦାଶ୍ରୟୀ-ହାଁନ୍ତ୍ ପ୍ରାଚୀନ 'ଏ -ସନ୍ତ' ପ୍ରଭୃତି ପ୍ରୟୋଗର ଏକ ପ୍ରସାରିତ ତଥା ବିକଶିତ ରୂପ ବୋଲି ମନେହୁଏ । (ତତ୍ରୈବ ପୃ ୨୧୭)

ଓଡ଼ିଆ ନ ଏହି ପଦାଶ୍ରୟୀ ପରସର୍ଗ '-ସନ୍ତ'ରୁ ଉତ୍ପନ୍ନ ହୋଇଥିବା ଅନୁମାନ (-ସନ୍ତ > -ହନ୍ତ > -ଅନ୍ତ > -ନ୍ତ) । ସଂଖ୍ୟାନ୍ତ ପ୍ରାତିପଦିକରୁ ଏହା -ନ୍ତ (ଯଥା-ଦୁହିନ୍ତ) ହୋଇ କ୍ରମେ ଅନ୍ୟ ପ୍ରାତିପଦିକରୁ ମଧ୍ୟ ବ୍ୟବହୃତ ହୋଇଛି (ଯଥା-ସଭିନ୍ତ) ।

'ସନ୍ତ'ର ଅର୍ଥ ସତ୍ ବା ସାଧୁଲୋକ । ଏହି ଶବ୍ଦଟି ସମ୍ଭବତଃ ପ୍ରଥମେ ଶିଷ୍ଟମାନଙ୍କର ନାମ ସହିତ ମିଶି ବ୍ୟବହୃତ ହେଉଥିଲା । ଯଥା—ସାଧୁସନ୍ତ, ଦେବସନ୍ତ, ଋଷିସନ୍ତ, ବ୍ୟାସସନ୍ତ ଏବଂ ଏଭଳି ପ୍ରୟୋଗରେ ବହୁବଚନତ୍ୱ ସୂଚିତ ହେଉଥିଲା । କ୍ରମେ ସନ୍ତ > -ନ୍ତ ହୋଇ ଅନ୍ୟାନ୍ୟ ଶବ୍ଦରୁ ମଧ୍ୟ ପ୍ରସାରିତ ହେଲା । ଯଥା—ଅସୁରନ୍ତ (< ଅସୁରସନ୍ତ), ପଶୁନ୍ତ (< ପଶୁସନ୍ତ) । †

---

† ଶବ୍ଦର ପରବର୍ତ୍ତିତ ରୂପର ପ୍ରୟୋଗପ୍ରସାରଣ ଅଂଶ ନୁହେଁ । ଉଦାହରଣ ସ୍ୱରୂପ, ସାଧୁମାନବେ > ସାଧୁମାନେ, ଲୋକମାନବେ > ଲୋକମାନେ; ଏହାର ସାମଞ୍ଜସ୍ୟରେ ପଶୁମାନବେ > ପଶୁମାନେ, ପକ୍ଷୀମାନବେ > ପକ୍ଷୀମାନେ ।

# ପଞ୍ଚମ ଅଧ୍ୟାୟ

## ପାରସର୍ଗିକ ପଦ

### (ବିଭକ୍ତ୍ୟର୍ଥକ ପଦ)

ବିଭିନ୍ନ କାରକ-ବିଭକ୍ତି ଅର୍ଥରେ ଅନେକଗୁଡ଼ିଏ ପାରସର୍ଗିକ ପଦ ବ୍ୟବହୃତ ହୋଇଅଛି । ସେଗୁଡ଼ିକ ମଧ୍ୟରୁ କେତେକ ସବିଭକ୍ତିକ, କେତେକ ଅବିଭକ୍ତିକ ।

### ସବିଭକ୍ତିକ

କଡ଼କୁ (କଡ଼-କୁ), ନିମନ୍ତେ (ନିମିତ୍ତ > ନିମନ୍ତ-ଏ), ତୁଲେଣ (ତୁଲ-ଏଣ), ଆଗରେ (ଆଗ-ରେ) ଇତ୍ୟାଦି ।

### ଅବିଭକ୍ତିକ

ପାଖ, ଭିତର, କଡ଼, ବାହାର ଇତ୍ୟାଦି ।

ତଳେ ବିଭିନ୍ନ କାରକ-ବିଭକ୍ତି ଅର୍ଥରେ ପାରସର୍ଗିକ ପଦଗୁଡ଼ିକ ପ୍ରଦର୍ଶିତ ହେଲା ।

| ପାରସର୍ଗିକ ପଦ | କେଉଁ କାରକ ବିଭକ୍ତି ଅର୍ଥରେ ବ୍ୟବହୃତ |
|---|---|
| ଅର୍ଥେ | ଚତୁର୍ଥୀ |
| ଅଗ୍ରତେ | ଅଧିକରଣ |
| ଆଗେ, ଆଗରେ | ,, |
| ଆଡ଼େ | ,, |
| ଉପରେ | ,, |
| କଡ଼, କଡ଼କୁ | କର୍ମ, ଅଧିକରଣ |
| ଛାମୁରେ | ଅଧିକରଣ |
| ଜାଣି | ପ୍ରଥମା |
| ତଳେ | ଅଧିକରଣ |
| ତହିଁ, ତହିଁକି | କର୍ମ, ଅଧିକରଣ |
| ତହୁଁ | ଅପାଦାନ, ପଞ୍ଚମୀ |
| ତୁଲେ, ତୁଲେଣ | ତୃତୀୟା |
| ନିକଟେ | ଅଧିକରଣ |
| ନିମିତ୍ତେ, ନିମିତ୍ତ୍ୟେ, ନିମନ୍ତେ | ଚତୁର୍ଥୀ |
| ପର୍ଯ୍ୟନ୍ତେ | ଦ୍ୱିତୀୟା, ସପ୍ତମୀ |
| ପାଇଁ | ଚତୁର୍ଥୀ |

| ପାରସର୍ଗିକ ପଦ | କେଉଁ କାରକ-ବିଭକ୍ତି ଅର୍ଥରେ ବ୍ୟବହୃତ |
|---|---|
| ପାଖ, ପାଖରେ | ଅଧିକରଣ, କର୍ମ |
| ବିନୁ, ବିହୁନେ, ବିହୀନେ | ଦ୍ୱିତୀୟା |
| ବୋଲି | ପ୍ରଥମା, ଚତୁର୍ଥୀ, ପଞ୍ଚମୀ, ସପ୍ତମୀ |
| ଭିତର, ଭିତରକଇ | ଅଧିକରଣ, କର୍ମ |
| ମଧ୍ୟେ | ଅଧିକରଣ |
| ମେଳେ | ତୃତୀୟା |
| ଯାଏଁ (ଯାଏ) | ଦ୍ୱିତୀୟା, ସପ୍ତମୀ |
| ଯୋଗେ | ପଞ୍ଚମୀ |
| ଲାଗି | ,, |
| ସଙ୍ଗତେ | ତୃତୀୟା |
| ସହିତେ | ,, |
| ସନ୍ନିଧେ | ଅଧିକରଣ |

ଏଗୁଡ଼ିକ ମଧ୍ୟରୁ 'ବୋଲି', 'ଜାଣି' ପ୍ରକୃତ ଦୃଷ୍ଟିରୁ ଯୌଗିକ କର୍ମବାଚ୍ୟ-କ୍ରିୟା (କର୍ମବାଚ୍ୟ-କ୍ରିୟା ଦ୍ରଷ୍ଟବ୍ୟ); 'ଲାଗି' ଅସମାପିକା କ୍ରିୟା (ଅସମାପିକା କ୍ରିୟା ଦ୍ରଷ୍ଟବ୍ୟ)। ଅନ୍ୟଗୁଡ଼ିକ ବିଶେଷ୍ୟ, ବିଶେଷଣ ବା ସର୍ବନାମ। ଦିଙ୍ମାତ୍ର ଉଦାହରଣ—

---

ବର୍ତ୍ତମାନ, କରଣ-ତୃତୀୟା ଅର୍ଥରେ 'ଦ୍ୱାରା', 'ଦେଇ', 'କର୍ତ୍ତୃକ' ଏହି ପାରସର୍ଗିକ ପଦଗୁଡ଼ିକ ପ୍ରଚଳିତ। ସଂକଳିତ ଗ୍ରନ୍ଥାଂଶରେ ଏଗୁଡ଼ିକ ଦୃଷ୍ଟିଗୋଚର ହୁଏ ନାହିଁ। 'ଦ୍ୱାରା' ଏକ ତତ୍ସମ (ସଂସ୍କୃତ) ପାରସର୍ଗିକ ପଦ। ଦେଇ<ଦେହି<ଦେହେ (ଦେହ+୩ୟା-ଏ)।

ସଂସ୍କୃତରେ 'କର୍ତ୍ତୃ' ଶବ୍ଦରୁ 'କ' ପ୍ରତ୍ୟୟ ଯୋଗରେ 'କର୍ତ୍ତୃକ' ଗଠିତ। ଏହାର ବ୍ୟବହାର ଯଥା—ତତ୍କର୍ତ୍ତୃକଂ କାର୍ଯ୍ୟମ୍।

'ଯେଣି' 'ନେଇ' ଏ ଦୁଇଟି ପାରସର୍ଗିକ ପଦ କରଣ-ତୃତୀୟା ଅର୍ଥରେ ବ୍ୟବହୃତ ହେଉଅଛି। ଦୁଇଟିଯାକ ପ୍ରକୃତତଃ ଅସମାପିକା କ୍ରିୟା।

ଦେଶର ଏ ପଣ୍ଡିତ ଯେଣି ଆମେ ଉଦ୍‌ବିଗ୍ନ।

(ପଣ୍ଡିତ ଯେଣି—ପଣ୍ଡିତରେ, ପଣ୍ଡିତଦ୍ୱାରା)

ତାଙ୍କ ବିଷୟ ନେଇ ତୁମର ମୁଣ୍ଡବ୍ୟଥା କାହିଁକି?

(ବିଷୟ ନେଇ—ବିଷୟରେ, ବିଷୟଦ୍ୱାରା)

| ବିଶେଷ୍ୟ | ବିଶେଷଣ | ସର୍ବନାମ |
|---|---|---|
| ଅର୍ଥେ (ଅର୍ଥ-ଏ) | ବିହୁନେ (ବିହୀନ>ବିହୁନ-ଏ) | ତହୁଁ |
| ଯୋଗେ (ଯୋଗ-ଏ) | ତୁଲେଣ (ତୁଲ୍ୟ>ତୁଲ-ଏଣ) | ତହିଁ |

ପାରସର୍ଗିକ ପଦ ଗୁଡ଼ିକର ପ୍ରୟୋଗ ସ୍ଥଳରେ ପ୍ରାତିପଦିକ ଏକବଚନରେ ଥିଲେ ଷଷ୍ଠ୍ୟନ୍ତ ଏବଂ ବହୁବଚନରେ ନିତ୍ୟ ଷଷ୍ଠ୍ୟନ୍ତ ହୋଇଛି ।

(କ) ଏକ ବଚନରେ ଷଷ୍ଠ୍ୟନ୍ତ—

ଦୋହିତା-ର ପାଇଁ — ହୋଇବା-ର ନିମନ୍ତେ
ରୁଦ୍ର-ର ତହୁଁ — କନ୍ୟା-ର ଆଗରେ
କଟି-ର ତଳେ — ନଗ୍ର-ର ବାହାର

(ଖ) ଏକ ବଚନରେ ଷଷ୍ଠୀର ଅଭାବ—

ଶାପଯୋଗେ — ବରଷ ପର୍ଯ୍ୟନ୍ତେ
ସ୍ୱାମୀପାଶ — କଳଙ୍କ ଜାଣି
ନିର୍ଗୁଣ ତହୁଁ — ଶଙ୍କର ବୋଲି
କର୍ମନାଶ ନିକଟେ — ଯୋଜନଗନ୍ଧା ତୁଲେ

(ଗ) ବହୁବଚନରେ ନିତ୍ୟ ଷଷ୍ଠ୍ୟନ୍ତ—

ବଧୂଙ୍କ ଅଗ୍ରତେ — ଭୀଷ୍ମ-ଙ୍କର ତହୁଁକ
ସ୍ୱାମୀ-ଙ୍କର ପାଶ — କୁମାରୀ-ମାନଙ୍କ ତୁଲେ

---

'ଲାଗି' ପାରସର୍ଗିକ ପଦ ଚତୁର୍ଥୀ ଓ ପଞ୍ଚମୀ ଅର୍ଥରେ ବ୍ୟବହୃତ ହୁଏ—

ଦେଶ ଲାଗି ସେ ବହୁକଷ୍ଟ ବରଣ କଲେ । (୪ର୍ଥୀ)
ତୁମ ଆଚରଣ ଲାଗି ମୁଁ ଦୁଃଖିତ । (୫ମୀ)

ପାଇଁ, ନିମନ୍ତେ ପ୍ରଭୃତି ଅନ୍ୟାନ୍ୟ ଚତୁର୍ଥୀଦ୍ୟୋତକ ପାରସର୍ଗିକ ପଦ ମଧ୍ୟ ଏହିପରି ୫ମୀ ଅର୍ଥରେ ବ୍ୟବହୃତ ହୁଏ ।

'ହେତୁ' ଓ 'ଯୋଗୁଁ' ପାରସର୍ଗିକ ପଦ ଦୁଇଟି ପଞ୍ଚମୀଦ୍ୟୋତକ । ଯଥା—

ଅନାବୃଷ୍ଟି ହେତୁ/ଯୋଗୁଁ ଫସଲ ହାନି ହେଲା ।

# ଷଷ୍ଠ ଅଧ୍ୟାୟ

## ବଚନ

### ବିଶେଷ୍ୟର ବଚନ

ସାଧାରଣଭାବେ ବିଶେଷ୍ୟର ଏକବଚନ-ଅଭିବ୍ୟକ୍ତି ନିମନ୍ତେ କୌଣସି ପ୍ରତ୍ୟୟ ବା ପଦର ବ୍ୟବହାର ନାହିଁ । କିନ୍ତୁ ନିର୍ଦ୍ଦିଷ୍ଟଭାବେ ଏକବଚନ ବୁଝାଇବା ନିମନ୍ତେ ପ୍ରତ୍ୟୟ ବା ପଦର ସାହାଯ୍ୟ ନିଆଯାଇଅଛି ।

ପ୍ରତ୍ୟୟ—-ଏ (-ୟେ), -କ

ପଦ—ଏକ, ଗୋଟିୟେ, ଗୋଟାୟେ, ଖଣ୍ଡେ, ଖଣ୍ଡିୟେ,

-ଏ (-ୟେ)

ସବନରୁ ଯୋଗ ପୁରୁଷେ ଉତପନ ୭୮ । ୨

(ପୁରୁଷ-ଏ = ପୁରୁଷେ)

ମୂର୍ଗାକ୍ଷି ବୋଲଣ ବୋହିତାଏ ଗାହାଳ ୮୬ । ୨

ବାଟିୟେ ଚଷିଣ ପଉଟିୟେ ବଅନ୍ତ ସଞ୍ଜା ୧୫୪୨ । ୧

କରେଣ ପିନାକସମାନେ ଧନୁୟେ ୨୦୩ । ୧

ଏହି-ଏ (-ୟେ) ମାଗଧୀ ପ୍ରାକୃତରେ ପ୍ରଥମା ଏକବଚନ ରୂପରୁ ଉତ୍ପନ୍ନ । ପୁରୁଷଃ >ମା. ପ୍ରା. ପୁଲିଶେ, ଜନଃ >ମା, ପ୍ରା. ଜଣେ ଇତ୍ୟାଦି)

-କ

ସେ ଜନକ ବାଟ ଗୃହଂକ୍ତ ନରପତି ୭୨୩ । ୧

ବାଟିକେ ଚଳାୟେ ଦେଇ ନ୍ୟନ୍ତ ଦୂର ଗଣି ୭୧ । ୨

(ବାଟି-କ + ସପ୍ତମୀ-ଏ)

ଚଛୁକେ ଆନନ୍ଦେ ଚଛୁକେ ବିଷାଦେ ବହଇ ପାଣି ୫୮୯ । ୨

(ଚଛୁ-କ + ସପ୍ତମୀ-ଏ)

ଏହି -କ ସମ୍ଭବତଃ '-ଏକ'ର ଅବଶେଷ । ଯଥା—ଜନ + ଏକ > ଜନେକ > ଜନକ; ଜଣ + ଏକ > ଜଣେକ > ଜଣକ । କ୍ରମେ '-କ' 'ଏକ'ରୁ ସଂଶ୍ଳିଷ୍ଟ ହୋଇ ବ୍ୟବହୃତ ହେଲା । ଯଥା—ବାଟି-କ, ଚଛୁ -କ ଇତ୍ୟାଦି ।

-ଏକ ( -ୟେକ)

ସଇନ୍ଦ୍ର ପୁତ୍ରେକ ହୋଇଲା ଉତପତି ୯୧୯ । ୧

(ପୁତ୍ର-ଏକ = ପୁତ୍ରେକ)

କନ୍ୟାୟେକ ଜନ୍ମ କୋଶଲ ନୃପତି ୮୭ । ୨

ଗୋଟିୟେ (ଗୋଟି-ଏ)

ଚିତ୍ତ ବିଳବିଳା ସ୍ୱେଧାନ୍ତ ପୁଣ ଗୋଟିଏ ୫୦୧ । ୨

ଗୋଟାଏ (ଗୋଟା-ଏ)

ଅରେକ ଭୁଜେ ଶୋହଇ ତ୍ରିଶୂଳ ଗୋଟାଏ ୨୦୩ । ୨

ଖଣ୍ଡେ (ଖଣ୍ଡ-ଏ)

ଘର ଖଣ୍ଡେ କରଅଛୁଂ ସେହୁଛନ୍ତି ଗ୍ରନ୍ଥ ବ ୩୦୮ । ୨

ଖଣ୍ଡିଏ (ଖଣ୍ଡି-ଏ)

ଅଶ୍ରମ ଖଣ୍ଡିଏ କଲେ ନଗର ବାହାର ୧୩୬୯ । ୨

ପ୍ରକୃତରେ ଗୋଟିଏ, ଗୋଟାଏ, ଖଣ୍ଡେ, ଖଣ୍ଡିଏ—ଏଗୁଡ଼ିକରେ କେବଳ '-ଏ' ଅଂଶଟି ଏକବଚନ ଜ୍ଞାପକ ପ୍ରତ୍ୟୟ । ଗୋଟି, ଗୋଟା, ଖଣ୍ଡ, ଖଣ୍ଡି—ଏଗୁଡ଼ିକ ପଦାଶ୍ରୟୀ ନିର୍ଦ୍ଦେଶକ । (ପଦାଶ୍ରୟୀ ନିର୍ଦ୍ଦେଶକ ଦ୍ରଷ୍ଟବ୍ୟ) ବହୁବଚନରେ ମଧ୍ୟ ଏଗୁଡ଼ିକ ବ୍ୟବହୃତ ହୋଇପାରେ । ଯଥା—

ପାଞ୍ଚ ଗୋଟି, ପାଞ୍ଚ ଖଣ୍ଡି ଇତ୍ୟାଦି ।

ସଙ୍କଳିତ ଗ୍ରନ୍ଥାଂଶରେ ମଧ୍ୟ ଏଭଳି ବ୍ୟବହାର ରହିଛି—

ବେନିଗୋଟି ଦୋହିତା ୪୯୬ । ୨

ବେନି ଜାନୁଗୋଟି ୧୪୪୬ । ୨

ଏକବଚନଜ୍ଞାପକ -ଏ ନିର୍ଦ୍ଦିଷ୍ଟ ପରିମାଣ ବୁଝାଇବା ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ । ଯଥା—ମନ୍ଦା-ଏ, ମଣ୍ଡ-ଏ, ଆଞ୍ଜୁଳା-ଏ, ଆଞ୍ଜୁଳି-ଏ, ଅଣ୍ଟୁ-ଏ, ଗୁଣ୍ଡ-ଏ, ବେକ-ଏ = ବେକେ ଇତ୍ୟାଦି ।

'ଗୋଟିଏ' ଆଦର-ଅର୍ଥ ଏବଂ 'ଗୋଟାଏ' ଅନାଦର-ଅର୍ଥ ସୂଚାଏ । 'ମନ୍ଦାଏ'ର ଆଦର ସୂଚକ 'ମଣ୍ଡଏ' ।

ଏକବଚନଜ୍ଞାପକ ପ୍ରତ୍ୟୟ ବା ପଦ ବିଶେଷ୍ୟର ପୂର୍ବରେ ଓ ପରେ ମଧ୍ୟ ବ୍ୟବହୃତ ହୋଇଅଛି ।—

ସ୍ୱିଷ୍ଣୁ ହପୂଜଲେ ଆରେକ ଅମ୍ବୁଜେ ୪୪୭ । ୨

(ଆର-ଏକ = ଆରେକ, ଅମ୍ବୁଜ-ଏ = ଅମ୍ବୁଜେ)

ଏଭଳି ପ୍ରୟୋଗ ପଦରେ ମିତ୍ରାକ୍ଷର ଅନୁରୋଧରେ ହୋଇଛି ବୋଲି ବୁଝାଯାଇପାରେ ।

ବିଶେଷ୍ୟର ବହୁବଚନ-ଅଭିବ୍ୟକ୍ତି ବିଭିନ୍ନ ପ୍ରକାରେ ହୋଇଅଛି ।—

(କ) ବହୁବଚନଜ୍ଞାପକ ପ୍ରତ୍ୟୟସଂଯୋଗ ଦ୍ୱାରା ।

(ଖ) ବହୁବଚନଜ୍ଞାପକ ପଦପ୍ରୟୋଗ ଦ୍ୱାରା ।

(ଗ) ସଂଖ୍ୟାବାଚକ ପଦପ୍ରୟୋଗଦ୍ୱାରା ।

(ଘ) ବିଶେଷ୍ୟ ବା ବିଶେଷଣର ଦ୍ୱିରୁକ୍ତିଦ୍ୱାରା ।

## (କ) ବହୁବଚନଜ୍ଞାପକ ପ୍ରତ୍ୟୟ

### -ମାନ

ସନ୍ତାନ ନ ଥିଲେ ତୁଟଇ ଧର୍ମମାନ ୬୨୮ । ୨
ଏମାନ ଯେତେକ ଗ୍ରହ ମୋହ ହଂସା ୨୬୮ । ୮
ହେନ୍ତୁ ଯୋଗାଡ଼ମାନ ଭକ୍ଷିଲେ କନ୍ୟାଜାତ ୬୨୩ । ୨

ବିଭକ୍ତିପ୍ରୟୋଗ ସ୍ଥଳରେ '-ମାନ' ପ୍ରାତିପଦିକ (ମୂଳ ଶବ୍ଦ) ଓ ବିଭକ୍ତିଚିହ୍ନ, ଉଭୟର ମଝିରେ ରହୁଅଛି ।—

ରାଜାମାନେ ଭୋଜନ କରନ୍ତି ଅନେକ ସମ୍ଭବେ । ୪୭୩ । ୨
(ରାଜା-ମାନ-ଏ=ରାଜାମାନେ)
ବିଚିତ୍ରବାକ ପାତେକ ସ୍ନେହ ସଙ୍ଗ ଦୁଷ୍ଟକୁଟମାନେ ୪୫ । ୨ *
(ଦୁଷ୍ଟକୁଟ-ମାନ-ଏ=ଦୁଷ୍ଟକୁଟମାନେ)
କୁମାରମାନଙ୍କ ସଙ୍ଗେ ଖେଳନ୍ତି କୁନ୍ତୋଦ୍ଭଲୀ ୧୮୩ । ୨
(କୁମାର-ମାନଂ-କ=କୁମାରମାନଙ୍କ) **
ସ୍ନେହସନେକ ବାଞ୍ଛା ଯତିଶ୍ୱମାନଙ୍କର କଥା ୧୪୦୩ । ୨
(ଯତିଶ୍ୱ-ମାନଂ-କର=ଯତିଶ୍ୱମାନଙ୍କର)
ସପ୍ରେମର କର ଆଶିଷି କ ଦେବତାମାନଙ୍କୁ ୧୮୫ । ୨
(ଦେବତା-ମାନଂ-କ-କୁ=ଦେବତାମାନଙ୍କୁ) ***

### -ଯାକ

ସଂସାରଯାକ ନନ୍ଦା କରନ୍ତି ତୋତେ ୩୨୯ । ୨
ପିଠାଖିରଯାକ ନେଇ ପୁରେଇଲେ ସଭ୍ୟରେ ୧୨୯୫ । ୮

## (ଖ) ବହୁବଚନଜ୍ଞାପକ ପଦ

ଏଗୁଡ଼ିକୁ ସାଧାରଣତଃ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇପାରେ ।—

ଅନିର୍ଦ୍ଦିଷ୍ଟବାଚକ—ଗୁଡ଼ଏ, ଗୁଡ଼ାଏ ଲେଖାଏ

---

* '-ମାନେ' ସାଧାରଣତଃ ପ୍ରାଣିବାଚକ କର୍ତ୍ତାର ବହୁବଚନଜ୍ଞାପକ । କିନ୍ତୁ 'ଦୁଷ୍ଟକୁଟମାନେ' ଏଥିରେ କ୍ଲୀବଲିଙ୍ଗ କର୍ତ୍ତାରେ ମଧ୍ୟ '-ମାନେ' ଲାଗିଛି ।

** ଷଷ୍ଠୀ-ଙର, -କର, -କ ଯୋଗରେ ପ୍ରାତିପଦିକ ଅନୁନାସିକ ହୁଏ । (ବିଭକ୍ତି-ବିଶ୍ଳେଷଣ ଦ୍ରଷ୍ଟବ୍ୟ) 'ମାନ' ମୂଳ ଶବ୍ଦ ସହିତ ମିଶିଯାଉଥିବାରୁ ଅର୍ଥାତ୍ ମୂଳ ଶବ୍ଦ ଓ '-ମାନ' ଉଭୟ ମିଶି ପ୍ରାତିପଦିକ ହେଉଥିବାରୁ ତାହା ଏସ୍ଥଳରେ ଅନୁନାସିକ (-ମାନଂ) ହୋଇଯାଏ ।

*** ପାରସର୍ଗିକ ବିଭକ୍ତିଚିହ୍ନ ବହୁବଚନରେ ଷଷ୍ଠ୍ୟନ୍ତ ପ୍ରାତିପଦିକରୁ ଲାଗିଥାଏ । (ପୃଷ୍ଠା ୧୩୧ ଦ୍ରଷ୍ଟବ୍ୟ) ମାନଂ-କ=ମାନଙ୍କ-କୁ=ମାନଙ୍କୁ ।

ସମଷ୍ଟି ବାଚକ—ଗଣ, ବର୍ଗ, ମାଳ, ପଟଳ

ବିଶେଷଣ—ବହୁତ, ଅନେକ, ନାନା ('ନାନା' ସଂସ୍କୃତରେ ଅବ୍ୟୟ, କିନ୍ତୁ ଓଡ଼ିଆରେ ବିଶେଷଣ )

ସର୍ବନାମ—ସମସ୍ତ, ସର୍ବ, ସବୁ, ସକଳ

ସର୍ବନାମିକ ବିଶେଷଣ—ଯେତେ, କେତେ

-ଗୁଡ଼ିଏ ( ଗୁଡ଼ି-ଏ )

ପାଣି ଘଟ ଗୋଟିଏ ଫୁଲ ଗୁଡ଼ିଏ ଆଣିବ । ୧୩୨୬ । ୨

-ଗୁଡ଼ାଏ ( ଗୁଡ଼ା-ଏ )

ବିଭୂତିଗୁଡ଼ାଏ ମେଦଇ ହସ୍ତ କରି ୧୩୨୪ । ୧

-ଲେଚାଏ ( ଲେଚା-ଏ )

ବାଲିଗୁଡ଼ିଏ କୁଢ଼ାଇ ପଥଲେଚାଏ ଦେଇ ୧୩୯୫ । ୧

ପ୍ରକୃତରେ ଗୁଡ଼ିଏ, ଗୁଡ଼ାଏ, ଲେଚାଏ, ଏସବୁରେ 'ଗୁଡ଼ି' 'ଗୁଡ଼ା' ଓ 'ଲେଚା' ହିଁ ବହୁବଚନଜ୍ଞାପକ ପ୍ରତ୍ୟୟ ଏବଂ '-ଏ' ଅଂଶଟି ପ୍ରଥମାବହୁବଚନ ବିଭକ୍ତିଚିହ୍ନ । †

ଅନ୍ୟାନ୍ୟ ବହୁବଚନଜ୍ଞାପକ ପଦର ଦିଗ୍ ମାତ୍ର ଉଦାହରଣ—

ବୋଲନ୍ତି ସୁରଗଣେ ଆମ୍ଭେ ବିଷ୍ଣୁଙ୍କର ଦୂତ । ୫୧୧ । ୨

ମେଘମାଳ ସହିତେ ନୃପତି ହେମଚନ୍ଦ୍ର ୧୨୬ । ୧

ଅନେକ ଚାରେ ଯେ ସ୍ଥୂଳପଟଳେ ୨୭୫ । ୧

ହରଲେ ଯେତେକ ପାତେକ କହ ମୁନି । ୮୯୪ । ୨

( ଗ ) ସଂଖ୍ୟାବାଚକ ପଦ

ଚଉଷଠି ପୁଣି ଯେତେକ ଅମରଗଣ ୧୨୨ । ୧

ନବକୋଟି କାତ୍ୟାନ ଯାହାର ଶରୀରୁ ଉପୁଜି । ୫୬୨ । ୨

(ଘ) ବିଶେଷ୍ୟ ବା ବିଶେଷଣର ଦ୍ୱିରୁକ୍ତି

ଦେଖସି ଯାଇ ରୁ ଯେ ଭ୍ରମିଣ ଠାବେ ଠାବେ । ୧୯୧ । ୨

---

† ବର୍ତ୍ତମାନ, 'ଗୁଡ଼ିଏ' ଶବ୍ଦସଦୃଶ ପିଣ୍ଡି ପ୍ରାତିପଦିକର ଅନ୍ତର୍ଗତ ମଧ୍ୟ ହେଲଣି ଏବଂ ସେହି ପ୍ରାତିପଦିକରୁ ବିଭକ୍ତିଚିହ୍ନ ପ୍ରଯୁକ୍ତ ହେଲଣି । ଯଥା—

ଫଳ-ଗୁଡ଼ିଏ-ରୁ, ପଥର-ଗୁଡ଼ାଏ-ରେ ଇତ୍ୟାଦି ।

ପୁନଶ୍ଚ, 'ଗୁଡ଼ି' 'ଗୁଡ଼ା' ଏବଂ ସେଥିରୁ ସ୍ୱାର୍ଥିକ-କ ପ୍ରତ୍ୟୟ ଯୋଗରେ ଗଠିତ 'ଗୁଡ଼ିକ' 'ଗୁଡ଼ାକ'—ଏହି ସବୁଗୁଡ଼ି ବହୁବଚନ ଜ୍ଞାପକ ପ୍ରତ୍ୟୟ ସାଧାରଣତଃ କ୍ଲୀବଲିଙ୍ଗ ଶବ୍ଦରୁ ବ୍ୟବହୃତ ହୁଏ । ଯଥା—

ଫଳ-ଗୁଡ଼ି, ଫଳ-ଗୁଡ଼ିକ, ଫଳ-ଗୁଡ଼ି-ରୁ, ଫଳ-ଗୁଡ଼ିକ-ରୁ ପଥର-ଗୁଡ଼ା, ପଥର-ଗୁଡ଼ାକ, ପଥର-ଗୁଡ଼ା-ରୁ, ପଥର-ଗୁଡ଼ାକ-ରୁ । ଏଭଳି ବ୍ୟବହାର ସକଳିତ ଗ୍ରନ୍ଥରେ ନାହିଁ ।

ରସ୍ମିଙ୍କର ବସନମାନ ଖଣ୍ଡି ଖଣ୍ଡି କରି ପକାଯ଼େ ଶେ । ୩୧୬ । ୬

କେତେକ ସ୍ଥଳରେ ବିଶେଷ୍ୟର ପରେ ଏବଂ ପୂର୍ବରେ ଓ ପରେ ଏକାଧିକ ବହୁବଚନ ଜ୍ଞାପକ ପ୍ରତ୍ୟୟ ବା ପଦ ବ୍ୟବହୃତ ହୋଇଅଛି ।—

ଗଣିକା ଗଣମାନେ ହସନ୍ତି ହୁଳହୁଳି । ୫୮୧ । ୬

**ଅନେକ ବୃନ୍ଦ ପଟଳ** ଗଙ୍ଗାକୁ କରନ୍ତି ବାହନ ୬୮୫ । ୧

ଜାତି ଅର୍ଥରେ ଏକବଚନ

ସଂସାର **ଜନର** ରୁ ବହୁତ ପାପ ଧ୍ୱଂସୁ । ୬୪ । ୬

(ଜନର-ଜନମାନଙ୍କର)

ସୋମବଂଶ ରାଜ୍ୟେ **ପରଜା** ଉଦ୍ଧାରିଲାଇ ଯେବଣ କୃଷ୍ଣ ୧୭୧ । ୧

(ପରଜା – ପରଜାମାନେ)

## ( ସପ୍ତମ ଅଧ୍ୟାୟ )

### ସର୍ବନାମର ବଚନ

ପ୍ରଥମ ପୁରୁଷ ଓ ଦ୍ୱିତୀୟ ପୁରୁଷ ସର୍ବନାମଦ୍ୱୟର ଏକବଚନ ଋଜୁରୂପଠାରୁ ବହୁବଚନ-ଋଜୁରୂପ ସମ୍ପୂର୍ଣ୍ଣ ପୃଥକ୍ ଏବଂ ଏକବଚନ ତିର୍ଯ୍ୟକ୍ ରୂପଠାରୁ ବହୁବଚନ-ତିର୍ଯ୍ୟକ ରୂପ ସମ୍ପୂର୍ଣ୍ଣ ପୃଥକ୍ । * ତେଣୁ ପ୍ରଥମ ପୁରୁଷ ଓ ଦ୍ୱିତୀୟ ପୁରୁଷ ସର୍ବନାମର ବଚନ ଅଭିବ୍ୟକ୍ତି ସୁସ୍ପଷ୍ଟ ।

#### ପ୍ରଥମ ପୁରୁଷ ସର୍ବନାମ

| | ଏକବଚନ | ବହୁବଚନ |
|---|---|---|
| ଋଜୁରୂପ | ମୁଁ | ଆମ୍ଭେ |
| ତିର୍ଯ୍ୟକ୍‌ରୂପ | ମୋହୋ, ମୋହ, ମୋ | ଆମ୍ଭ |

#### ଦ୍ୱିତୀୟ ପୁରୁଷ ସର୍ବନାମ

| | ଏକବଚନ | ବହୁବଚନ |
|---|---|---|
| ଋଜୁରୂପ | ତୁ | ତୁମ୍ଭେ |
| ତିର୍ଯ୍ୟକରୂପ | ତୋହୋ, ତୋହ, ତୋ | ତୁମ୍ଭ |

କିନ୍ତୁ ଅନ୍ୟ ସମସ୍ତ ସର୍ବନାମର ଏକବଚନ-ଋଜୁରୂପ ଓ ବହୁବଚନ-ଋଜୁରୂପ ସମାନ । ସେହିପରି, ଏକବଚନ-ତିର୍ଯ୍ୟକ୍‌ରୂପ ଓ ବହୁବଚନ ତିର୍ଯ୍ୟକ୍‌ରୂପ ମଧ୍ୟ ସମାନ । ଦୃଷ୍ଟାନ୍ତ ମାତ୍ର ଉଦାହରଣ*—

---

* ଋଜୁରୂପ — Direct form
ତିର୍ଯ୍ୟକ୍‌ରୂପ — Oblique form

## ଦୂରନିର୍ଦ୍ଦେଶକ-ସମ୍ବନ୍ଧସଂପର୍କ ସର୍ବନାମ

| | ଏକବଚନ | ବହୁବଚନ |
|---|---|---|
| ମୂଳରୂପ | ସେ | ସେ |
| ତିର୍ଯ୍ୟକ୍‌ରୂପ | ତାହା, ତା | ତାହା, ତା |

ମୂଳରୂପର ବଚନ ବାକ୍ୟର କ୍ରିୟାରୁ ଅଭିବ୍ୟକ୍ତ ହୁଏ । ଯଥା—

ଋଷିଙ୍କର ସଙ୍ଗତେ ସେ ଲଗାଇଲା କଳି । ୩୫୦ । ୨

(ସେ-ଏକବଚନ)

ବଳବନ୍ତ ଭାଗ୍ୟବନ୍ତ ସେ ଅନନ୍ତ ଜଗଜ୍ଜଣା । ୧୪୮୪ । ୨

(ସେ-ବହୁବଚନ)

କେହୁ ମୋର କନ୍ୟାକୁ ବରଣ ନୋହିଲା । ୧୪୮ । ୨

(କେହୁ-ଏକବଚନ)

ଆବର ତାହା ତେଜ କେହୁ ସହି ନ ପାରିଲେ । ୧୧୫ । ୨

(କେହୁ-ବହୁବଚନ)

ତିର୍ଯ୍ୟକ୍ ରୂପର ଏକବଚନ ତାହାର ନିରନୁନାସିକତାରୁ ଏବଂ ବହୁବଚନ ଅନୁନାସିକତାରୁ ବ୍ୟକ୍ତ ହୁଏ । ଯଥା—

ତାହାକୁ ପ୍ରଦାନ ସେ ହୋଇଲେ ଯଥାର୍ଥ । ୮୭ । ୧

(ତାହାକୁ—ଏକବଚନ)

ତାହାଙ୍କୁ ଚୁମ୍ବନ ଦଅନ୍ତି ରତି ମଦନ ଆରତେ । ୨୧୪ । ୨

(ତାହାଙ୍କୁ—[ ତାହାଂ-କ-କୁ ]—ବହୁବଚନ)

ପୋଡ଼ୁ ଏହାର ଘର ବାହାର ହୋଇ ଯିବ । ୩୨୦ । ୨

(ଏହାର—ଏକବଚନ)

ଏହାଙ୍କର ପୁତ୍ର ସେ ବ୍ୟାସ ବାଲ୍ମୀକେ । ୧୫୩୩ । ୧

(ଏହାଙ୍କର [ଏହାଂ-କର]—ବହୁବଚନ) †

ସର୍ବନାମର ବହୁବଚନ ରୂପ ଅନେକସ୍ଥଳେ ସମ୍ମାନସୂଚକ ଏକବଚନରେ ବ୍ୟବହୃତ ହୋଇଅଛି ।—

ତପୋଧନ ଲୋକ ଆମ୍ଭେ ନାଚିବ ବସିଲେ ତହୁଁ । ୯୭୦ । ୨

(ଆମ୍ଭେ—ମୁଁ)

---

† -କ, -କର, -କର ଏ ତିନୋଟି ଷଷ୍ଠୀ ଚିହ୍ନ ଯୋଗରେ ପ୍ରାଚୀନଭାବ ଅନୁନାସିକ ହୋଇଯାଏ ବୋଲି ଆଗରୁ ଦର୍ଶାଯାଇଅଛି । ପୃଷ୍ଠା ୧୧୪ ଦ୍ରଷ୍ଟବ୍ୟ ।

## କ୍ରିୟାର ବଚନ

ଅବଶ୍ୟକ କର୍ତ୍ତାର ବଚନ କ୍ରିୟାର ବଚନଦ୍ୱାରା ଅଭିବ୍ୟକ୍ତ । (କର୍ତ୍ତା ୧ମ ଅଧ୍ୟାୟ ଦ୍ରଷ୍ଟବ୍ୟ)

କ୍ଲୀବଲିଙ୍ଗ କର୍ତ୍ତା ବହୁବଚନରେ ଥିଲେ ମଧ୍ୟ କ୍ରିୟା ଏକବଚନରେ ରହିଛି ।—

ସନ୍ତାନ ନ ଥିଲେ ତୁଟଇ ଧର୍ମମାନ । ୭୩୧ । ୨

ଅନ୍ତରୀକ୍ଷେ ବାଜଇ ନବଲକ୍ଷ ଡମ୍ବୁରୁ । ୧୨୭୦ । ୨ †

କେତେକ ସ୍ଥଳରେ ପୁଂଲିଙ୍ଗ କର୍ତ୍ତା ବହୁବଚନରେ ଥିଲେ ମଧ୍ୟ କ୍ରିୟା ଏକବଚନରେ ରହିଛି ।—

ସ୍ୱଗ କନ୍ୟା ତାହାର ହୋଇଲ ଉତପନ୍ନ । ୪୬୪ । ୨

(ହୋଇଲ—ହୋଇଲେ)

ଏମନ୍ତେ ଗଙ୍ଗାଗର୍ଭେ ଛଅପୁତ୍ର ଉପୁଜିଲ । ୩୧୩।୧

(ଉପୁଜିଲ—ଉପୁଜିଲେ)

ଯେଉଁଠାରେ କର୍ତ୍ତାର ସମ୍ମାନ ଅବକ୍ଷିତ, ସେଠାରେ କର୍ତ୍ତା ଏକବଚନରେ ଥିଲେ ମଧ୍ୟ କ୍ରିୟା ବହୁବଚନରେ ରହିଛି । କିନ୍ତୁ ଯେଉଁଠାରେ ସମ୍ମାନ ଅବକ୍ଷିତ ନୁହେଁ, ସେଠାରେ କର୍ତ୍ତା ଏକବଚନରେ ଓ କ୍ରିୟା ଏକବଚନରେ ରହିଛି । ଯଥା—

ଗଙ୍ଗା ଉଠିଲେ ଯେ ପିତାର କୋଳରୁ । ୨୨୮ । ୧

(ଗଙ୍ଗା ଉଠିଲେ)

ସାଗ୍ରେନ୍ଦ୍ରନୁ ଋଷିଙ୍କି ଅନେକ ଦୁଃଖ ଦେଲା । ୨୮୧ । ୨

(ଗଙ୍ଗା ଦୁଖ ଦେଲା)

## ଅଷ୍ଟମ ଅଧ୍ୟାୟ

### ଲିଙ୍ଗ

ଓଡ଼ିଆରେ କେବଳ ସ୍ତ୍ରୀଲିଙ୍ଗର ଆକୃତିଗତ ସ୍ୱାତନ୍ତ୍ର୍ୟ ଅଛି; ପୁଂଲିଙ୍ଗ ଓ କ୍ଲୀବଲିଙ୍ଗର ନାହିଁ ।

---

† ବର୍ତ୍ତମାନ, ସାଧାରଣତଃ କ୍ଲୀବଲିଙ୍ଗ ବହୁବଚନ କର୍ତ୍ତାର କ୍ରିୟା ଏକବଚନରେ ରହେ । ଯଥା—

ଫଳଗୁଡ଼ିକ ପାଚିଛି । ଏହି ପୁସ୍ତକାଳୟରେ ଉତ୍ତମ ପୁସ୍ତକମାନ ଅଛି ।

କିନ୍ତୁ କ୍ଲୀବଲିଙ୍ଗ କର୍ତ୍ତାରେ ଯଦି ପ୍ରାଣିତ୍ୱ ଆରୋପ କରାଯାଏ, ତେବେ ବହୁବଚନ କର୍ତ୍ତାର କ୍ରିୟା ବହୁବଚନରେ ରହେ । ଯଥା—

ମୃଦୁମଳୟ ପବନରେ ପତ୍ରପୁଷ୍ପଚୟ ନୃତ୍ୟରତ ହେଲେ । ଗଙ୍ଗାର ଶୀତଳ ଶୀକର ବିନ୍ଦୁମାନ ସୀତାଙ୍କର କ୍ଳାନ୍ତି ଅପନୋଦନ କଲେ ।

## ସ୍ତ୍ରୀଲିଙ୍ଗ

ସଂକଳିତ ଗ୍ରନ୍ଥାଂଶରେ ନିମ୍ନଲିଖିତ ପ୍ରତ୍ୟୟଯୁକ୍ତକ ଦ୍ୱାରା ବିଶେଷଣ ଓ ଜାତିବାଚକ ବିଶେଷ୍ୟରୁ ସ୍ତ୍ରୀଲିଙ୍ଗ ପରିବର୍ତ୍ତନ ଘଟିଛି ।—

-ଈ, -ଣୀ, -ଆଣୀ, -ଏଣୀ, -ଆ ।

-ଈ

| | | |
|---|---|---|
| ଜଇବ୍ରତୀ | ଦୂତିଆ | ଧବଳୀ |
| ନନ୍ଦନୀ | ନିଆଂଶୀ | ପୂର୍ବବନ୍ଦ୍ରୀ |
| ଦୁଲଣୀ | ପାପିଷ୍ଠୀ | ନଗ୍ରକୂଳୀ |
| ବାଳୀ | ମାତାଙ୍ଗୀ | ମୃଗନୟନୀ |

-ଈ ଅନ୍ୟାନ୍ୟ ସ୍ତ୍ରୀପ୍ରତ୍ୟୟଠାରୁ ଅଧିକ ବ୍ୟବହୃତ ହୋଇଛି ।

-ଣୀ

ଓଡଣୀ (ଓଡ-ଣୀ)

-ଆଣୀ

ଠାକୁରାଣୀ (ଠାକୁର-ଆଣୀ)

-ଏଣୀ

ଦାରେଣୀ (ଦାର-ଏଣୀ)

-ଆ

ବରପୁତ୍ରା, ସତୀଶ୍ରିୟା, ଉଚ୍ଚଗଜଗନ୍ଧାର

ସ୍ତ୍ରୀଲିଙ୍ଗ ଶବ୍ଦରୁ ମଧ୍ୟ ସ୍ୱାର୍ଥେ ସ୍ତ୍ରୀପ୍ରତ୍ୟୟ ହୋଇଛି ।—

ସତଶ୍ରୀ-ଆ = ସତଶ୍ରୀୟା > ସତଶ୍ରିୟା

ଦାର-ଏଣୀ (ଦାରେଣୀ)

ସା.ମ.ରେ -ଉଣୀ ସ୍ତ୍ରୀପ୍ରତ୍ୟୟ ମଧ୍ୟ ବ୍ୟବହୃତ ହୋଇଛି ।—

ବିଶ୍ୱ ରୂପ ଧରଇ ଯେ ପିଶୁଣୀ କଙ୍କାଳୀ । (ବନପର୍ବ ୧ମ ଖଣ୍ଡ, ପୃଷ୍ଠା ୩୧୭)

ସେହି ମୂହୂରତ ପଣ୍ଡାକୁ ଜାତକର ନେଇ ରେ ଶ୍ରିକାଳୁଣୀ ଗର୍ଭର । (ତତ୍ରୈବ ପୃଷ୍ଠା ୪୭୦)

(ଶ୍ରିକାଳୁଣୀ-ଶୃଗାଳୁଣୀ)

ସଂସ୍କୃତର 'ଅମରବତୀ' 'ଚନ୍ଦ୍ରାବତୀ' ପ୍ରଭୃତି ପଦର ସାଦୃଶ୍ୟରେ ସ୍ତ୍ରୀଲିଙ୍ଗ ନାମ-ବାଚକ ବିଶେଷ୍ୟ ଗଠିତ ହୋଇଅଛି ।—

ଜନକା-ବତୀ, କୃଷ୍ଣା-ବତୀ, ଯୁଗା-ବତୀ ※

---

※ ଅଗୋ ରୁ ସମ୍ପନାବଢ (ର. ମ. ୧୪-୨୧)

ତଦ୍ଧିତରେ କ୍ଷୁଦ୍ରତା ଅର୍ଥରେ ଯେଉଁ -ଇପ୍ରତ୍ୟୟ, ତାହା ସ୍ତ୍ରୀପ୍ରତ୍ୟୟରୁ-'ଈ' ଅଭିନ୍ନ ବୋଲି ମନେ ହୁଏ ।—

ପାତ୍ର-ପାତ୍ରି (କ୍ଷୁଦ୍ର ପାତ୍ର) ମାଳ-ମାଳି (କ୍ଷୁଦ୍ର ମାଳ)

ଖଣ୍ଡ-ଖଣ୍ଡି (କ୍ଷୁଦ୍ର ଖଣ୍ଡ) କାଠ-କାଠି (କ୍ଷୁଦ୍ର କାଠ)

(ତଦ୍ଧିତ ଦ୍ରଷ୍ଟବ୍ୟ)

ସେହିପରି କୃତ୍‌ପ୍ରତ୍ୟୟ '-ଅଣି' '-ଏଣି'ରେ ସ୍ତ୍ରୀପ୍ରତ୍ୟୟ 'ଈ'ର ପ୍ରଭାବ ଅଛି ବୋଲି ମନେହୁଏ ।—

କଳଣ-କଳଣି ଗାୟଣ-(ଗାଏଣ) ଗାଏଣି

(କୃଦନ୍ତ ଦ୍ରଷ୍ଟବ୍ୟ)

ସ୍ତ୍ରୀପ୍ରତ୍ୟୟ '-ଈ' ଓ '-ଆ' ପ୍ରା. ଭା. ଆ. କାଳରୁ ପ୍ରଚଳିତ ।

-ଆଣୀ, -ଏଣୀ, -ଉଣୀ, -ଣୀ, ଏଗୁଡ଼ିକ ପ୍ରା. ଭା. ଆ. '-ଆନୀ' ଓ 'ଆଣୀ' (ଯଥା —ଭବାନୀ, ଇନ୍ଦ୍ରାଣୀ) ପ୍ରତ୍ୟୟରୁ ଉତ୍ପନ୍ନ ।

ରଚନାରେ ଅନ୍ୟତ୍ର ବ୍ୟବହୃତ କେତେଗୋଟି ସ୍ତ୍ରୀପ୍ରତ୍ୟୟାନ୍ତ ପଦର ନମୁନା—

| | | |
|---|---|---|
| ଅନନ୍ତାଈ | ଗୁଣବନ୍ତୀ | ବୃନ୍ଦାଏଣୀ |
| ଅନାସୁଣୀ | ଚଞ୍ଚଳାଈ | ବଳାସୁଣୀ |
| (ଅନାଥନୀ) | ଘୁଣ୍ଡାଳୁଣୀ | ଭଦ୍ରିକା |
| ଆଉତ୍ୟାଈ | ଘୁଚେମୁଖ | ମାହାସାଣୀ |
| ଇନ୍ଦ୍ରାଏଣୀ | ଜଗଜ୍ଜେଠୀ | ମର୍କଟୀଆଣୀ |
| ଋଷିଆଣୀ | ଜାଗୁଳାଇ | ମୁଗୁଣୀ |
| କଇଞ୍ଚାବନ୍ତୀ | ଦକ୍ଷିଣାସୁନୀ | ମୋହିନୀ |
| କୁବେରାଇ | ଦାଗଏଣୀ | ଯଶୋବନ୍ତୀ |
| କାନ୍ତାନୀ | ଦେବତୀ | ଯମାସୁଣୀ |
| କୃତାନ୍ତେଙ୍କ | ଦୋସ୍ତରୁଣୀ | ରୁଦ୍ରାଏଣୀ |
| ଚଉତ୍ତାସସା | ଝିସ୍ତପୀ | ଶିବାଏଣୀ |
| ଛିଦ୍ରିନୀ | ଝରକାଈ | ହରଣାସୀ |

# ନବମ ଅଧ୍ୟାୟ

## ବିଶେଷ୍ୟ ଓ ବିଶେଷଣ ପ୍ରାତିପଦିକ

ଅନ୍ତ୍ୟସ୍ୱର ଦୃଷ୍ଟିରୁ ବିଶେଷ୍ୟ ଓ ବିଶେଷଣ ପ୍ରାତିପଦିକ ଛଅ ଶ୍ରେଣୀରେ ବିଭକ୍ତ—

-ଅ ଈଶ୍ୱର, ସମୋଦ୍ର, ବସ୍ତ୍ର, ପଞ୍ଚ

-ଆ ବୃଥା, ମାହାତ୍ମା, ଦୋହିତା, ଗଙ୍ଗା

-ଇ ମୁନି, ଦୂଲଣି, ନିଧି, ଅଗସ୍ତି

-ଈ କଇବର୍ତ୍ତୀ, ଚକ୍ରବର୍ତ୍ତୀ, ଅସୂଷ୍ମ, ଉଆଂସୀ

-ଉ ମନୁ, ଶାଲୁ, ଧାତୁ, ମୃତ୍ୟୁ, ଶତ୍ରୁ

(‘ଶତ୍ରୁ’ କେତେକ ସ୍ଥଳରେ ‘ଶତୃ’ ରୂପେ ଲିଖିତ)

-ଊ ବଧୂ

ଏକବଚନ ବା ବହୁବଚନରେ ବିଶେଷ୍ୟ ବା ବିଶେଷଣ ପ୍ରାତିପଦିକର କୌଣସି ଉଚ୍ଚୀୟକ୍ ରୂପ ନାହିଁ । କେବଳ ଅକାରାନ୍ତ ବିଶେଷ୍ୟ (‘ଭୀଷ୍ମ’ ଶବ୍ଦଟି ମାତ୍ର) କେତେକ ସ୍ଥଳରେ ଏକାରାନ୍ତ ହୋଇଅଛି ।—

**ଭୀଷେଙ୍କୁ** ଘଇ ଆଣିଲେ ତାହାଙ୍କର କଣ । ୬୨୯ । ୨

ଏସନେକ ଚଣଡ ହୋଇଲ **ଭୀଷ୍ମେଙ୍କର** । ୭୬୩ । ୨

ସଂଶ୍ଳେଷାତ୍ମକ ବିଭକ୍ତି କେବଳ ଅକାରାନ୍ତ ପ୍ରାତିପଦିକରେ ସଂଶ୍ଳିଷ୍ଟ ହୋଇଅଛି ।—

ପ୍ରଥମା—ବ୍ୟାସେ (ବ୍ୟାସ-ଏ), ଦୂତେ (ଦୂତ-ଏ)

ଦ୍ୱିତୀୟା-ଚତୁର୍ଥୀ—କୁମାରେ (କୁମାର-ଏ), ଦେବେ (ଦେବ-ଏ)

ତୃତୀୟା—ବିଷାଦେ (ବିଷାଦ-ଏ), ଧର୍ମେଣ (ଧର୍ମ-ଏଣ)

ପଞ୍ଚମୀ—ଅରଣ୍ୟାନୁ (ଅରଣ୍ୟାନ-ଉ), ଫଳୁଂ (ଫଳ-ଉଂ)

ସପ୍ତମୀ—ଆକାଶେ (ଆକାଶ-ଏ), ପାତାଳେଣ (ପାତାଳ-ଏଣ)

ସପ୍ତମୀ -ଇ, -ଇଂ ସଂଶ୍ଳିଷ୍ଟ ତଥା ବିଶ୍ଳିଷ୍ଟ, ଉଭୟ ଅବସ୍ଥାରେ ରହିଛି ।—

ସଂଶ୍ଳିଷ୍ଟ—ସ୍ୱେଥି (ସ୍ୱେଥ-ଇ)

ବିଶ୍ଳିଷ୍ଟ—ସହବାସଇଂ †

ଅକାରାନ୍ତ ପ୍ରାତିପଦିକରେ ସଂଶ୍ଳେଷାତ୍ମକ ବିଭକ୍ତି ଓ ତତ୍ପୂର୍ବବର୍ତ୍ତୀ ସ୍ୱର ମଧ୍ୟରେ ଯ୍ ଧ୍ୱନି ବିକଳ୍ପେ ସ୍ଥାନ ପାଇଛି ।—

---

† ପଞ୍ଚମୀ -ଉଂ ଅକାରାନ୍ତ ପ୍ରାତିପଦିକରେ ବିଶ୍ଳିଷ୍ଟ ଅବସ୍ଥାରେ ମଧ୍ୟ ଦେଖାଯାଏ । ଯଥା—

ଶଙ୍ଖିନୀ **ବିସଉଂ** କଷ୍ଟେ କଷ୍ଟେ ପ୍ରାଣ ପାଇ······ (ରୁ. ସୁ. ପୃ. ୧୪)

(ବିସଉଂ—ବିଷରୁ)

ପ୍ରଥମା—ରଜାସ୍ତେ (ରଜା-ଏ)
ତୃତୀୟା—ବଣ୍ଟେ (ବଣ୍ଟ-ଏ), ଅବସ୍ଥାସ୍ତେଣ (ଅବସ୍ଥା-ଏଣ)
ସପ୍ତମୀ—ନାଉକାସ୍ତେ (ନାଉକା-ଏ) ସଭସ୍ତେଣ (ସଭ-ଏଣ)

ପାରସର୍ଗିକ ବିଭକ୍ତି ଚିହ୍ନଗୁଡ଼ିକ ସବୁ ଶ୍ରେଣୀର ପ୍ରାତିପଦିକରୁ ଲଗିଛି ।

କେତେକ ସ୍ଥଳରେ ମିତାକ୍ଷର ଅନୁରୋଧରେ ଶବ୍ଦ ବିକୃତପ୍ରାପ୍ତ ହୋଇଅଛି ।—

ବ୍ରହ୍ମ—ବ୍ରହ୍ମା ୩୧ । ୧ ମହୀପତି—ମହୀପତୀ ୧୦୫ । ୨
ଦିବାକର—ଦିବାକରା ୬୦୧ । ୨ ଅନ୍ତର୍ଧାନ—ଅନ୍ତର୍ଧାସ୍ତେ ୧୮୧ । ୨
ବିଧାନ—ବିଧାନା ୨୪୬ । ୨ ଅଟବୀ—ଅଟବୀ ୧୯୨୧ । ୧
ଲକ୍ଷ—ଲକ୍ଷି ୫୫୨ । ୧

ନାମ ଅର୍ଥରେ ନାମୀ ବ୍ୟବହୃତ ହୋଇଛି—
କରେଣ ପିନାକଚମାନ ଧନୁସ୍ତେ । ୨୦୩ । ୧
(ପିନାକ ଅର୍ଥରେ ପିନାକି)
ତାଡ଼ ଚୋଡ଼ର ସିମନ୍ତନୀ କଣ୍ଠେ କଣ୍ଠୀଷ୍ଟଳ । ୫୭୯ । ୧
(ସିମନ୍ତ [ < ସୀମନ୍ତ] ଅର୍ଥରେ ସିମନ୍ତନୀ) *

ଏକାର୍ଥକ ଦୁଇଟି ଲେଖାଏଁ ଶବ୍ଦ ମଧ୍ୟ ଏକତ୍ର ବ୍ୟବହୃତ ହୋଇଛି—
ନଶାଗ୍ରତ ୯୫୨ । ୨ ** ତ୍ରିଦଶ୍ୟଦେବତାସ୍ତେ ୧୨୯ । ୧
କନ୍ୟାବାଳ ୬୦୪ । ୧ କୁଳବଂଶ ୬୦୨ । ୨
ଦଇତଦାନବେ ୧୬୭ । ୧

ଶବ୍ଦର ନୂତନ ଅର୍ଥରେ ପ୍ରୟୋଗ—

'କ୍ରୋଧ' ଶବ୍ଦର ଅର୍ଥ 'କୋପ' । କିନ୍ତୁ ଆଲୋଚିତ ଗ୍ରନ୍ଥରେ ଏହା ଦୁଃଖ ତଥା କ୍ରନ୍ଦନ ଅର୍ଥରେ ବ୍ୟବହୃତ—
ଦୋହିତା ରୂପ ଦେଖି କିର୍ଘାତ ବହୁତ କ୍ରୋଧ କଲ । ୧୮୪ । ୨
କ୍ରୋଧ ଥିର କର କହନ୍ତି ତାସ ରଜା କୁମାରୀ । ୮୦୧ । ୧
ପରେ 'କ୍ରୋଧ' ଏହି ଅର୍ଥରେ 'କୋହ' ହୋଇଛି ।

'ମୂର୍ତ୍ତି' ଶବ୍ଦର ଅର୍ଥ ରୂପ, ଆକୃତି ବା ପ୍ରତିମା । କିନ୍ତୁ ଆଲୋଚିତ ଗ୍ରନ୍ଥରେ ଏହା 'ହଗ' ଅର୍ଥରେ ମଧ୍ୟ ବ୍ୟବହୃତ—

---

* ସୀମନ୍ତ—ପାନିଆଁ ଦ୍ୱାରା ପ୍ରସ୍ତୁତ କେଶମଧ୍ୟସ୍ଥ ରେଖା ।
ସୀମନ୍ତିନୀ—ସୀମନ୍ତଯୁକ୍ତା ନାରୀ, ସଧବା ନାରୀ ।
'ସୀମନ୍ତ' ଅର୍ଥରେ 'ସିମନ୍ତନୀ' (<ସୀମନ୍ତିନୀ) ବ୍ୟବହୃତ ହୋଇ ସେଥିରୁ 'ସୁନ୍ଥାନି' ଶବ୍ଦ ଉତ୍ପନ୍ନ । ବର୍ତ୍ତମାନ କେଶମଧ୍ୟସ୍ଥ ରେଖାକୁ 'ସୁନ୍ଥାନି' କହନ୍ତି ।
** ବର୍ତ୍ତମାନ, 'ନଶାଗ୍ରତ' ଶବ୍ଦର ଗତିକୁ ବୁଝାଏ ।

ଈଶାନ୍ୟ ମୁଣ୍ଡରେ ଚଳଇ କେଣ୍ଠରୁଡ଼ ହୋଇ । ୧୪୭୨ । ୨
(ମୁଣ୍ଡ>ମୂର୍ତ୍ତି)

# ଦଶମ ଅଧ୍ୟାୟ

## ସର୍ବନାମ

ସର୍ବନାମ ଗୁଡ଼ିକ୍ ଏଗାର ଶ୍ରେଣୀରେ ବିଭକ୍ତ କରାଯାଇପାରେ—

୧ । ପ୍ରଥମ ପୁରୁଷ ସର୍ବନାମ
୨ । ଦ୍ୱିତୀୟ ପୁରୁଷ ସର୍ବନାମ
୩ । ଦୂର ନିର୍ଦ୍ଦେଶକ—ସମ୍ବନ୍ଧପର ସର୍ବନାମ
୪ । ନିକଟ ନିର୍ଦ୍ଦେଶକ ସର୍ବନାମ
୫ । ସମ୍ବନ୍ଧବାଚକ ସର୍ବନାମ
୬ । ପ୍ରଶ୍ନ-ଅନିଶ୍ଚୟବାଚକ ସର୍ବନାମ
୭ । 'ଅନ୍ୟ' ବାଚକ ସର୍ବନାମ
୮ । ସାକଲ୍ୟବାଚକ ସର୍ବନାମ
୯ । ଆତ୍ମବାଚକ-ସମ୍ମାନସୂଚକ ସର୍ବନାମ
୧୦ । ସଂଖ୍ୟା ପରିମାଣବାଚକ ସର୍ବନାମ
୧୧ । ଯୌଗିକ ସର୍ବନାମ

କର୍ତ୍ତା-ପ୍ରଥମା ବ୍ୟତୀତ ଅନ୍ୟ ସମସ୍ତ କାରକ-ବିଭକ୍ତିରେ ସର୍ବନାମଗୁଡ଼ିକର ତିର୍ଯ୍ୟକ୍ ରୂପ ରହିଛି ।

### (୧) ପ୍ରଥମ ପୁରୁଷ ସର୍ବନାମ

#### (କ) (ଏକବଚନ) ମୁଂ

ଏହାର ତିର୍ଯ୍ୟକ୍ ରୂପ—ମୋହୋ, ମୋହ, ମୋ । କେବଳ କର୍ମ-ସଂପ୍ରଦାନର -କୁ, -କଇ, -କଇଂ, -କୁଇ, -କୁଇଂ ତିର୍ଯ୍ୟକ୍ ରୂପରୁ ନ ଲାଗି ଋଜୁ ରୂପରୁ ଲାଗିଅଛି ।

କର୍ତ୍ତା — ମୁଂ, ମୁ-ହିଂ (<ମୁଂ-ହି)
କର୍ମ-ସଂପ୍ରଦାନ — ମୁ-କୁ, ମୁ-କଇ, ମୁ-କଇଂ, ମୁ-କୁଇ, ମୋ-ତେ
କାରଣ — ମୋହୋ-ରେ, ମୋହୋ-ରେଣ
ସମ୍ବନ୍ଧ — ମୋହୋ-ର, ମୋହୋ-ଶ, ମୋହ-ର୍, ମୋହ-ଶ, ମୋହ, ମୋ

#### (ଖ) (ବହୁବଚନ) ଆମ୍ଭେ

ଏହାର ତିର୍ଯ୍ୟକ୍ ରୂପ—ଆମ୍ଭ
କର୍ତ୍ତା — ଆମ୍ଭେ, ଆମ୍ଭେ-ମାନେ

କର୍ମ-ସମ୍ପ୍ରଦାନ — ଆମ୍ଭ-କୁ, ଆମ୍ଭ-ଙ୍କୁ (ଆମ୍ଭଂ-କ-କୁ), ଆମ୍ଭ-କଇ
କର୍ମ — ଆମ୍ଭ-ନ୍ତ
ସମ୍ବନ୍ଧ — ଆମ୍ଭ-ର, ଆମ୍ଭ

(୨) ଦ୍ୱିତୀୟ ପୁରୁଷ ସର୍ବନାମ

(କ) (ଏକବଚନ) ତୁ

ଏହାର ତର୍ଯ୍ୟକ୍ ରୂପ—ତୋହୋ, ତୋହ, ତୋ । କେବଳ କର୍ମ-ସଂପ୍ରଦାନର -କୁ, -କଇ, -କଇଂ ପ୍ରଭୃତି ତର୍ଯ୍ୟକ୍ ରୂପରୁ ନ ଲଗି ଋଜୁ ରୂପରୁ ଲଗିଅଛି ।

କର୍ତ୍ତା — ତୁ, ତୁ-ହ
କର୍ମ-ସଂପ୍ରଦାନ — ତୁ-କୁ, ତୁ-କଇ, ତୋ-ତେ
କରଣ — ତୋହୋ-ରେ, ତୋହ-ରେ
ସମ୍ବନ୍ଧ — ତୋହୋ-ର, ତୋହ-ର, ତୋହୋ-ଣ,
ତୋହ-ଣ, ତୋ-ର, ତୋ ।

( ସର୍ବନାମଗୁଡ଼ିକର ଅପାଦାନ ଓ ଅଧିକରଣ କାରକ ପାରସର୍ଗିକ ପଦଦ୍ୱାରା ବ୍ୟକ୍ତ ହୋଇଛି । ଯଥା—

ତୋ ତହୁଂ ୩୬। । ୧ — ତାହାର ଉପରେ ୧୬୫୩ । ୨
ଆମ୍ଭର ତହୁଂ ୧୬୨୧ । ୨ — କାହାର କଣ ୭୧୭ । ୨ )

(ଖ) (ବହୁବଚନ) ତୁମ୍ଭେ

ଏହାର ତର୍ଯ୍ୟକ୍ ରୂପ—ତୁମ୍ଭ ।

କର୍ତ୍ତା — ତୁମ୍ଭେ, ତୁମ୍ଭେ-ମାନେ
କର୍ମ-ସଂପ୍ରଦାନ — ତୁମ୍ଭ-କୁ, ତୁମ୍ଭ-ଙ୍କୁ (ତୁମ୍ଭଂ-କ-କୁ)
କର୍ମ — ତୁମ୍ଭ-ନ୍ତ
ସମ୍ବନ୍ଧ — ତୁମ୍ଭ-ର, ତୁମ୍ଭ-ଣ, ତୁମ୍ଭ

(୩) ଦୂରନିର୍ଦ୍ଦେଶକ-ସମ୍ବନ୍ଧସଂପର୍କ ସର୍ବନାମ

ସେ

ଏହାର ତର୍ଯ୍ୟକ୍ ରୂପ—ତାହା, ତା ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା — | ସେ, ସେ-ହ, ସେ-ହୁ | ସେ, ସେ-ହ, ସେ-ହୁ, ସେ-ମାନେ |
| *କର୍ମ — | ତାହା | |
| କର୍ମ-ସମ୍ପ୍ରଦାନ — | ତାହା-କୁ, ତାହା-କଇ | ତାହା-ଙ୍କୁ (ତାହାଂ-କ-କୁ)<br>ତା-ଙ୍କୁ (ତାଂ-କ-କୁ) |
| କରଣ — | ତାହା-ରେ | |

ସମ୍ବନ୍ଧ—ତାହାର-ର, ତାହା-ର,      ତାହା-ଙ୍କର (ତାହାଂ-କର)
ତା-ର, ତାହା, ତା      ତାହା-ଙ୍କଣ (ତାହାଂ-କଣ) *

'ସେ'ର ଆର୍ଷୀୟକ୍ ରୂପ 'ତହିଂ' ଓ 'ତଥି' ମଧ୍ୟ ହୋଇଅଛି ।—

**ତହିଂ**ର ଅନୁଜ ହାସ୍ୟଲ ବୋଲି ଶ୍ରୀରାମେ । ୩୮ । ୧
**ତହିଂ**କ କଷ୍ଟାଳ କରୁଅଛଇ ଅପାର । ୨୫୪ । ୨
ତୁମ୍ଭେ କ ଜାଣ **ତଥି**ର ବେଭାର । ୧୩୨୧ । ୨

(୪) ନିକଟନିର୍ଦ୍ଦେଶକ ସର୍ବନାମ

ଏ (ୟେ)

ଏହାର ଆର୍ଷିକ୍ ରୂପ 'ଏହା' (ୟେହା) ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା — | ୟେ, ୟେ-ହ, ୟେ-ହୁ | ୟେ, ୟେ-ହ, ୟେ-ହି, ୟେ-ମାନେ |
| କର୍ମ-ସମ୍ପ୍ରଦାନ — | ୟେହା-କୁ, ୟେହା-କଇ | ୟେହା-ଙ୍କୁ (ୟେହାଂ-କ-କୁ) |
| କର୍ମ — | ୟେହା | ୟେହାନ୍ତ |
| ଅପାଦାନ -- | ୟେହା-ହୁଂ | |
| ସମ୍ବନ୍ଧ — | ୟେହା-ର, ୟେହା | ୟେହା-ଙ୍କର (ୟେହାଂ-କର) ୟେହାଙ୍କ (ୟେହାଂ କ) |

'ଏ'ର ଆର୍ଷିକ୍ ରୂପ 'ଏଥ' (ୟେଥ) ଏବଂ 'ଏଥି' (ୟେଥି) ମଧ୍ୟ ହୋଇଅଛି ।—

**ୟେଥୁଂ** ଉତପତ୍ତି ହୋଇଲେ ଯମ୍ବ । ୭୬ । ୧
(ୟେଥ-ହୁଂ = ୟେଥୁଂ)
ବୋଲନ୍ତି ବଧୂମାନେ **ୟେଥେ** ଯେତେ ପାତେକ ହୋଇ । ୯୪୮ । ୧
(ୟେଥ-ଏ = ୟେଥେ)
କେହି ବୁଝିର ନ କଲ **ୟେଥି**ର ଅର୍ଥ କହ । ୮୦୩ । ୨
(ୟେଥ-ଇ = ୟେଥି-ର)

(୫) ସମ୍ବନ୍ଧବାଚକ ସର୍ବନାମ

ଯେ

ଏହାର ଆର୍ଷିକ୍ ରୂପ 'ଯାହା', 'ଯା' ।

---

* ବର୍ତ୍ତମାନ ଯେପରି ବହୁବଚନରେ ସର୍ବନାମର ରୂପରୁ '-ମାନଙ୍କ' ମିଶୁଅଛି ଏବଂ ସେଥିରୁ ବିଭକ୍ତି ଚିହ୍ନ ଲଗୁଅଛି, ଯଥା—(ସେ-ମାନଙ୍କ-ରୁ, ଏ-ମାନଙ୍କ-ରେ ଇତ୍ୟାଦି), ଆଲୋଚିତ ଗ୍ରନ୍ଥରେ ସେହିପରି ପ୍ରୟୋଗ ନାହିଁ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା — | ଯେ, ଯେ-ହୁ | ଯେ, ଯେ-ହୁ |
| କର୍ମ-ସମ୍ପ୍ରଦାନ — | ଯାହା-କୁ, ଯାହା-ଠାଇ | ଯାହା-ଙ୍କୁ (ଯାହା°-କ-କୁ) |
| କର୍ମ — | ଯାହା | |
| ସମ୍ବନ୍ଧ — | ଯାହା-ର, ଯାହା, ଯା | ଯାହା-ଙ୍କର (ଯାହା°-କର) |

(୬) ପ୍ରଶ୍ନ-ଅନଶ୍ଚୟ୍ତବାଚକ ସର୍ବନାମ

କେ

ଏହାର ଧର୍ମୀୟକ୍ ରୂପ—କାହା ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା — | କେ, କେ-ହ, କେ-ହୁ | କେ, କେ-ହ, କେ ହୁ |
| କର୍ମ-ସମ୍ପ୍ରଦାନ — | କାହା-କୁ | କାହା-ଙ୍କୁ (କାହା°-କ-କୁ) |
| କର୍ମ — | କାହା | |
| ସମ୍ବନ୍ଧ — | କାହା-ର | |

'କେ'ର ଧର୍ମୀୟକ୍ ରୂପ 'କାହଂ' ମଧ୍ଯ ହୋଇଅଛି ।—

କାହଂରି ଫଳୁ ସୋମବଂଶ ସ୍ଥେଢେକ ବଃଯାଗ । ୧୦୦୧ । ୨

(୭) 'ଅନ୍ୟ' ବାଚକ ସର୍ବନାମ

ଆନ, ଆର,

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା — | ଆନ, ଆର | × |
| କର୍ମ — | ଆନ-କୁ | × |
| ଅଧି — | ଆନେ (ଆନ-ଏ), ଆନ-ରେ | × |

(୮) ସାକଲ୍ୟବାଚକ ସର୍ବନାମ

ସକଳ, ସର୍ବ, ସବୁ

କର୍ତ୍ତା — ସକଳେ (ସକଳ-ଏ), ସର୍ବେ (ସର୍ବ-ଏ)

କର୍ମ — ସବୁ-ନ୍ତ

ସମ୍ବନ୍ଧ — ସବୁ-ଶ

(୯) ଆତ୍ମବାଚକ ସମ୍ମାନସୂଚକ ସର୍ବନାମ

ଆପେ, ଆପଣ

ଏହାର ଧର୍ମୀକ୍ ରୂପ—ଆପଣା ।

କର୍ତ୍ତା — ଆପେ (ଆପ-ଏ), ଆପଣେ (ଆପଣ-ଏ)

କର୍ମ — ଅପଣା-କୁ
ସମ୍ବନ୍ଧ — ଆପଣା, ଆପଣା-ର *

(୧୦) ସଂଖ୍ୟା-ପରିମାଣବାଚକ ସର୍ବନାମ

ଦୁହେଁ, ଉଭୟେ, କେହି
କର୍ତ୍ତା — ଦୁହେଁ (ଦୁହଁ-ଏ), ଦୋହେଁ
ଉଭୟେ (ଉଭୟ-ଏ), କେହି
କର୍ମ — ଦୁହି-ଙ୍କୁ, ଦୁହଁ-କୁ
ସମ୍ବନ୍ଧ — ଦୁହିଁଙ୍କର

(୧୧) ଯୌଗିକ ସର୍ବନାମ

କର୍ତ୍ତା — ସେହି ଯେ, ଯେହି ସେ
କର୍ମ — ଆନ ତାହାକୁ
ସମ୍ବନ୍ଧ — ଯେ ଯାହା, ଯେ ଯାହାର, ଯେହ୍ନାର

ସର୍ବନାମର ଅବିଭକ୍ତିକ ତଦ୍ଧିତକ୍ ରୂପ

ସର୍ବନାମଗୁଡ଼ିକର ଅବିଭକ୍ତିକ ତଦ୍ଧିତକ୍ ରୂପ କର୍ମକାରକ ଓ ସମ୍ବନ୍ଧ ପଦ ରୂପେ ବ୍ୟବହୃତ ହୋଇଅଛି ।

କର୍ମ ରୂପେ—

ଆମ୍ଭେ ଯେ ସତ୍ୟ ବ୍ରତ ଗ୍ରହିବୁଂ ପୁରୁଷ ତାହା କର । ୭୮୧ । ୨
ସାମ୍ଭେକୁନୁ ବୋଇଲେ ଆମ୍ଭେ ପାଇବୁଂ ସେମ୍ଭୁହା ତାହଂ । ୩୬୮ । ୧ **
ସପ୍ତାରଗଡ ଦେଲୁ ରୁ ଲକ୍ଷିଲୁ ମୂନ ଯାହା । ୧୨୧୦ । ୨

ସମ୍ବନ୍ଧ ରୂପେ

ତୋହରା ଚୋଟିମ୍ଭେ ଅଛୁ ନାମ ତା ଗାନ୍ଧାରି । ୧୨୨୭ । ୧
ତାହା ରୂଳେ ରୁମ୍ଭେ ହୁଅ ପ୍ରିୟ ମତ । ୮୪୦ । ୨
ଉତ୍ପତ୍ତି ଦୃଷ୍ଟିରୁ ସର୍ବନାମ ତଦ୍ଧିତକ୍ ରୂପଗୁଡ଼ିକ ଦୁଇ ଶ୍ରେଣୀରେ ବିଭକ୍ତ— ସମ୍ବନ୍ଧାତ୍ମକ ଓ ଅଧିକରଣାତ୍ମକ ।

---

* ଗତନବସନଶୋଭା ଆପ ରୂପେ ଆପ ଲେଖା । (ର ମ ୧୪-୦)

** ବର୍ତ୍ତମାନ ସେ, ଏ, ଯେ—ଏହି ତିନୋଟି ସର୍ବନାମର ତଦ୍ଧିତକ୍ ରୂପ (ତାହା, ଏହା, ଯାହା) କର୍ତ୍ତା ରୂପେ ମଧ୍ୟ ବ୍ୟବହୃତ ହୁଏ । ଯଥା—
ଯାହା ଭଲ, ତାହା ହିଁ କର ।
ଏହା ଆପଣଙ୍କ ପକ୍ଷରେ ଶୋଭା ପାଉନାହିଁ ।

## ସମ୍ବନ୍ଧାତ୍ମକ

| ସର୍ବନାମ | ଏକବଚନ | ବହୁବଚନ |
|---|---|---|
| ମୁଂ | ମୋହ୍ୱୋ, ମୋହ୍ୱ, ମୋ | ଆମ୍ଭ |
| ତୁ | ତୋହ୍ୱୋ, ତୋହ୍ୱ, ତୋ | ତୁମ୍ଭ |
| ସେ | ତାହ୍ୱା, ତା | ତାହ୍ୱାଂ, ତାଂ |
| ଏ (ସ୍ୱେ) | ଏହ୍ୱା (ସ୍ୱେହ୍ୱା) | ଏହ୍ୱାଂ (ସ୍ୱେହ୍ୱାଂ) |
| ଯେ | ଯାହ୍ୱା | ଯାହ୍ୱାଂ |
| କେ | କାହ୍ୱା | କାହ୍ୱାଂ |
| ଆପେ | ଆପଣା | ଆପଣାଂ |

## ଅଧିକରଣାତ୍ମକ

ସେ — ତହ୍ୱିଂ, ତଥି
ଏ — ଏଠ (ସ୍ୱେଠ), ଏଥି (ସ୍ୱେଥି)
ଯେ — ଯହ୍ୱିଂ
କେ — କାହ୍ୱିଂ

# ଏକାଦଶ ଅଧ୍ୟାୟ

## ସର୍ବନାମ ଉକ୍ତ ରୂପ ଓ ତର୍ଯ୍ୟକ୍ ରୂପଗୁଡ଼ିକର ଉତ୍ପତ୍ତି
## ଉକ୍ତ ରୂପ

| ପ୍ରା. ଭା. ଆ. | ମ. ଭା. ଆ. | ଓ. |
|---|---|---|
| ତ୍ୱୟା | ତୁଏ, ତୁଇ | ତୁ |
| ମୟା | ମଏ, ମଇଂ | ମୁଂ (ମୁଁ) † |
| ଅସ୍ମାଭିଃ | ଅମ୍ହେହି, ଅମ୍ହେଇ | ଆମ୍ଭେ, ଆମେ |
| •ତୁଷ୍ମାଭିଃ | ତୁମ୍ହେହି, ତୁମ୍ହେଇ | ତୁମ୍ଭେ, ତୁମେ |
| ସଃ | ସେ (ମା. ପ୍ରା. ଶୌ.) | ସେ |
| କଃ | କେ | କେ |
| ଯଃ | ଜେ | ଯେ |
| ଏତେ | ଏଏ | ଏ (ସ୍ୱେ) |
| ଆତ୍ମାନଃ | ଅପ୍ପାଣୋ | ଆପଣ |
| ଅତ୍ମା | ଅପ୍ପା | ଆପ + ୧ମା — ଏ = ଆପେ |

† 'ମୁଁ'ର ଉଚ୍ଚାରଣ 'ମୁ' ଦ୍ୱାରା ପ୍ରଭାବିତ ହୋଇଛି ।

## ଷଷ୍ଠ୍ୟର୍ଥକ୍ ରୂପ

| ପ୍ରା. ଭା. ଆ. | ମ. ଭା. ଆ. | ଓ. |
|---|---|---|
| ତୁଭ୍ୟଂ (ତବ) | (ତୁତ୍ଭଂ> ) ତୁହ୍ମ | ତୋହ୍ମ, ତୋହ୍ମୋ, ତୋ |
| *ମଭ୍ୟଂ (ମମ) | (ମହ୍ଭ୍ୟଂ>) ମହ୍ମ | ମୋହ୍ମ, ମୋହ୍ମୋ, ମୋ |
| ତସ୍ୟ | ତସ୍ସ>ତାହ୍ମ | ତାହ୍ମା |
| ଏତସ୍ୟ | ଏତସ୍ସ>ଏହ୍ମ | ଏହ୍ମା (ସେହ୍ମା) |
| ଯସ୍ୟ | ଜସ୍ସ>ଜାହ୍ମ | ଯାହ୍ମା |
| କସ୍ୟ | କସ୍ସ>କାହ୍ମ | କାହ୍ମା |
| ଆତ୍ମନଃ | ଅପ୍ପଣୋ | ଆପଣା |
| ତସ୍ମିନ୍ | ତମ୍ହିଂ | ତହିଂ |
| ଯସ୍ମିନ୍ | ଜମ୍ହିଂ | ଯହିଂ |
| କସ୍ମିନ୍ | କମ୍ହିଂ | କାହିଂ |
| ତତ୍ର | ତତ୍ଥ | ତଥ + ୭ମୀ—ଇ = ତଥି |
| *ଏତ୍ର (ଅତ୍ର) | ଏତ୍ଥ | ଏଥ + ୭ମୀ—ଇ = ଏଥି (ସେଥି) |

ଅଧିକରଣାତ୍ମକ ଷଷ୍ଠ୍ୟର୍ଥକ୍ ରୂପର ପାର୍ଥକ୍ୟ ନାହିଁ । ପାରସର୍ଗିକ ପଦଗୁଡ଼ିକର ପ୍ରୟୋଗ ସ୍ଥଳରେ ସର୍ବନାମ ସର୍ବଦା ସମ୍ବନ୍ଧ ଆକୃତିରେ ରହୁଛି ।—

ଆମ୍ଭର ନିମନ୍ତେ
ତାହ୍ମାର ଉପରେ

ସେହ୍ମାଙ୍କର ତହିଂ
କାହ୍ମାର କଣ
ତାହ୍ମା ତୁଲେ

ଉଭୟ ଲିଙ୍ଗରେ ସର୍ବନାମର ରୂପ ସମାନ ।—

ସେ (ମହୀପାଳ) ୭୭ । ୨
ସେ (କନ୍ୟା) ୪୪୮ । ୨
ସେ (ମଞ୍ଜୁଷ) ୧୪୭୪ । ୨

ତାହ୍ମାକୁ (ପୁତ୍ରକୁ) ୩୪୮ । ୨
ତାହ୍ମାକୁ (ଦୋହ୍ମତାକୁ) ୮୭ । ୧
ତାହ୍ମାକୁ (ମଞ୍ଜୁଷକୁ) ୧୪୭୭ । ୧

---

ବର୍ତ୍ତମାନ, ସେଥି, ସେଇଥି; ଯହିଥି, ଯହିଁଥି, ସେଉଁଥି; କହିଥି, କଉଁଥି, କେଉଁଥି; ଏଥି, ଏଇଥି—ଷଷ୍ଠ୍ୟର୍ଥକ୍ ରୂପଗୁଡ଼ିକ ମଧ୍ୟ ପ୍ରଚଳିତ । ଯଥା—ସେଥି-ର, କଉଁଥି-କୁ, ଏଇଥି-ରେ ଇତ୍ୟାଦି । ଏଗୁଡ଼ିକରେ 'ଥି' ଅଂଶଟି ଅଧିକରଣାତ୍ମକ ।

## ସର୍ବନାମ ବିଶେଷଣ

ସର୍ବନାମଗୁଡ଼ିକର ଭିନ୍ନ ରୂପ ନିର୍ଦ୍ଦେଶକ ବିଶେଷଣ ଭାବରେ ବ୍ୟବହୃତ ହୋଇଛି ।—

| | |
|---|---|
| ସେ ପରବାସ୍ତ୍ର ୭୩ । ୨ | ସେହୁ ସଂସାର ୩୦୭ । ୨ |
| ସେହୁ ଠାବରୁ ୧୦୪ । ୧ | ଆନ ରାହ୍ମଣୀ ୩୩୨ । ୨ |
| ସେହୁ ଦୁଷ୍କୃତମାନେ ୪୫ । ୨ | ଅନେକ କହେ ୫୫ । ୧ |

'ସେ' ବିଶେଷଣ ରୂପେ 'ଯହୁଂ'ରେ ପରିଣତ ହୋଇଛି ।

'ଯହୁଂ ସ୍ୱାମୀ' ୨୨୨ । ୧ †

## ସର୍ବନାମଜ ବିଶେଷଣ

ସର୍ବନାମରୁ ଗଠିତ ନିମ୍ନଲିଖିତ ବିଶେଷଣଗୁଡ଼ିକ ବ୍ୟବହୃତ ହୋଇଛି ।—

| | |
|---|---|
| ଏମନ୍ତ (ସେହ୍ମନ୍ତ) | ଏତେ |
| | ଏତେକ (ଏତେ-କ) |
| କେମନ୍ତ | ଯେତେକ (ଯେତେ-କ) |
| ଯେବଣ | କେତେ |
| କେବଣ | ଏତେ |
| ଏସନ (ସେହ୍ସନ) | କିସ |
| କେସନ | କାସ |
| | କହୁଂକିଁ |

| | |
|---|---|
| ଏମନ୍ତ ବିସ୍ମୟ ୧୫୦ । ୧ | ଏତେ ନିର୍ବଂଧ ୮୫୦ । ୨ |
| ଯେବଣ ମାହାତମା ୨୪ । ୧ | କେତେ ପୁଣ୍ୟହତ୍ୟା ୪୨୭ । ୨ |

---

† ପୂର୍ବାକାଳେ ଯଉଂ ଯୋଗ ଭୁଞ୍ଜିଲିନା ଯାହା । (କଳସା ଚଉତିଶା)
ଅପୂର୍ଣ୍ଣ ଯୋଉଂ ଦିଗେ ଅଛି ସେ ଦିଗେ ଯିବା ବୋଲେ ।
(ରାମବିଭା—ଆସ୍ଥ ରୁଦ୍ର)

ବର୍ତ୍ତମାନ 'କେ' ବିଶେଷଣ ହେଲେ କଥିତ ଭାଷାରେ 'କଉ' 'କଉଁ' ଏବଂ ଲିଖିତ ଭାଷାରେ 'କେଉଁ' ହୁଏ । ସେହିପରି 'ଯେ' କଥିତରେ 'ଯଉ' 'ଯଉଁ' ଏବଂ ଲିଖିତରେ 'ଯେଉଁ' ହୁଏ । ଯଥା—

| | |
|---|---|
| କଉଁ ଲୋକ | କେଉଁ ଲୋକ |
| ଯଉଁ ଫଳ | ଯେଉଁ ଫଳ |

କେବଣ (କେଓଣ) > କେଉଁ, କଉଁ, କଉ;
ଯେବଣ (ଯେଓଣ) > ଯେଉଁ, ଯଉଁ, ଯଉ ।

ଯେବଣ ଶାବ୍ଦାସ୍ତ ୧୭ । ୧ — କସ ପ୍ରତଚ୍ୟା° ୫୧୯ । ୨
କେବଣ ପୁରେ ୧୯୯ । ୧ — କସ ବାଞ୍ଛା ୭୮° । ୧ †
ଏସନ ପ୍ରକୃତ ୩୩୨ । ୨ — କଇଂଶିସି ଦନେ ୮୮୨ । ୨
ଯେତେକ ପୋଖତ ୪୨୮ । ୧ — ଇତ୍ୟାଦ ।

## ଦ୍ୱାଦଶ ଅଧ୍ୟାୟ

### ବଶେଷଣ

ବଶେଷଣଗୁଡ଼କୁ ଆଠ ଶ୍ରେଣୀରେ ବଭକ୍ତ କସାଯାଇପାରେ—

| | |
|---|---|
| ୧ । ଗୁଣବାଚକ | ୫ । ପୁରଣବାଚକ |
| ୨ । ଅବସ୍ଥାବାଚକ | ୬ । ନର୍ଦେଶବାଚକ |
| ୩ । ପରମାଣବାଚକ | ୭ । ସର୍ବନାମଜ |
| ୪ । ସଖ୍ୟାବାଚକ | ୮ । କ୍ରିୟାବାଚକ |

ପ୍ରତ୍ୟେକରୁ ଦଶ୍‌ମାନ ଉଦାହରଣ—

(୧) ଗୁଣବାଚକ ବଶେଷଣ

| | | | |
|---|---|---|---|
| ସଦଗ୍ୟ° | ଉଦ୍ଦତ | ଅଘୋର | ଭଗତା |
| ସାର୍ଥକ | ଖ୍ୱେଖାର | କଷ୍ଟୋର | ସଇନ୍ଦ |

(୨) ଅବସ୍ଥାବାଚକ ବଶେଷଣ

| | | | |
|---|---|---|---|
| ଅବସ୍ୱଇତ | ପ୍ରଲମ୍ବିତ | ଝଲମଲ | ଦ୍ୱେଠ |
| ବାହୁତ | ଅସାଷ୍ଟମ | ଅସମ୍ଭାଳ | ଅଖଳିତ |

(୩) ପରମାଣବାଚକ ବଶେଷଣ

| | |
|---|---|
| ବହୁତ | ଅଢଅଳ୍ପ |
| ଅନଯାଁପି | କଷ୍ଟିତ |
| ଅପାର | |

(୪) ସଖ୍ୟାବାଚକ ବଶେଷଣ

| | |
|---|---|
| ବେକ | ସପତ |
| ଦୁଇ | ବାସ୍ତର |

(୫) ପୁରଣବାଚକ ବଶେଷଣ

| | |
|---|---|
| ବୃତ, ବୃତସ୍ଥ | ସପତମ |
| ପଞ୍ଚମ | ଏକାଦଶମ |

(୬) ନର୍ଦେଶବାଚକ ବଶେଷଣ

| | |
|---|---|
| ଏ (ସ୍ୱେ) | ସେହ୍ଟ |
| ଏହୁ (ସ୍ୱେହୁ) | ସେହୁ |

† କସ ଉସ ଭ୍ରକାରେଣ ବେଲେ ତୋଲ ଧର । (ଦା. ଗ୍.—ହରଧନୁଭଙ୍ଗ)

(୭) ସଙ୍ଖ୍ୟାମକ ବିଶେଷଣ

ଏମନ୍ତ (ଯେମନ୍ତ) ସେବଣ

ଏସନ (ଯେସନ) ଚଉଂଶିଗ

(୮) କ୍ରିୟାବାଚକ ବିଶେଷଣ

ଗଟନ୍ତା କଲ (କୃତ୍ୟ)

ଜଳନ୍ତା ଝୁଣ୍ଡଳ (ପଡ଼)

କେତେକ ସ୍ଥଳରେ ସ୍ତ୍ରୀଲିଙ୍ଗ-ବିଶେଷ୍ୟର ବିଶେଷଣ ସ୍ତ୍ରୀଲିଙ୍ଗରେ ରହିଅଛି ।—

ସଙ୍ଗମଙ୍ଗଳା ରୂପ ମାତାଙ୍ଗୀ ମତଭୋଳ ୪° । ୧

ଅତିଅନ୍ତ ରୂପବନ୍ତୀ ତୈଲେକ୍ୟ ମୋହିନୀ । ୬୨୮ । ୨

ତୃମ୍ଭର ବଚନେ ମୁଂ ହୋଇଲି ତୃଷିତୀ । ୧୦୯୬ । ୨

କିନ୍ତୁ ବହୁ ସ୍ଥଳରେ ବିଶେଷ୍ୟ ସ୍ତ୍ରୀଲିଙ୍ଗରେ ଥିଲେ ମଧ୍ୟ ବିଶେଷଣ ସ୍ତ୍ରୀଲିଙ୍ଗ ଆକୃତି ଗ୍ରହଣ କରି ନାହିଁ ।—

ବଡ଼ ସୁନ୍ଦର ସେ ଅଟଇ ଗୁଣବନ୍ତୀ । ୩୫° । ୧

ଅଖଣ୍ଡିତ କନ୍ୟା ସେ ଅଟଇ ଅଭେଦ । ୧୪୧୩ । ୧

ବାଳୁତ ସୁକୁମାର ସେ ରଜାର କୁମାରୀ । ୧୩୬୫ । ୧

ଅବିଭାଇତ ଦୋହିତା ପିତାଘରେ ହୋଇଲେ ଗଳବନ୍ତୀ । ୧୨୩° । ୧

ଛଣକି ଉଦରେ ଅଶୁଦ୍ଧ ହୋନ୍ତି ନାରୀ । ୯୩୫ । ୧

ନୀଳବନ୍ତ ହୋଇଣ କନ୍ୟା ଅନାଥ କହିଲ । ୪୫ । ୧

(ନୀଳବନ୍ତ—'ସତ୍ୟବତୀ' ପଦର ବିଶେଷଣ)

ସଂସ୍କୃତ—ଇନ୍ ପ୍ରତ୍ୟୟାନ୍ତ ଶବ୍ଦର ପୁଂଲିଙ୍ଗ ପ୍ରଥମା ରୂପ ସ୍ତ୍ରୀଲିଙ୍ଗ-ବିଶେଷ୍ୟର ବିଶେଷଣ ରୂପେ ବ୍ୟବହୃତ ହୋଇଛି । —

ଅନେକ ଜନ୍ମରେ ମୁହିଂ ସଦାଶିବ ମନୋହାରୀ । ୯୮ । ୨

ମୁହିଂ ବାଳୁଳି ସେ ଅଟଇ ଦ୍ରୋହକାରୀ । ୨୩୧ । ୨

ସମସ୍ତେକେ ଗଙ୍ଗା ହୋଇଲେ ଗର୍ଭବାସୀ । ୩୩୬ । ୨

ପୁଣି ବିସ୍ମରିଲେ ମାତା ଗର୍ଭଧାରୀ ୩୬୬ । ୧

ବିଶେଷଣର ତୁଳନାଗତ ସ୍ୱତନ୍ତ୍ର ଆକୃତି ନାହିଁ । ପଞ୍ଚମୀ ବିଭକ୍ତି ବା ପଞ୍ଚମ୍ୟର୍ଥକ ପାରସର୍ଗିକ ପଦଦ୍ୱାରା ତୁଳନା ବ୍ୟକ୍ତ ହୋଇଅଛି । —

ସେହିଠାରୁଂ କଥ ମୋତେ ହେବ ପୁନ୍ୟ କଥା । ୬୪୧ । ୨

(ସେହିଠାରୁଂ ପୁନ୍ୟ—ଏହାଠାରୁ ପୁଣ୍ୟତର)

ସବୁରି ଉତ୍ତୁଂ ସତ୍ତୁଂ ହୋଇଲ ମହାଭାଗ୍ୟ । ୫୬ । ୧

(ସବୁରି ଉତ୍ତୁଂ ମହାଭାଗ୍ୟ—ସବୁଠାରୁ ଅଧିକ ମହାଭାଗ୍ୟ)

ବିନା ବିଶେଷଣରେ ମଧ୍ୟ ତୁଳନା ହୋଇଅଛି—

ସେହାଙ୍କ ସ୍ୱର୍ଗ ପାଇବ ଆଉ କାହୁଁ । ୫୨୮ । ୨

(ସେହାଙ୍କ ସ୍ୱର୍ଗ—ଏହାଠାରୁ ଅଧିକ ସ୍ୱର୍ଗ)

## ବିଶେଷଣରେ ବିଭକ୍ତି

ବିଶେଷଣରେ ମଧ୍ୟ ବିଭକ୍ତି ଚିହ୍ନ ଲାଗିଅଛି ।

(୧) ବିଶେଷ୍ୟରୂପେ ବ୍ୟବହୃତ ହୋଇଥିବା ସ୍ଥଳରେ—

ଅଗାଧ ଗମ୍ଭୀରେଣ ପଡ଼ିଲ ବାଳଶିଶୁ । ୯୨୭ । ୧

(ଗମ୍ଭୀର-ଏଣ)

ଦୁସ୍ତରୁ ତରିଅ ନାଥ ପୂରିଅ ମନବାଞ୍ଛା । ୨୨ । ୨

(ଦୁସ୍ତର-ଉ)

(୨) 'ସ୍ଥିତ' ଅର୍ଥରେ—(କ) ସପ୍ତମୀ

ଭବ ଖଳତେ ମୁଁ ହୋଇବି ଅପସ୍ତି । ୧୪୩୭ । ୨

(ଖଳିତ-ଏ)

ଦଶମାସ ସଂପୂର୍ଣ୍ଣେ ହୋଇଲା ଗର୍ଭ ସ୍ଥିର । ୩୩୮ । ୨

(ସମ୍ପୂର୍ଣ୍ଣ-ଏ)

(ଖ) ପଞ୍ଚମୀ—

ଆଳସ ପୁଣେଷ୍ଟ ଦଶମାସ ସଂପୂର୍ଣ୍ଣୁଂ । ୪୦୩ । ୨

(ସମ୍ପୂର୍ଣ୍ଣ-ଉଂ)

(୩) କ୍ରିୟାର ବିଶେଷଣରେ—

ଆରତେ ମହାତ୍ମା ପିତୃଲୋକ ତଳେ ବେଳ । ୨୧୮ । ୧

ଗାଢ଼େ ଧରଣ ମୂନ କରନ୍ତି ଅଳ ବେଳ । ୩୨୩ । ୨ †

## ବିଶେଷ୍ୟ ଅର୍ଥରେ ବିଶେଷଣ ପ୍ରୟୋଗ

ଦେଖନ୍ତେ ମୂକତ ଅଛି ପୂବରୂପ କଲା । ୪୧୭ । ୨

(ମୂକତ — ମୂକତ୍ୱ)

ବିକଳ ଦେଖି ଦୟା କଲେ ବିରଞ୍ଚି ନାରାୟଣେ । ୧୪୩୭ । ୨

(ବିକଳ—ବିକଳତା)

---

† ବର୍ତ୍ତମାନ, ବିଶେଷଣରୁ ବିଭକ୍ତି ପ୍ରୟୋଗ ବହୁଶଃ ପ୍ରଚଳିତ । ଯଥା—ଅଧୀନରେ, ସପକ୍ଷରେ, ବିପକ୍ଷରେ, ବିରୁଦ୍ଧରେ, ଅଜ୍ଞାତରୁ, ଅଧିକରୁ ଇତ୍ୟାଦି ।

ସ୍ୱେଚ୍ଛା ଶୁଣି ବିରସ ଯେ ଗ୍ରୀଡ଼ିଲା ମାନବତୀ । ୧୦୩୫ । ୧
(ବିରସ—ବିରସତା)

ଆମ୍ଭେ ତୋହର ରାଜ୍ୟ ପାଇଲୁଁ ବହୁତ ସୁସ୍ତ । ୧୩୬ । ୧ ††

## ବିଶେଷଣ ଅର୍ଥରେ ବିଶେଷ୍ୟ ପ୍ରୟୋଗ

ଧାର୍ମିକ ବିବେକ ହେ ପଣ୍ଡୁ ମାହାରାଜା । ୧୫୧୫ । ୦
(ବିବେକ—ବିବେକୀ)

ଯୋଗେଣ ନିର୍ଜିତ ରୁ ମୁନିଜନ ତପଭଙ୍ଗ । ୯୬୭ । ୬
(ଭଙ୍ଗ—ଭଙ୍ଗକାରୀ) †

---

†† ବିଶେଷ୍ୟ ଅର୍ଥରେ ବିଶେଷଣ ପ୍ରୟୋଗ ପ୍ରାଚୀନ ସାହିତ୍ୟରେ ଅନେକତ୍ର ଦେଖାଯାଏ ।—

ଚକ୍ଷୁର ସ୍ନିଗ୍ଧ ଅଧିକ ଦିଶିଲ । (ଲୁ: ସୁ: ପୃ: ୧୦୩)
କୋଟି କୋଟି ଯମର ପ୍ରାପ୍ତେକ ସାହାର ନିଷ୍ଠୁର । (ଲୁ: ସୁ: ପୃ: ୧୩୦)
ଗୁରୁ ଗୌରବ ତେଜନ୍ତୁ ଉଚ୍ଛିକ ବଢାଇ । (ଛ: ଭ: ୧୨ ଛାନ୍ଦ)
(ଉଛୁକ < ଉତ୍ସୁକ—ଔତ୍ସୁକ୍ୟ)
ସୁସ୍ଥ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ । (ର: ମ: ୧୨ ଛାନ୍ଦ)
ସୁରଗଣ ବିକଳ କଣ୍ଠେ ଶୁଣି
ଦୟାସାଗର ପ୍ରଭୁ ଚକ୍ରପାଣି । (ମ: ମ: ୧-୫୮)
ବ୍ରାହ୍ମଣକୁଳର ଆକୁଳ ତୁଟିଲା (ବୈ: ବି: ୧୭-୮)

† ବିଶେଷଣ ଅର୍ଥରେ ବିଶେଷ୍ୟ ପ୍ରୟୋଗ ମଧ୍ୟ ଅନେକତ୍ର ଦେଖାଯାଏ ।
କୋଟି କୋଟି ଧନ୍ୱନ୍ତରି ପ୍ରାପ୍ତେ ଯେ ଆରୋଗ୍ୟ । (ଲୁ: ସୁ: ପୃ: ୧୩୧)
(ଆରୋଗ୍ୟ—ଅରୋଗ)

କରୁଣ ବିନୟ ଜନେ...... (ଛ: ଭ ୭-୯)
(ବିନୟ—ବିନୟୀ)

ଏ ସୁଖ ଜାଣିମ ଯେହୁ ବିବେକ ପୁରୁଷ । (ର: ମ: ୨୪-୨୪)
(ବିବେକ—ବିବେକୀ)

ମୋର ବିଶ୍ୱାସ ରୁ ଏଣ୍ଡ ବିହୁନ୍ତୁ । (ମ: ମ: ୧-୮୦)
(ବିଶ୍ୱାସ—ବିଶ୍ୱାସୀ)

### ବିଶେଷଣ ଅର୍ଥରେ ଷଷ୍ଠୀ ପ୍ରୟୋଗ

ମଙ୍ଗଳ ଭେଜନ୍ତି ରାଜା ଅମୃତର ଯୋଗେ । ୫୪୦ । ୨
(ଅମୃତର—ଅମୃତମୟ)

ସନ୍ତାନ ଧର୍ମର ଗୋ ନନ୍ଦନଂ ବାରତା । ୮୫୫ । ୨
(ଧର୍ମର—ଧର୍ମସମ୍ବନ୍ଧୀୟ) ††

# ତ୍ରୟୋଦଶ ଅଧ୍ୟାୟ

# କ୍ରିୟା

## ଧାତୁ

କ୍ରିୟାଗୁଡ଼ିକ ସିଦ୍ଧ (Primary) ଓ ସାଧିତ (Secondary), ଉଭୟ ଶ୍ରେଣୀର ଧାତୁରୁ ଗଠିତ ।

## ସିଦ୍ଧ ଧାତୁ

ଉତ୍ପତ୍ତି ଦୃଷ୍ଟିରୁ ଏଗୁଡ଼ିକୁ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇପାରେ—ତତ୍ସମ, ଅର୍ଦ୍ଧ-ତତ୍ସମ, ତଦ୍ଭବ, ଦେଶୀ ଓ ବିଦେଶୀ ।

### (୧) ତତ୍ସମ

(କ) ନିରୁପସର୍ଗ ତତ୍ସମ—

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଗୋଟିଏ ନମୁନା |
|---|---|---|
| | (ଲଟ୍ ୧ମ ପୁରୁଷ ଏକବଚନ) | |
| ଅର୍ଜ୍ | ଅର୍ଜୟତି | ଅର୍ଜିଲ † |
| କମ୍ପ୍ | କମ୍ପତେ | କମ୍ପଇ |
| ଖଣ୍ଡ୍ | ଖଣ୍ଡୟତି | ଖଣ୍ଡି |
| ଖେଳ୍ | ଖେଳତି | ଖେଳନ୍ତି |

†† ଧାଇଁଲେ ଗୋଡ଼ାଇ ନ ପାରଇ ଲକ୍ଷେ ଟଙ୍କାର ଘୋଡ଼ା ।
(ଭ: ସୁ: ପୃ: ୧୫୬)

† 'ଅର୍ଜୟତି'ରୁ ଯେ 'ଅର୍ଜିଲ' ହୋଇଛି, ତାହା ନୁହେଁ । ନମୁନାଗୁଡ଼ିକ ଧାତୁଅଂଶ ଦର୍ଶାଇବା ନିମନ୍ତେ ଦିଆଯାଇଛି ମାତ୍ର ।

| | | |
|---|---|---|
| ଗର୍ଜ୍ | ଗର୍ଜ୍ଜୟନ୍ତି | ଗର୍ଜ୍ଜୁ |
| ଗମ୍ | ଗଚ୍ଛନ୍ତି | ଗମଇ |
| ଗଳ୍ | ଗଳନ୍ତି | ଗଳଇ |
| ଘଟ୍ | ଘଟନ୍ତେ | ଘଟି |
| ଚଳ୍ | ଚଳନ୍ତି | ଚଳିଗଲେ |
| ଜପ୍ | ଜପନ୍ତି | ଜପନ୍ତୁ |
| ତୁଳ | ତୁଳୟନ୍ତି | ତୁଳିଲେ |
| ପାର୍ | ପାରୟନ୍ତି | ପାରିଲେ |
| ପାଳ୍ | ପାଳୟନ୍ତି | ପାଳିଲେ |
| ପୀଡ଼୍ | ପୀଡୟନ୍ତି | ପୀଡ଼ିଲା |
| ପୂଜ୍ | ପୂଜୟନ୍ତି | ପୂଜିଲେ |
| ପୂର୍ | ପୂରୟନ୍ତି | ପୂରିଲା |
| ଫଳ୍ | ଫଳନ୍ତି | ଫଳିଲା |
| ବନ୍ଦ୍ | ବନ୍ଦନ୍ତେ | ବନ୍ଦଇ |
| ବଳ୍ | ବଳନ୍ତେ | ବଳଇ |
| ବସ୍ | ବସନ୍ତି | ବସିଲେ |
| ବନ୍ଧ୍ | ବନ୍ଧନ୍ତି | ବନ୍ଧଇ |
| ବାଞ୍ଛ୍ | ବାଞ୍ଛନ୍ତି | ବାଞ୍ଛୁ |
| ଭକ୍ଷ୍ | ଭକ୍ଷୟନ୍ତି | ଭକ୍ଷିଲେ |
| ସ୍ଖଳ୍ | ସ୍ଖଳୟନ୍ତି | ସ୍ଖଳନ୍ତି |
| ଶ୍ଲାଘ୍ | ଶ୍ଲାଘତେ | ଶ୍ଲାଘଇ |
| ଭ୍ରମ୍ | ଭ୍ରମନ୍ତି | ଭ୍ରମିଣ |
| ମଣ୍ଡ୍ | ମଣ୍ଡୟନ୍ତି | ମଣ୍ଡି |
| ଯା | ଯାନ୍ତି | ଯାଇ |
| ଯାଚ୍ | ଯାଚନ୍ତେ | ଯାଚ (ଅର୍ଥର ବୈପରୀତ୍ୟ) |
| ରମ୍ | ରମନ୍ତେ | ରମିଲେ |
| ରନ୍ଧ୍ | ରନ୍ଧନ୍ତେ | ରନ୍ଧିଲେ |
| ଲଙ୍ଘ୍ | ଲଙ୍ଘୟନ୍ତି | ଲଙ୍ଘିଲେ |
| ଲମ୍ବ୍ | ଲମ୍ବନ୍ତେ | ଲମ୍ବଇ |

| | | |
|---|---|---|
| ଲଭ୍ | ଲଭନ୍ତେ | ଲଭନ୍ତି |
| ଲା | ଲାତି | ଲାଇ |
| ଲୁଲ୍ | ଲୁଲତି | ଲୁଲନ୍ତି |
| ସହ୍ | ସହତେ | ସହିଲେ |
| ସେବ୍ | ସେବତେ | ସେବିଲେ |
| ହସ୍ | ହସତି | ହସିଲେ |

### (ଖ) ସୋପସର୍ଗ ତତ୍ସମ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଗୋଟିଏ ନମୁନା |
|---|---|---|
| ପ୍ର-ଶଂସ୍ | ପ୍ରଶଂସତେ | ପ୍ରଶଂସି |
| ପ୍ରତି-ପାଳ୍ | ପ୍ରତିପାଳୟତି | ପ୍ରତିପାଳନ୍ତି |
| ବି-ଲସ୍ | ବିଲସତି | ବିଲସଇ |
| ସମ୍-ଅର୍ପ୍ | ସମର୍ପୟତି | ସମର୍ପିଲେ |
| ସମ୍-ଭାଳ୍ | ସମ୍ଭାଳୟତି | ସମ୍ଭାଳି |

### (୨) ଅର୍ଦ୍ଧ-ତତ୍ସମ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଗୋଟିଏ ନମୁନା |
|---|---|---|---|
| ଅର୍ଜ୍ | ଅର୍ଜୟତି | ଅରଜ୍ | ଅରଜଇ |
| ଇଷ୍ | ଇଚ୍ଛତି | ଇଚ୍ଛ୍ | ଇଚ୍ଛିଲେ |
| ଜ୍ୱଲ୍ | ଜ୍ୱଲତି | ଜଳ୍ | ଜଳିଲା |
| ତ୍ୟଜ୍ | ତ୍ୟଜତି | ତେଜ୍ | ତେଜିଣ |
| ଦଂଶ୍ | ଦଂଶତି | ଡଂସ୍ | ଡଂସିଲା |
| ଧ୍ୱଂସ୍ | ଧ୍ୱଂସତି | ଧଂସ୍ | ଧଂସିଲୁଂ |
| ଧାବ୍ | ଧାବତି | ଧାମ୍ | ଧାମଇଂ |
| ଧ୍ୟୈ | ଧ୍ୟାୟତି | ଧ୍ୟା | ଧ୍ୟାଏ |
| ବଲ୍ଗ୍ | ବଲ୍ଗୟତି | ବଗର୍ | ବଗରିଲା |
| ବୃତ୍ | ବର୍ତ୍ତତେ | ବୃତ୍ | ବୃତନ୍ତି |
| ମା | ମାପୟତି | ମାପ୍ | ମାପିଣ |
| ମୂର୍ଚ୍ଛ୍ | ମୂର୍ଚ୍ଛତି | ମୁରୁଛ୍ | ମୁରୁଛିଲେ |

| | | | |
|---|---|---|---|
| ରଚ୍ | ରଚୟତି | ରଞ୍ଚ୍ | ରଞ୍ଚିଲେ |
| ସ୍ଥା | ତିଷ୍ଠତି (*ସ୍ଥାତି) | ଥା | ଥାଇ |
| ସ୍ଥା | ସ୍ଥାପୟତି | ଥାପ୍ | ଥାପିଲେ |
| ଆ-କୃଷ୍ | ଆକର୍ଷତି | ଅଟେଣ୍ଟ୍ | ଅଟେଣ୍ଟି |

## (୩) ତଦ୍ଭବ

### (କ) ନିରୁପସର୍ଗ ତଦ୍ଭବ—

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ମ. ଭା. ଆ. କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଏକ ନମୁନା |
|---|---|---|---|---|
| *ଅକ୍ଷ / ଆ-କ୍ଷି | ଅକ୍ଷତି | ଅଚ୍ଛଇ | ଅଛ୍ | ଅଛଇ |
| କଥ | କଥୟତି | କହେଇ | କହ୍ | କହନ୍ତି |
| ଖାଦ୍ | ଖାଦତି | ଖାଅଇ | ଖା | ଖାଇଲୁ |
| ଘଟ୍ | ଘଟୟତି | ଘଡ଼େଇ | ଗଢ଼୍ | ଗଢ଼ିଲେ |
| *ଚର୍ଷ୍ | ଚର୍ଷତି | ଚସ୍ସଇ | ଚଷ୍ | ଚଷିଣ |
| ଛର୍ଦ୍ | ଛର୍ଦୟତି | ଛଡ୍ଡେଇ | ଛାଡ଼ | ଛାଡ଼ିଲା |
| ଛୁପ୍ | ଛୁପତି | ଛୁବଇ | ଛୁଁ (ଛୁଁ) | ଛୁଇଁଲୁ |
| ଜାବ୍ | ଜାବତି | ଜଅଇ | ଜା | ଜାଇଲେ |
| ଦା | ଦଦାତି | ଦେଇ | ଦେ | ଦେଲା |
| ଦୃଶ୍ | ଦ୍ରକ୍ଷ୍ୟତି | ଦେକ୍ଖଇ | ଦେଖ୍ | ଦେଖନ୍ତି |
| ନମ୍ | ନମତି | ନଅଇଁ | ଲଁ | ଲଇଁ |
| ପଠ୍ | ପଠତି | ପଢ଼ଇ | ପଢ଼୍ | ପଢ଼ନ୍ତି |
| ପତ୍ | ପତତି | ପଡ଼ଇ | ପଡ଼୍ | ପଡ଼ଇ |
| ପ୍ରଚ୍ଛ୍ | ପୃଚ୍ଛତି | ପୁଚ୍ଛଇ | ପୁଛ | ପୁଛଇ |
| ବୃତ୍ | ବର୍ତ୍ତତେ | ବଟ୍ଟଇ | ଅଟ୍ | ଅଟଇ |
| ବୃଧ୍ | ବର୍ଧତେ | ବଡ୍ଢଇ | ବଢ଼୍ | ବଢ଼ଇ |
| ବ୍ରୂ | *ବ୍ରୂଣତେ | ବୋଲ୍ଲଇ | ବୋଲ୍ | ବୋଲଇ |
| ଭୂ | ଭବତି | ହୋଇ | ହୋ | ହୋଅଇ |
| ମାର୍ଗ୍ | ମାର୍ଗୟତି | ମଗ୍ଗେଇ | ମାଗ୍ | ମାଗଇ |

| | | | | |
|---|---|---|---|---|
| ମୁଦ୍ | ମୁଦ୍ୟତେ | ମୁଜ୍ଜଇ | ବୁଜ୍ | ବୁଜିଲା |
| ମୃଜ୍ | ମାର୍ଜସ୍ଯତି | ମଜ୍ଜେଇ | ମାଜ୍ | ମାଜଇ |
| ମୃଡ୍ | ମର୍ଦ୍ଦ୍ୟତି | ମଡ୍ଡେଇ | ମାଡ୍ | ମାଡ଼ି |
| ରକ୍ଷ୍ | ରକ୍ଷତି | ରକ୍ଖତି | ରଖ୍ | ରଖନ୍ତି |
| ରଚ୍ | ରଚୟତି | ରଚେଇ | ରଚ | ରଚଇ |
| ଲଖ୍ | ଲଖତି | ଲଦ୍ଧଇ | ଲଦ୍ଧ୍ | ଲଦ୍ଧାଇଲା |
| ଲମ୍ବ୍ | ଲମ୍ବତି | ଲମ୍ବଇ | ଲପ୍ | ଲପିବ |
| ଶିକ୍ଷ୍ | ଶିକ୍ଷତେ | ସିକ୍ଖଇ | ଶିଖ୍ | ଶିଖିଲେ |
| ଶୋଭ୍ | ଶୋଭତେ | ଶୋହଇ | ଶୋହ୍ | ଶୋହଇ |
| ସ୍ୱପ୍ | ସ୍ୱପିତି | ସୁବଇ | ଶୋ | ଶୋଇଥାଇ |
| ସ୍ଫଟ୍ | ସ୍ଫଟତି | ଫଟ୍ଟଇ | ଫାଟ୍ | ଫାଟି |
| ସ୍ଫିଟ୍ | ସ୍ଫିଟତି | ଫିଟ୍ଟଇ | ଫିଟ୍ | ଫିଟଇ |
| ସ୍ଫୁଟ୍ | ସ୍ଫୁଟତି | ଫୁଟ୍ଟଇ | ଫୁଟ୍ | ଫୁଟି |
| ସ୍ଫୁର୍ | ସ୍ଫୁରତି | ଫୁରଇ | ଫୁର୍ | ଫୁରଇ |
| ସ୍ମୃ | ସ୍ମରତି | ସୁମରଇ | ସୁମର୍ | ସୁମରନ୍ତି |

(ଖ) ସୋପସର୍ଗ ତଦ୍‌ଭବ

| ତତ୍‌ସମ ଧାତୁ | ତତ୍‌ସମ କ୍ରିୟାର ଗୋଟିଏ ନମୁନା | ମ. ଭା. ଆ. କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଏକ ନମୁନା |
|---|---|---|---|---|
| ପ୍ର-ଇଷ | ପ୍ରେଷୟତି | ପେସେଇ | ପେଷ୍ | ପେଷିଲା |
| ପ୍ର-ଉଞ୍ଛ୍ | ପ୍ରୋଞ୍ଛତି | ପୋଞ୍ଛଇ | ପୋଛ | ପୋଛୁ |
| ପ୍ର-ଈର୍ | ପ୍ରେର୍ଯ୍ୟତେ | ପେଲ୍ଲଇ | ପେଲ୍ | ପେଲ୍ |
| ପ୍ର-ଭଣ୍ | ପ୍ରଭଣତି | ପଇସଇ | ପଣ୍ | ପଣଇ |
| ପ୍ର-କ୍ଷାଳ୍ | ପ୍ରକ୍ଷାଳୟତି | ପକ୍ଖାଳେଇ | ପଖାଳ୍ | ପଖାଳିଲେ |
| ପ୍ର-ଘ୍ରା | ପ୍ରଘ୍ରାତି | ପଦ୍ଧାଇ | ପାଦ୍ଧ୍ | ପାଦ୍ଧିଲା |
| ପ୍ର-କ୍ଷିପ୍ ? | ପ୍ରକ୍ଷିପତି | ପକ୍ଖିବଇ | ପକା | ପକାବନ୍ତି |
| ବି-ଆ-ବୃତ୍ | ବ୍ୟାବର୍ତ୍ତିତେ | ବାହୁଟ୍ଟଇ | ବାହୁଡ଼୍ | ବାହୁଡ଼ନ୍ତି |
| ପ୍ର-ଉତ୍-ସ୍ଥା | ପ୍ରୋତ୍‌ଥାପୟତି | ପୋତ୍‌ଥାଏଇ | ପୋତା | ପୋତାଇଲା |

| | | | | |
|---|---|---|---|---|
| ପରା-ଅୟ୍ | ପଲାୟତେ | ପଳାଏଇ | ପଳା | ପଳା (ଅନୁଜ୍ଞା) |
| ଉତ୍-ଡୀ | ଉଡ୍ଡୟତେ | ଉଡ଼ଡଇ | ଉଡ଼୍ | ଉଡ଼ିଗଲ୍ଲ |
| ଉତ୍-ଶଲ୍ | ଉଚ୍ଛଲତି | ଉଚ୍ଛଲଇ | ଉଚ୍ଛୁଳ୍ | ଉଚ୍ଛୁଳଇ |
| ଉତ୍-ଛର୍ଦ୍ ? | ଉଚ୍ଛର୍ଦୟତି | ଉଚ୍ଛଡ୍ଡେଇ | ଉଚ୍ଛୁଡ୍ | ଉଚ୍ଛୁଡ଼ |
| ଉତ୍-ସ୍ଥା | ଉତ୍ତିଷ୍ଠତି | ଉଟ୍ଠଇ | ଉଠ୍ | ଉଠିଲେ |
| ଅପ-ସୃ | ଅପସରତି | *ଅପସ୍ସରଇ | ପାସୋର୍ | ପାସୋରଇ |
| ନି-ବୃତ୍ | ନିବର୍ତ୍ତତେ | ନିଉଟ୍ଟଇ | ନେଉଟ୍, ଲେଉଟ୍ ଲେଉଟି | |
| ଅବ-ରୁହ୍ | ଅବରୋହତି | ଓରୋହଇ | ଓହ୍ଲା | ଓହ୍ଲାଇ |
| ଅବ-ଲୁଠ୍ | ଅବଲୁଠତି | ଓଲୋଠଇ | ଓଲଟ୍ | ଓଲଟ (କୃଦନ୍ତ) |
| ଆ-ନୀ | ଆନୟତି | ଆଣଇ | ଆଣ୍ | ଆଣିଲେ |
| ଆ-ଭଷ୍ | ଆଭଷତି | ଆଇସଇ | ଆସ୍ | ଆସନ୍ତି |
| ଆ-ମୃଶ୍ | ଆମର୍ଶତି | ଆମ୍ବସଇ | ଆଉଂଶ୍ | ଆଉଂଶିଣ |
| ଭୂ-ଧା | ବଦଧାତି | ବହ୍ୱାଇ (< *ବଧାତି) | ଭିଆ | ଭିଆଇଲେ |

### (ଚ) ଗୁଣିତତସମ ତଦ୍ଭବ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଏକ ନମୁନା |
|---|---|---|---|
| ଘଟ୍ | ଘୋଟୟତି | ଘୋଟ୍ | ଘୋଟିଲ୍ଲ |
| ଛିଦ୍ | ଛେଦୟତି | ଛେଦ୍ | ଛେଦ |
| ଜୁଡ୍ | ଜୋଡୟତି | ଯୋଡ୍ | ଯୋଡ଼ |
| ଡୀ | ଡୟତି | ଡେଂ | ଡେଇଂ |
| ତୁଲ୍ | ତୋଳୟତି | ତୋଳ୍ | ତୋଳିଲ୍ଲକ |
| ତୃ | ତରତି | ତର | ତରିଅ (ପ୍ରେରଣାର୍ଥକ) |
| ଧୃ | ଧରତି | ଧର୍ | ଧର |
| ନୀ | ନୟତି | ନେ | ନେଲେ |
| ପୁଷ୍ | ପୋଷୟତି | ପୋଷ୍ | ପୋଷି |
| ବୃ | *ବରତି | ବର୍ | ବରିଲ୍ଲ |
| ଭିଦ୍ | ଭେଦୟତି | ଭେଦ୍ | ଭେଦବ |
| ଭୃ | ଭରତି | ଭର୍ | ଭରୁ |

| | | | |
|---|---|---|---|
| ମିଲ୍ | ମେଲୟତି | ମେଲ୍ | ମେଲାଉଛ |
| ମୃ | *ମରତି | ମର୍ | ମରୁ |
| ଲିଖ୍ | ଲେଖୟତି | ଲେଖ୍ | ଲେଖିଲୁ |
| ଲୁଡ୍ ? | ଲୋଡ଼ୟତି | ଲୋଡ଼୍ | ଲୋଡ଼ଇ |
| ଲୁଞ୍ଚ୍ | ଲୋଞ୍ଚୟତି | ଲୋଚ୍ | ଲୋଚ |
| ସ୍ଫିଟ୍ | ସ୍ଫେଟୟତି | ଫେଡ଼୍ | ଫେଡ଼ିଣ |
| ସୃ | ସରତି | ସର୍ | ସରଇ |
| ହୃ | ହରତି | ହର୍ | ହରଇ |
| ଅବ-ତୃ | ଅବତରତି | ଅବତର୍ | ଅବତର |
| ଉତ୍-ଧୃ | ଉଦ୍ଧରତି | ଉଧର୍ | ଉଧରିଲେ |
| ବି-ସୃ | ବିସରତି | ବିସର୍ | ବିସର |
| ସମ୍-ହୃ | ସଂହରତି | ସଂହର୍ (ସଂଘର୍) | ସଂହରିଲେ |
| ନି-ରୁପ | ନିରୂପୟତି | ନିରୋପ୍ | ନିରୋପନ୍ତି |
| ନିଃ-ତୃ | ନିସ୍ତରତି | ନିସ୍ତର୍ | ନିସ୍ତରିଲି |
| ଆ-ରୁହ୍ | ଆରୋହତି | ଆରୋହ୍ | ଆରୋହିଣ |

## (ଘ) ବର୍ଦ୍ଧିତଦ୍ଦମ ତଦ୍‌ଭବ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଗୋଟିଏ ନମୁନା |
|---|---|---|---|
| *ଖନ୍ଦ୍ | ଖନ୍ଦତି | ଖାନ୍ଦ୍ | ଖାନ୍ଦଇ |
| ଚଲ୍ | ଚ୍ଚାଲୟତି | ଚ୍ଚାଲ୍ | ଚ୍ଚାଲି |
| ତୃ | ତାରୟତି | ତାର୍ | ତାରନ୍ତି |
| ନଶ୍ | ନାଶୟତି | ନାଶ୍ | ନାଶୁ |
| ପଠ୍ | ପାଠୟତି (ମ. ଭା. ଆ.-ପାଢ଼େଇ) | ପାଢ଼୍ | ପାଢ଼ିଲି |
| *ବଣ୍ଟ୍ | ବଣ୍ଟୟତି | ବାଣ୍ଟ୍ | ବାଣ୍ଟି |

| | | | |
|---|---|---|---|
| ବନ୍ଧ୍ | ବଧ୍ନାତି | ବାନ୍ଧ୍ | ବାନ୍ଧ |
| | (ମ. ଭା. ଆ.—ବନ୍ଧଇ) | | |
| ବଢ଼ | ବାଢ଼ୟତି | ବାଢ଼ | ବାଢ଼ୁଥିବୁ |
| ଭଞ୍ଜ୍ | ଭଞ୍ଜତି | ଭାଞ୍ଜ୍ | ଭାଞ୍ଜୁ |
| ଭୂ | ଭାବୟତି | ଭାବ୍ | ଭାବୁ |
| ମନ୍ | ମାନୟତି | ମାନ୍ | ମାନନ୍ତି |
| ମୃ | ମାରୟତି | ମାର୍ | ମାରଇ |
| ରନ୍ଧ୍ | ରନ୍ଧତି | ରାନ୍ଧ୍ | ରାନ୍ଧଇ |
| ସଜ୍ଜ୍ | ସଜ୍ଜୟତି | ସାଜ୍ | ସାଜ |
| ସୃ | ସାରୟତି | ସାର୍ | ସାରଣ |
| ସ୍ଫୁଟ୍ | ସ୍ଫାଟୟତି | ଫାଟ୍ | ଫାଟି |
| ହନ୍ | ହନ୍ତି | ହାଣ୍ | ହାଣି |
| | (ମ: ଭା: ଆ—ହାଣଇ) | | |
| ଉତ୍-ଚର୍ | ଉଚ୍ଚାରୟତି | ଉଚ୍ଚର୍ | ଉଚ୍ଚର(ଅନୁଜ୍ଞା) |
| ଉତ୍-ଧୃ | ଉଦ୍ଧାରୟତି | ଉଦ୍ଧର୍ | ଉଦ୍ଧରିଲେ |
| ଉ-ନଶ | ଉନାଶୟତି | ଉନାଶ | ଉନାଶି |
| ଉ-ଚର୍ | ଉଚ୍ଚରୟତି | ଉଚ୍ଚର୍ | ଉଚ୍ଚରିଲେ |
| ଉ-ଦୃ | ଉଦାରୟତି | ଉଦାର୍ | ଉଦାର |
| ସମ୍-ପଦ୍ | ସମ୍ପାଦୟତି | ସମ୍ପାଦ୍ | ସମ୍ପାଦ |
| ସମ୍-ଭୂ | ସମ୍ଭାବୟତି | ସମ୍ଭା | ସମ୍ଭାଇଲା |
| ନି-ବୃ | ନିବାରୟତି | ନିବାର୍ | ନିବାରିବ |
| ଆ-କୃ | ଆକାରୟତି | ହକାର୍ | ହକାର |
| | (ମ.ଭା.ଆ.—ହକ୍କାରୟତି) | | |

(ଙ) ସଙ୍କରଣ ତଦ୍ଭବ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ମ. ଭା. ଆ କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଏକ ନମୁନା |
|---|---|---|---|---|
| ଗ୍ରହ୍ | ଗୃହ୍ଣାତି | ଗେହ୍ଣଇ | ଘେନ୍ | ଘେନଲେ |
| ଜ୍ଞା | ଜନ୍ୟତି | ଜାଣଇ | ଜାଣ୍ | ଜାଣଇ |

| | | | | |
|---|---|---|---|---|
| ଜ୍ଞା | ଜାନାତି | ଜାଣଇ | ଜାଣ | ଜାଣଇ |
| ତ୍ରୁଟ୍ | ତ୍ରୁଟ୍ୟତି | ତୁଟ୍ଟଇ | ତୁଟ୍ | ତୁଟଇ |
| ନୃତ୍ | ନୃତ୍ୟତି | ନଚ୍ଚଇ | ନାଚ୍ | ନାଚନ୍ତି |
| ବଦ୍ | ବାଦ୍ୟତେ | ବଜ୍ଜଇ | ବାଜ୍ | ବାଜନ୍ତି |
| ବଧ୍ | ବଧ୍ୟନ୍ତି | ବଜ୍ଝଇ | ବଝ୍ | ବଝିଲେ |
| ବୁଧ୍ | ବୁଧ୍ୟତେ | ବୁଜ୍ଝଇ | ବୁଝ୍ | ବୁଝାବନ୍ତି |
| ଭୁଞ୍ଜ୍ | ଭୁନକ୍ତି | ଭୁଞ୍ଜଇ | ଭୁଞ୍ଜ୍ | ଭୁଞ୍ଜି |
| ମଥ୍ | ମଥ୍ନାତି | ମନ୍ଥଇ | ମନ୍ଥ୍ | ମନ୍ଥିଲେ |
| ଶୁଧ୍ | ଶୁଧ୍ୟତେ | ସୁଜ୍ଝଇ | ଶୁଝ୍ | ଶୁଝଇ |
| ଶ୍ରୁ | ଶୃଣୋତି | ସୁଣଇ | ଶୁଣ୍ | ଶୁଣି |
| ଶ୍ରୁ | *ଶ୍ରୂୟତେ | ସୁବ୍ବଇ | ଶୁଭ | ଶୁଭଇ * |
| ଉତ୍-ପଚ୍ | ଉତ୍ପଚ୍ୟତେ | ଉପ୍ପଚ୍ଚଇ | ଉପୁଚ | ଉପୁଚଥାଇ |
| ଉତ୍-ପଦ୍ | ଉତ୍ପଦ୍ୟତେ | ଉପ୍ପଜ୍ଜଇ | ଉପୁଜ୍ | ଉପୁଜିଲା |

(ଚ) ନର୍ବିକାରଣ ତଦ୍ଭବ

| ତତ୍ସମ ଧାତୁ | ତତ୍ସମ କ୍ରିୟାର ଗୋଟିଏ ନମୁନା | ମ. ଭା. ଆ. କ୍ରିୟାର ଗୋଟିଏ ନମୁନା | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଏକ ନମୁନା |
|---|---|---|---|---|
| କୃ | କରୋତି | କରଇ | କର୍ | କରନ୍ତି |
| ବୃ | ବୃଣୋତି | ବରଇ | ବର | ବରିଲେ |
| ଆ-ବୃ | ଆବୃଣୋତି | ଆବରଇ | ଆବୋର୍ | ଆବୋରିଲେ |
| ପ୍ର-ଆପ୍ | ପ୍ରାପ୍ନୋତି | ପାବଇ | ପା | ପାଇଲା |

(ଛ) କ୍ତ ପ୍ରତ୍ୟୟାନ୍ତ ଶବ୍ଦଜାତ ତଦ୍ଭବ

| ତତ୍ସମ -କ୍ତପଦ | ମ.ଭା.ଆ. -କ୍ତପଦ | ଓଡ଼ିଆ ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ଗୋଟିଏ ନମୁନା |
|---|---|---|---|
| କୃତ୍ତ | କଟ୍ଟ | କାଟ୍ | କାଟ |
| କୃଷ୍ଟ | କଡ୍ଢ | କାଢ୍ | କାଢି |

* ପ୍ରାକୃତରେ ଶ୍ରୁ ଧାତୁର କର୍ମବାଚ୍ୟ ବର୍ତ୍ତମାନକାଳୀନ କୃଦନ୍ତରୂପ 'ସୁବନ୍ତ' ଓ 'ସୁବମାଣ' ହୁଏ ।

| | | | |
|---|---|---|---|
| ପର୍ଯ୍ୟସ୍ତ | ପଲ୍ଲଟ୍ଟ | ପାଲଟ୍ | ପାଲଟା (କ୍ରି.ବା. ବି०) |
| ପ୍ରତ୍ୟୁଦ୍‌ଗତ ? | ପଚ୍ଚୁଗ୍‌ଗଟ୍ଠ ? | ପାଚ୍ଛୁଟ୍ | ପାଚ୍ଛୁଟି |
| ଲଗ୍ନ | ଲଗ୍‌ଗ | ଲଗ୍ | ଲଗଇ |
| ସୁପ୍ତ | ସୁତ୍ତ | ଶୁତ୍ | ଶୁତିଲେ |

## (୪) ଦେଶଜ

ଦେଶଜ ଧାତୁଗୁଡ଼ିକ ମଧ୍ୟରୁ କେତେକ ଆର୍ଯ୍ୟ ଗୋଷ୍ଠୀର ଜନସାଧାରଣଙ୍କ ଭାଷାରେ ସ୍ୱୟଂ ଉତ୍ପନ୍ନ, ଆଉ କେତେକ ଦ୍ରାବିଡ଼ ଗୋଷ୍ଠୀର ଭାଷାରୁ ଏବଂ ଅନ୍ୟ ଜାତିର ଆଦିବାସୀମାନଙ୍କ ଭାଷାରୁ ପରିବର୍ତ୍ତିତ ବା ଅପରିବର୍ତ୍ତିତ ରୂପେ ଗୃହୀତ ।

| ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ନମୁନା | ଧାତୁ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ନମୁନା |
|---|---|---|---|
| ଖଟ୍ | ଖଟିଲେ | ଥାଳ୍ (ପ୍ରା. ଥାଳ) | ଥାଳନ୍ତି |
| ଘୁଷ୍ | ଘୁଷିଲେ | | |
| ଚଢ଼୍ (ପ୍ରା ଚଡ଼୍) | ଚଢ଼ି | ଦଗଣ୍ଡ୍ | ଦଗଣ୍ଡଇ |
| ଚୁମ୍ବ (ପ୍ରା. ଚୁମ୍ବ୍) | ଚୁମ୍ବିଲେ | ପଂଅର | ପଅଂର |
| ଝଡ଼୍ (ପ୍ରା ଝଡ଼୍) | ଝଡ଼ିଲ | ପୋଡ଼୍ | ପୋଡ଼ି |
| ଝୁଣ୍ଟ୍ | ଝୁଣ୍ଟିଲେ | ବଞ୍ଚ୍ | ବଞ୍ଚନ୍ତି |
| ଠେକ୍ | ଠେକିଲେ | ବାହୁଡ଼୍ | ବାହୁଣ |
| ଡାକ୍ | ଡାକନ୍ତି | ବାଉନ୍ (ବାହୁନ୍) | ବାହୁନ |
| ଢଳ୍ (ପ୍ରା. ଢଳ୍) | ଢଳିଲା | ବୁଡ଼୍ (ପ୍ରା ବୁଡ଼୍ଡ଼୍) | ବୁଡ଼ିଲ |
| ତୁଲ୍ | ତୁଲଇ | ଭେଟ୍ | ଭେଟିଲ |
| ଭସ୍ | ଭସିଲେ | ମଞ୍ଚାଳ୍ | ମଞ୍ଚାଳି |
| ଭିଡ଼୍ | ଭିଡ଼ି | ମେଣ୍ଟ୍ | ମେଣ୍ଟିଲେ |
| ଭୁଲ୍ | ଭୁଲିଲେ | | |

## (୫) ବିଦେଶୀ

ଗ୍ରନ୍ଥରେ ସମସ୍ତ ସଙ୍କଳିତ ଅଂଶରେ ଗୋଟିଏ ମାତ୍ର ବିଦେଶୀ ଧାତୁର କ୍ରିୟା ଦେଖାଯାଏ ।

| ଧାତୁ | ମୂଳ | ଗ୍ରନ୍ଥରେ ବ୍ୟବହୃତ କ୍ରିୟାର ନମୂନା |
|---|---|---|
| ଢଆର୍ | ଢସ୍ୱାର୍ (ଆଦେଶ) | ଢଆରନ୍ତି |

## ସାଧିତ ଧାତୁ

(କ) ପ୍ରେରଣାର୍ଥକ ଧାତୁ (ପ୍ରେରଣାର୍ଥକ କ୍ରିୟା ଦ୍ରଷ୍ଟବ୍ୟ)
(ଖ) ନାମଧାତୁ (ନାମଧାତୁ କ୍ରିୟା ଦ୍ରଷ୍ଟବ୍ୟ)

# ଚତୁର୍ଦ୍ଦଶ ଅଧ୍ୟାୟ

## କ୍ରିୟାର କାଳ ଓ ଭାବ

କ୍ରିୟାଗୁଡ଼ିକ ତିନ ପ୍ରକାର ଭାବ ଓ ୧୧ ପ୍ରକାର କାଳରେ ବ୍ୟବହୃତ ହୋଇଅଛି । †

### (୧) ନିର୍ଦ୍ଦେଶକ ଭାବ

୧ । ସାଧାରଣ ବର୍ତ୍ତମାନ କାଳ
୨ । ଅସମ୍ପନ୍ନ ,, ,,
୩ । ସମ୍ପନ୍ନ ,, ,,
୪ । ସାଧାରଣ ଅତୀତ ,,
୫ । ଅସମ୍ପନ୍ନ ,, ,,
୬ । ସଂପନ୍ନ ,, ,,
୭ । ସାଧାରଣ ଭବିଷ୍ୟତ କାଳ
୮ । ଅସମ୍ପନ୍ନ ,, ,,
୯ । ସମ୍ପନ୍ନ ,, ,,
୧୦ । ଅସମ୍ପନ୍ନ ନିତ୍ୟବୃତ୍ତ ,,
୧୧ । ସଂପନ୍ନ ,, ,,

### (୨) ଆଭିପ୍ରାୟିକଭାବ

୧୨ । ସାଧାରଣ ଆଭିପ୍ରାୟିକ

### (୩) ଅନୁଜ୍ଞା ଭାବ

୧୩ । ସାଧାରଣ ଅନୁଜ୍ଞା
୧୪ । ସଂପନ୍ନ ଅନୁଜ୍ଞା

### (୧) ସାଧାରଣ ବର୍ତ୍ତମାନ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ | ଢଅଛିଂ କରଇ | ପଢ଼ୁ | କାଢ଼େଇ, ହୋସ୍ୱେ |
| ବହୁବଚନ | ହୋଉଂ, ଡରୁ | ପାଅ | ବୃଡନ୍ତି |

† ନିର୍ଦ୍ଦେଶକ ଭାବରେ ୧୧ ପ୍ରକାର, ଆଭିପ୍ରାୟିକ ଭାବରେ ଏକ ପ୍ରକାର ଏବଂ ଅନୁଜ୍ଞା ଭାବରେ ଦୁଇ ପ୍ରକାର, ଏ ରୂପ ୧୪ ପ୍ରକାର କ୍ରିୟା ଗ୍ରନ୍ଥର ସଂକଳିତ ଅଂଶରେ ବ୍ୟବହୃତ ହୋଇଅଛି ।

(୧) ଅସଂପନ୍ନ ବର୍ତ୍ତମାନ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | ୩ୟ ପୁରୁଷ ପର | ହୋଉଅଛୁ | ଦେଉଅଛୁ, କରୁଅଛଇ |
| ବହୁବଚନ— | ଆସୁଅଛନ୍ତି | ହୋଉଅଛ | ଯାଉଅଛୁଂ |

(୩) ସଂପନ୍ନ ବର୍ତ୍ତମାନ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | ୩ୟ ପୁରୁଷ ପର | ଜାଣିଅଛୁ | ଜାଣିଅଛୁ, ନମୀଣିଅଛଇ |
| ବହୁବଚନ— | କରିଅଛୁଂ | କରିଅଛ | କରିଅଛନ୍ତି |

(୪) ସାଧାରଣ ଅତୀତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | ଅର୍ଜିଲି, କଲଇଂ, କଲଇ, ହରିଲଇଂ | ଦେଖିଲୁ | ଛେଦିଲା |
| ବହୁବଚନ— | ପାସୋରିଲୁ, ବୋଇଲୁ ଆବୋରିଲ | | ଭୁଲିଲେ |

(୫) ଅସଂପନ୍ନ ଅତୀତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | ସୁହୁଂଥିଲି | ମାଗୁଥିଲୁ | ମାଗୁଥିଲା |
| ବହୁବଚନ— | X | X | ଆସୁଥିଲେ |

(୬) ସଂପନ୍ନ ଅତୀତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | କରିଥିଲି | ମାନିଥିଲୁ | ଦେଇଥିଲା |
| ବହୁବଚନ— | କରିଥିଲୁଂ | X | ଯାଇଥିଲେ |

(୭) ସାଧାରଣ ଭବିଷ୍ୟତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | ମାରିବି, ଦେବଇଂ | କରିବୁ | ଉପୁଜିବ |
| ବହୁବଚନ— | ରହିବୁଂ | ଲଭିବ | ଆସିବେ |

(୮) ଅସଂପନ୍ନ ଭବିଷ୍ୟତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | X | ବାହୁଥିବୁ | X |
| ବହୁବଚନ— | X | ସାଜୁଥିବ | X |

## (୯) ସମ୍ପନ୍ନ ଭବିଷ୍ୟତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | X | ଦେଇଥିବୁ | X |
| ବହୁବଚନ— | X | X | X |

## (୧୦) ଅସଂପନ୍ନ ନିତ୍ୟବୃତ୍ତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | X | କରୁଥାଉ | କରୁଥାଇ |
| ବହୁବଚନ— | କରୁଥାଉଂ | X | କରୁଥାନ୍ତି |

## (୧୧) ସଂପନ୍ନ ନିତ୍ୟବୃତ୍ତ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | X | X | ନବେଶିଥାଇ |
| ବହୁବଚନ— | X | X | କରିଥାନ୍ତି |

## (୧୨) ସାଧାରଣ ଆଭିପ୍ରାୟିକ

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ— | କରନ୍ତି | X | X |
| ବହୁବଚନ— | X | ଥାଆନ୍ତ | X |

## (୧୩) ସାଧାରଣ ଅନୁଜ୍ଞା

| | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|
| ଏକବଚନ— | ମାଗ | ହେଉନ୍ତୁ |
| ବହୁବଚନ— | ଦ୍ୟାଣ | କରନ୍ତୁ |

## (୧୪) ସଂପନ୍ନ ଅନୁଜ୍ଞା

| | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|
| ଏକବଚନ— | ଖଟିଥାଅ | ବୁଡ଼ିଥାଉ |
| ବହୁବଚନ— | X | X |

ଅନୁଜ୍ଞାର ପ୍ରଥମ ପୁରୁଷ କିମ୍ବା ସଂକଳିତ ଅଂଶରେ ବ୍ୟବହୃତ ହୋଇନାହିଁ । ଭବିଷ୍ୟତକାଳିକ ଅନୁଜ୍ଞା ଓ ଭବିଷ୍ୟତ କାଳ ମଧ୍ୟରେ ଆକୃତିଗତ ପାର୍ଥକ୍ୟ ନାହିଁ ।

ଯଥା—

ଧାନ କହଇ କିଛି ନ ଘେନିବୁ ଯାଚଲେ । ୮୨୨ । ୧
ଅନୁବ୍ରତେ ଖଟିଥିବୁ ମନର ହୁଆଳ । ୨୪୧ । ୨
ପିତା ବୋଇଲେ ରୁ ଗୋ ନାବ ବାହୁଥିବୁ । ୮୨୨ । ୧

ଅସଂପନ୍ନ ଅଭିପ୍ରାୟିକ (କରୁଥାଆନ୍ତା, କରୁଥାଆନ୍ତେ ଇତ୍ୟାଦ), ସମ୍ପନ୍ନ ଆଭିପ୍ରାୟିକ (କରିଥାଅନ୍ତା, କରିଥାଆନ୍ତେ ଇତ୍ୟାଦ), ଅସପନ୍ନ ଅନୁଜ୍ଞା (କରୁଥାଉ, କରୁଥାଆନ୍ତୁ ଇତ୍ୟାଦ)—ଏହି ତନି ଶ୍ରେଣୀର କ୍ରିୟା ସଙ୍କଳିତ ଗ୍ରନ୍ଥାଂଶରେ ବ୍ୟବହୃତ ହୋଇ ନାହିଁ। ଏହି ତନିଟିକୁ ମିଶାଇଲେ ଓଡ଼ିଆରେ କ୍ରିୟା ୧୭ ପ୍ରକାର ।

# ପଞ୍ଚଦଶ ଅଧ୍ୟାୟ

## ଧାତୁ ବିଭକ୍ତି

ସମସ୍ତ କ୍ରିୟାରେ ବିଭକ୍ତି ଅଂଶ ୮ଟି ମାତ୍ର ।

୧ମ ପୁରୁଷ ଏକବଚନରେ ଗୋଟିଏ ମାତ୍ର ଏବଂ ୧ମ ପୁରୁଷ ବହୁବଚନରେ ଗୋଟିଏ ମାତ୍ର ଧାତୁ ବିଭକ୍ତି । ସେହିପରି, ୨ୟ ପୁରୁଷ ଏକବଚନରେ ଗୋଟିଏ ଏବଂ ୨ୟ ପୁରୁଷ ବହୁବଚନରେ ଗୋଟିଏ ମାତ୍ର ଧାତୁ ବିଭକ୍ତି ।—

| | ୧ମ ପୁରୁଷ | ୨ୟ ପୁରୁଷ |
|---|---|---|
| ଏକବଚନ— | ଇଂ (ଇ) | ଉ |
| ବହୁବଚନ— | ଉଂ (ଉ) | ଅ |

ଆଉ ଆଠଟି କେବଳ ୩ୟ ପୁରୁଷରେ ।

୩ୟ ପୁରୁଷ ଧାତୁ ବିଭକ୍ତି—

(କ) ଏକବଚନ

(୧) ସାଧାରଣ ବର୍ତ୍ତମାନ, ଅସଂପନ୍ନ ବର୍ତ୍ତମାନ, ସଂପନ୍ନ ବର୍ତ୍ତମାନ, ଅସପନ୍ନ ନତ୍ୟବୃତ୍ତ ଓ ସଂପନ୍ନ ନତ୍ୟବୃତ୍ତରେ—ଇ

(୨) ସାଧାରଣ ବର୍ତ୍ତମାନରେ—ଏ

(୩) ସାଧାରଣ ଭବଷ୍ୟତ, ଅସପନ୍ନ ଭବିଷ୍ୟତ ଓ ସଂପନ୍ନ ଭବିଷ୍ୟତରେ—ଅ

(୪) ସାଧାରଣ ଅତୀତ, ଅସଂପନ୍ନ ଅତୀତ, ସପନ୍ନ ଅତୀତ, ସାଧାରଣ ଆଭିପ୍ରାୟିକ, ଅସପନ୍ନ ଆଭିପ୍ରାୟିକ ଓ ସପନ୍ନ ଆଭିପ୍ରାୟିକରେ—ଆ

(୫) ସାଧାରଣ ଅନୁଜ୍ଞା, ଅସଂପନ୍ନ ଅନୁଜ୍ଞା ଓ ସପନ୍ନ ଅନୁଜ୍ଞାରେ—ଉ

(ଖ) ବହୁବଚନ

(୬) ସାଧାରଣ ବର୍ତ୍ତମାନ, ଅସପନ୍ନ ବର୍ତ୍ତମାନ, ସପନ୍ନ ବର୍ତ୍ତମାନ, ଅସପନ୍ନ ନତ୍ୟବୃତ୍ତ ଓ ସପନ୍ନ ନତ୍ୟବୃତ୍ତରେ—ଅନ୍ତି

(୭) ସାଧାରଣ ଅତୀତ, ଅସପନ୍ନ ଅତୀତ, ସପନ୍ନ ଅତୀତ, ସାଧାରଣ ଭବିଷ୍ୟତ, ଅସପନ୍ନ ଭବିଷ୍ୟତ, ସପନ୍ନ ଭବିଷ୍ୟତ, ସାଧାରଣ ଆଭିପ୍ରାୟିକ, ଅସପନ୍ନ ଆଭିପ୍ରାୟିକ ଓ ସପନ୍ନ ଆଭିପ୍ରାୟିକରେ—ଏ

(୮) ସାଧାରଣ ଅନୁଜ୍ଞା, ଅଯପନ୍ତ ଅନୁଜ୍ଞା ଓ ଯପନ୍ତ ଅନୁଜ୍ଞାରେ—ଅନ୍ତୁ
ଅତଏବ ୧୨ଟି ଧାତୁ ବିଭକ୍ତି ହେଲ—

| | ୧ମ ପୁରୁଷ | ୨ୟ ପୁରୁଷ | ୩ୟ ପୁରୁଷ |
|---|---|---|---|
| ଏକବଚନ | —ଇଂ (ଇ) | ଉ | ଇ, ଏ, ଅ, ଆ, ଉ |
| ବହୁବଚନ | —ଉଂ (ଉ) | ଅ | ଅନ୍ତି, ଏ, ଅନ୍ତୁ |

୩ୟ ପୁରୁଷ ଏକବଚନ '-ଏ' ସ୍ୱରାନ୍ତ ଧାତୁ ପରେ ରହିଲେ ଯ୍‌ ଧ୍ୱନି ଗ୍ରହଣ କରିଅଛି—

ହୋଯେ, ହୋଏ, ପକାଯେ, ପକାଏ

-ଇ, -ଇଂ ସଶ୍ଳିଷ୍ଟ ତଥା ବିଶ୍ଳିଷ୍ଟ, ଉଭୟ ଅବସ୍ଥାରେ ରହିଛି । ବିଶ୍ଳିଷ୍ଟ ଅବସ୍ଥାରେ ଏହା 'ଅ' ବିକରଣର ସାହାଯ୍ୟ ନେଇଅଛି ।

ସଶ୍ଳିଷ୍ଟ

ଯାଚ୍‌+ଇ=ଯାଚ (ଯାଚଇ)

କରୁ-ଅଛ୍‌+ଇ=କରୁଅଛି

ବିଶ୍ଳିଷ୍ଟ

ଆଣ୍‌+ଅ-ଇଂ=ଅଣଇଂ

କରୁ-ଅଛ୍‌+ଅ-ଇ=କରୁଅଛଇ †

ଅନ୍ୟ ସମସ୍ତ ବିଭକ୍ତି ବ୍ୟଞ୍ଜନାନ୍ତ ଧାତୁରୁ ସଶ୍ଳିଷ୍ଟଭାବରେ ଏବଂ ସ୍ୱରାନ୍ତ ଧାତୁରୁ ବିଶ୍ଳିଷ୍ଟ ଭାବରେ ରହିଅଛି ।

ପଢ଼୍‌+ଉ=ପଢ଼ୁ

ଯା—ଉ=ଯାଉ ଇତ୍ୟାଦ

କେତେକ ସ୍ଥଳରେ ୩ୟ ପୁରୁଷ ଏକବଚନରେ ମଧ୍ୟ -ଇଂ ରହିଛି —

ଧାମଇଂ କୋପେ ସେ ପ୍ରସୁଧର ନାଥ ୭୧୮ । ୧

ପଡ଼ତ ଅମ୍ବ ପଣ ଲେଚଯେ ଆଣଇଂ ସାଉଂଟି ୧୩୭ · । ୧

ଏଠାରେ ପ୍ରକୃତ ବିଭକ୍ତି ହେଉଛି -ଇ । ତାହା ପୂର୍ବବର୍ତ୍ତୀ ଅନୁନାସିକ ଧ୍ୱନିର ପ୍ରଭାବରୁ ଅନୁନାସିକ ହୋଇଅଛି ମାତ୍ର ।

---

† ୧ମ ପୁରୁଷ ବହୁବଚନ -ଉ (-ଉଂ) ମଧ୍ୟ ବିଶ୍ଳିଷ୍ଟ ଅବସ୍ଥାରେ ରହିଛି । ଯଥା—
କହିଲଉଁ ଗୁହ୍ୟ ତତ୍ତ୍ୱ ନ କର ଅନ୍ୟ ଗୋ ।
(ଆମ୍ଭେ କହିଲୁଁ) (ର. ମ. ୭-୫୨)

ଏବେ ୧ମ ପୁରୁଷ ଓ ୨ୟ ପୁରୁଷ ମିଳି କର୍ତ୍ତା ହେଲେ ଭବିଷ୍ୟତ କାଳ ବ୍ୟତୀତ ଅନ୍ୟାନ୍ୟ କାଳରେ ଧାତୁବିଭକ୍ତି-ଉ ବା ଏଁ ହେଉଛି । ଯଥା—

# ଷୋଡ଼ଶ ଅଧ୍ୟାୟ

## ଧାତୁ ବିଭକ୍ତି ଗୁଡ଼ିକର ଉତ୍ପତ୍ତି ସୂତ୍ର

### ୧ମ ପୁରୁଷ ଏକବଚନ

ଧାତୁ ବିଭକ୍ତି — ଉତ୍ପତ୍ତିସୂତ୍ରର ନମୁନା

-ଇଂ (-ଇ) ପ୍ରା.ଭା.ଆ. ପଠାମି > ମ ଭା.ଆ. ପଢ଼ାମି > ପଢ଼ମି > ଓ. ପଢ଼ଇଂ, ପଢ଼ଇ (ପଢ଼୍ + ବିକରଣ-ଅ ବିଭକ୍ତି-ଇଂ,-ଇ)

### ୧ମ ପୁରୁଷ ବହୁବଚନ

-ଉଂ (-ଉ) ପ୍ରା.ଭା.ଆ. ପଠାମଃ > ମ. ଭା.ଆ ପଢ଼ାମୋ > ପଢ଼ମୋ > ପଢ଼ମୁ > ପଢ଼ଉଂ > ଓ. ପଢ଼ୁଂ (ପଢ଼ୁଁ) ପଢ଼ୁ । (ପଢ଼୍ + ଉଂ, ପଢ଼୍ + ଉ)

### ୨ୟ ପୁରୁଷ ଏକବଚନ

-ଉ ପଠଥଃ > ପଢ଼ହୋ > ପଢ଼ହୁ > ପଢ଼ଉ > ପଢ଼ୁ । 'ତୁ' କର୍ତ୍ତାର ଅନ୍ୟ ସ୍ୱରଦ୍ୱାରା ମଧ୍ୟ ପ୍ରଚଳିତ । (ତୁ ପଢ଼, ତୁ କରୁ ଇତ୍ୟାଦି) (ପଢ଼୍ + ଉ, କର୍ + ଉ)

### ୨ୟ ପୁରୁଷ ବହୁବଚନ

-ଅ ପଠଥ > ପଢ଼ହ > ପଢ଼ଅ > ପଢ଼ । ( ପଢ଼୍ + ଅ ) * ଏହାର ସାଦୃଶ୍ୟରେ (ପଠିତ >) ପଢ଼ିଲ + ଅ = ପଢ଼ିଲ, (ପଠିତବ୍ୟ > (ପଢ଼ିବ + ଅ = ପଢ଼ିବ, (ପଠନ୍ତଃ >) ପଢ଼ନ୍ତ + ଅ = ପଢ଼ନ୍ତ ଇତ୍ୟାଦି । ଅନୁଜ୍ଞାରେ ପଠତ > ପଢ଼ଅ > ପଢ଼ । (ପଢ଼୍ + ଅ)

### ୩ୟ ପୁରୁଷ ଏକବଚନ

-ଇ ପଠତି > ପଢ଼ଇ ପଢ଼୍ + ବିକରଣ-ଅ-ବିଭକ୍ତି -ଇ

-ଏ ପଠତି > ପଢ଼ଇ > ପଢ଼େ (ପଢ଼୍ + ଏ)

---

ଆମେ (ତୁ ଓ ମୁଁ କମ୍ବା ତୁମେ ଓ ଆମେ) ଯାଉଥାଉଁ, ଯାଉଛେଁ, ଗଲେଁ, ଯାଇଥିଲେଁ ଇତ୍ୟାଦି । (ଯାଉଛେଁ >ଯାଉଅଛଉଁ, ଗଲେଁ > ଗଲଉଁ, ଯାଇଥିଲେଁ > ଯାଇଥିଲଉଁ) ।

ଧାତୁବିଭକ୍ତିର ଅନୁନାସିକତା ଏବେ କ୍ରମଶଃ ହ୍ରାସ ପାଉଅଛି । ତେଣୁ, ଯାଏ (ଯାଏଁ), ଯାଉ (ଯାଉଁ), ଯାଉଛେ (ଯାଉଛେଁ), ଗଲେ (ଗଲେଁ), ଯାଉଥାଇ (ଯାଉଥାଉଁ) ଇତ୍ୟାଦି ଅନୁନାସିକ ସ୍ଥଳରେ ନିରନୁନାସିକ ହେଉଛି ।

* ଅପରାଧ ଅନୁରୂପେ କରିବ ଦଣ୍ଡ (ଭ. ଭି. ୭-୫)

-ଅ ପ୍ରା.ଭା.ଆ. -ତବ୍ୟ କ୍ରିୟାବାଚକ ବିଶେଷଣର ଅନ୍ତ୍ୟ ସ୍ୱର -ଅ । ଯଥା—ପଠିତବ୍ୟ > ମ.ଭା.ଆ ପଢ଼ିଅଲ୍ଲ > ଓ ପଢ଼ିବ ।

-ଆ ସମ୍ଭବତଃ କର୍ତ୍ତାର ସ୍ୱାର୍ଥେ -ଆ (ଯଥା—ବଳନ୍ > ବଳନ୍ତା, ଦେବ > ଦେବା, ଖାଉ > ଖାଏ ଇତ୍ୟାଦି)ର ସାମଞ୍ଜସ୍ୟରୁ ଉତ୍ପନ୍ନ । (ପଢ଼ିଲ+ଆ, ପଢ଼ନ୍ତ+ଆ) * ଏହି ସ୍ୱାର୍ଥେ -ଆ ସମ୍ଭବତଃ ଶବ୍ଦର ଅନ୍ତ୍ୟ ସଂବୃତ 'ଅ'ର ବିବୃତ ଧ୍ୱନି ।

-ଉ ପ୍ର ଭା.ଆ. ପଠରୁ > ମ.ଭା ଆ. ପଢ଼ଉ> ଓ ପଢ଼ୁ (ପଢ଼୍+ଉ)

## ତୃତୀୟ ପୁରୁଷ ବହୁବଚନ

-ଅନ୍ତି ପ୍ରା. ଭା. ଆ. ପଠନ୍ତି > ମ. ଭା. ଆ. ପଢ଼ନ୍ତି, ଓ. ପଢ଼ନ୍ତି (ପଢ଼୍+ଅନ୍ତି)

-ଏ କର୍ତ୍ତା ବହୁବଚନବାଚକ ଚିହ୍ନ '-ଏ'ର ସାମଞ୍ଜସ୍ୟରୁ ଉତ୍ପନ୍ନ । ଯଥା—ଲୋକେ ପଢ଼ିଲେ (ଲୋକ-ଏ, ପଢ଼ିଲ-ଏ) ଲୋକେ ପଢ଼ନ୍ତେ (ଲୋକ-ଏ, ପଢ଼ନ୍ତ-ଏ)

-ଅନ୍ତୁ ପ୍ରା. ଭା. ଆ. ପଠନ୍ତୁ > ମ. ଭା. ଆ. ପଢ଼ନ୍ତୁ > ଓ. ପଢ଼ନ୍ତୁ (ପଢ଼୍ +ଅନ୍ତୁ)

# ସପ୍ତଦଶ ଅଧ୍ୟାୟ

## ଅତିରିକ୍ତ ଧାତୁବିଭକ୍ତି -ସି

ଅନୁଜ୍ଞା ୨ୟ ପୁରୁଷରେ '-ସି'ର ବହୁଳ ବ୍ୟବହାର ଦେଖାଯାଏ ।—

ରଙ୍ଗା ବୋଇଲେ ରୁ ଶୁଣସି ମୋହୋର ପିତା ୧୭୮ । ୧

ଦେଖସି ଯାଇ ରୁ ସେପ ଭ୍ରମିଣ ଠାବେ ଠାବେ ୧୯୯ । ୨

ପଳ ଅସି ମୋହର ରାଜ୍ୟ ରୁ ଉପେଖି ୭୯୨ । ୨

ବସ୍ତ୍ର ଖଟିଆଅସି ଗୋ ମହାମାୟା ୬୮୫ । ୨

ସାଧାରଣ ଅତୀତ କାଳ ୨ୟ ପୁରୁଷରେ ମଧ୍ୟ -ସି ବ୍ୟବହୃତ ହୋଇଅଛି ।—

ସ୍ୱେ ଦଇବ ସେ୍ୱସନ କଲସି ବିସ୍ମର ୧୦୮୨ । ୨

ଏହି -ସି ହେଉଛି ପ୍ରା. ଭା. ଆ ବର୍ତ୍ତମାନ କାଳ ୨ୟ ପୁରୁଷ ଏକବଚନ '-ସି' । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏହାର ବହୁଳ ବ୍ୟବହାର ରହିଛି ।—

ସେ ଫଳ ପ୍ରାପତ ତାଙ୍କ ଶୁଣସି ମୃଗାହି । (ର.ମ. ୭-୨୨)

ପ୍ରାଣବନ୍ଧୁ କିପି କଥା କହସି ସିଂଗଣି ଗୋ । (ଲ.ଭ. ୭-୬୭)

କ ବୁଦ୍ଧି କରିବା କହସି ବୋଇଲା । (ଭୂ. ସୂ. ପୁ ୧୫୨)

---

* ବର୍ତ୍ତମାନକାଳର ଓ ଭୂତକାଳର କ୍ରିୟାବାଚକ ବିଶେଷଣ ଦ୍ରଷ୍ଟବ୍ୟ ।

ସ୍ୱେ ପୁଷ୍ପ ଦେଉ ତୁ ଥିର ହୋଇ ଆସି (ଦା.ସ. -ହରଧନୁଭଙ୍ଗ)

ଭୂତଳେ ମନୋହ୍ର ଦୃଷ୍ଟା ଭ୍ରମଣ କରସି (କ.ଚ ) ⁕

ବର୍ତ୍ତମାନ ଭାଷାରେ ଅନୁଜ୍ଞାର ୨ୟ ପୁରୁଷ ଅନାଦରସୂଚକ ଏକବଚନରେ ମୂଳଧାତୁ କ୍ରିୟାରୂପେ ବ୍ୟବହୃତ ହୁଏ । ଯଥା—

ତୁ କର୍, ତୁ ଦେ ଇତ୍ୟାଦି ।

କଥିତ ଭାଷାରେ ଅନୁଜ୍ଞାର ମୂଳ ଧାତୁର ସ୍ୱର ପ୍ରସାରିତ ହୋଇ ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣରେ ମଧ୍ୟ ଯୁକ୍ତ ହୋଇଯାଏ । ଯଥା—

ତୁ ହଅସ, ତୁ କଅର, ତୁ ଶୁଅଣ୍ଡ, ତୁ ଦେଏଖ ଇତ୍ୟାଦି ।

(ତୁ ହସ୍, ତୁ କର୍, ତୁ ଶୁଣ୍, ତୁ ଦେଖ୍)

ଅନୁଜ୍ଞାରେ ମୂଳ ଧାତୁର ଏପରି ପ୍ରସାରିତ ଉଚ୍ଚାରଣ ବହୁ ପ୍ରାଚୀନ ବୋଲି ଜଣାଯାଏ । ରୁଦ୍ରସୁଧାନିଧିରେ—

ହେ ଆମ୍ଭର ହାତେ ବଡ଼ପଣ ଶୁନ୍ତ (ତୁ ଶୁଣ୍) (ପୃ. ୭୬)

ପ୍ରଣତଳଚଣ ହାତେ ଶୁଣ୍ଡ (ତୁ ଶୁଣ୍) (ପୃ ୧୨୭)

ସଙ୍କଳିତ ଗ୍ରନ୍ଥାଂଶରେ କେବଳ ଆକାରାନ୍ତ ଧାତୁକୁ ଛାଡ଼ିଦେଲେ ଅନ୍ୟ କୌଣସି ଧାତୁ ଅନୁଜ୍ଞା କ୍ରିୟାରୂପେ ବ୍ୟବହୃତ ହୋଇନାହିଁ । ଆକାରାନ୍ତ ଧାତୁ ଅନୁଜ୍ଞାକ୍ରିୟାରୂପେ—

ପଳାଯା ମିଛେ ଏଥେ ନ ବଖାଣ ବଡ଼ପଣ ୭୪୭ । ୧

ପ୍ରେରଣାର୍ଥକ ଧାତୁ ଆକାରାନ୍ତ ହେତୁ ଅନୁଜ୍ଞାକ୍ରିୟାରୂପେ ରହିଅଛି ।—

ବଂଶ ଜାତ କର ଗୋ କ୍ଷତ୍ରିଧର୍ମ ବୁଝା । ୭୮୮ । ୨

ପ୍ରକୃତରେ, ଅନୁଜ୍ଞାର ଆକାରାନ୍ତ କ୍ରିୟା ମୂଳଧାତୁ ମାତ୍ର ନୁହେଁ । ସେଥିରେ ୨ୟ ପୁରୁଷର ଧାତୁବିଭକ୍ତି '-ଅ' ସଂଯୁକ୍ତ ହୋଇଅଛି । ଯଥା—

ପଳାଅ > ପଳା, ବୁଝାଅ > ବୁଝା ।

ଉକ୍ତ '-ଅ' ପୃଥକ୍ ମଧ୍ୟ ରହିଅଛି ।—

ଲଜ୍ୟା କି ନ ପାଅ ମୋତେ ଶୃଙ୍ଗାର ମାଗିବାକୁ । ୮୯୨ ।

ସ୍ୱାମୀଙ୍କ ସେବା କର ଥାଅ ଅନୁବ୍ରତେ ୬୪ । ୧ †

---

⁕ ଆଇସସି କାସି ଡୋମ୍ବି ଭାହାର ନାବେଁ ।

(ବୌ ଦୋ କାହ୍ନୁପା ଚର୍ଯ୍ୟା ୧୦)

† ବର୍ତ୍ତମାନ, ଏହି '-ଅ' ଅସଂଯୁକ୍ତ ଅବସ୍ଥାରେ ରହିଲେ ଆଦର ଅର୍ଥ ଏବଂ ସଂଯୁକ୍ତ ଅବସ୍ଥାରେ ରହିଲେ ଅନାଦର ଅର୍ଥ ସୂଚିତ କରେ । ଯଥା—ତୁମେ ଯାଅ, ତୁ ଯା ।

# ଅଷ୍ଟାଦଶ ଅଧ୍ୟାୟ

## କାଳ ଓ ଭାବର ବିଶ୍ଳେଷଣ

ଗଠନ ଦୃଷ୍ଟିରୁ ସମସ୍ତ ପ୍ରକାର କାଳ ଓ ଭାବ ୩ ଶ୍ରେଣୀରେ ବିଭକ୍ତ—(୧) ମୌଳିକ (୨) କ୍ରିୟାବାଚକ ବିଶେଷଣମୂଳକ (୩) ଯୌଗିକ ।

### (୧) ମୌଳିକ କାଳ ଓ ଭାବ

ସାଧାରଣ ବର୍ତ୍ତମାନ ଓ ସାଧାରଣ ଅନୁଜ୍ଞା ଏହି ଶ୍ରେଣୀର ଅନ୍ତର୍ଗତ । ଏଥିରେ ଗୋଟିଏ କ୍ରିୟାର ଗୋଟିଏ ଧାତୁ ଓ ଗୋଟିଏ ବିଭକ୍ତି । ଯଥା—

ଶୁଣ୍ + ବିକରଣ-ଅ-ବିଭକ୍ତି-ଇ = ଶୁଣଇ
କର + ବିଭକ୍ତି-ଅନ୍ତି = କରନ୍ତି
ପଢ଼୍ + ଉ = ପଢ଼ୁ, ଆସ + ଅନ୍ତୁ = ଆସନ୍ତୁ, ଇତ୍ୟାଦି ।

ବ୍ୟୁତ୍ପତ୍ତିଦୃଷ୍ଟିରୁ ଏହି କାଳ ଓ ଭାବ ପ୍ରା. ଭା. ଆ. ରୁ ଆସିଛି, ଯଥା—

—ଶୃଣୋତି > ଶୁଣଇ
ପଠାମି > ପଢ଼ଇଁ (ଁ)
ହସଥ > ହସହ > ହସଅ > ହସ
ନୟନ୍ତୁ > ନେନ୍ତୁ
—ପଠନ୍ତୁ > ପଢନ୍ତୁ ଇତ୍ୟାଦି ।

### (୨) କ୍ରିୟାବାଚକ ବିଶେଷଣମୂଳକ କାଳ ଓ ଭାବ

ସାଧାରଣ ଅତୀତ, ସାଧାରଣ ଭବିଷ୍ୟତ ଓ ସାଧାରଣ ଅଭିପ୍ରାୟିକ ଏହି ଶ୍ରେଣୀର ଅନ୍ତର୍ଗତ । ଏଥିରେ କ୍ରିୟାବାଚକ ବିଶେଷଣରୁ ପୁରୁଷ ଓ ବଚନ ବୋଧକ ବିଭକ୍ତି ଲଗି କ୍ରିୟା ଗଠିତ ।

(କ) ଭୂତକାଳିକ କ୍ରିୟାବାଚକ ବିଶେଷଣରୁ—

(କୃତ > ) କଲ + ଏ = କଲେ
(ଭୂତ > ) ହୋଇଲ + ଆ = ହୋଇଲା
(ଦତ୍ତ > ) ଦେଲ + ଉ = ଦେଲୁ ଇତ୍ୟାଦି

(ଖ) ଭବିଷ୍ୟତ କାଳିକ କ୍ରିୟାବାଚକ ବିଶେଷଣରୁ—

[(ଦାତବ୍ୟ > ) ଦେବ ଇଂ = ଦେବଇଂ
[(କର୍ତ୍ତବ୍ୟ > ) କରିବ + ଉଂ = କରିବୁଂ

(ଗ) ବର୍ତ୍ତମାନ କାଳିକ କ୍ରିୟାବାଚକ ବିଶେଷଣ ଆକୃତିରୁ—
(କୃଦନ୍ତ > ) କରନ୍ତେ + ଏ = କରନ୍ତେ
(*ଥାନ୍ତ > ) ଥାଆନ୍ତ + ଅ = ଥାଆନ୍ତ ଇତ୍ୟାଦି

(କ୍ରିୟାବାଚକ ବିଶେଷଣ ଦ୍ରଷ୍ଟବ୍ୟ)

## (ଡ) ଯୌଗିକ କାଳ ଓ ଭାବ

ଉପର୍ଯ୍ୟୁକ୍ତ ଦୁଇ ଶ୍ରେଣୀର କାଳ ଓ ଭାବକୁ ବାଦ୍ ଦେଲେ ଅନ୍ୟ ସବୁଗୁଡ଼ିକ (କାଳ ବା ଭାବ) ଯୌଗିକ । ଏଥିରେ ଗୋଟିଏ କ୍ରିୟାର ଦୁଇଟି ଧାତୁ ଓ ଦୁଇଟି ବିଭକ୍ତି । ପ୍ରଥମ ଧାତୁଟି ମୁଖ୍ୟ ଓ ଦ୍ୱିତୀୟଟି ଗୌଣ ବା ସାହାଯ୍ୟକାରୀ । ମୁଖ୍ୟ ଧାତୁରେ '-ଉ' ବା '-ଇ' ପ୍ରତ୍ୟୟ ଯୁକ୍ତ ହୋଇଥାଏ । '-ଉ' କ୍ରିୟାର ଅସଂପନ୍ନତା ଓ '-ଇ' ସଂପନ୍ନତା ସୂଚିତ କରେ ।

ସାହାଯ୍ୟକାରୀ ଅଂଶରେ 'ଅଛ' ଓ 'ଥା' ଏହି ଦୁଇଟିମାତ୍ର ଧାତୁ ବ୍ୟବହୃତ । ଅତୀତ ଓ ଭବିଷ୍ୟତ କାଳମାନଙ୍କରେ ଏବଂ ଅଭିପ୍ରାୟିକ ଭାବରେ 'ଥା' କ୍ରିୟାବାଚକ ବିଶେଷଣ ଆକୃତି ଗ୍ରହଣ କରିଅଛି । ଅନ୍ୟତ୍ର ତାହା ମୂଳଧାତୁ (ଅ) ଆକୃତିରେ ରହିଅଛି । ଏହି 'ଅଛ' 'ଥା' ଏବଂ 'ଥା'ର କ୍ରିୟାବାଚକ ବିଶେଷଣ ଆକୃତିଗୁଡ଼ିକରୁ ପୁରୁଷ ଓ ବଚନ ବୋଧକ ବିଭକ୍ତି ଯୁକ୍ତ ହୋଇଅଛି ।—

### ଅସଂପନ୍ନତା ସାହାଯ୍ୟକାରୀ ଧାତୁ

| ମୁଖ୍ୟ ବା ଧାତୁ | ସଂପନ୍ନତା ବା ସୂଚକ ପ୍ରତ୍ୟୟ | କ୍ରିୟାବାଚକ ବିଶେଷଣ ଆକୃତି | ଧାତୁ-ବିଭକ୍ତି | ଯୌଗିକ କ୍ରିୟା |
|---|---|---|---|---|
| କର୍ | ଉ | ଅଛ୍ | ଇ | କରୁଅଛି |
| କର୍ | ଇ | ଅଛ୍ | ଉଂ | କରୁଅଛୁଂ |
| କର୍ | ଉ | ଥା | ଇ | କରୁଥାଇ |
| ବୁଲ୍ | ଇ | ଥା | ଉ | ବୁଲିଥାଉ |
| ମାର୍ | ଉ | ଥିଲ | ଆ | ମାରୁଥିଲା |
| ଯା | ଇ | ଥିଲ | ଏ | ଯାଇଥିଲେ |
| ଖାକ୍ | ଉ | ଥିବ | ଅ | ଖାକୁଥିବ |
| ଦେ | ଇ | ଥିବ | ଉ | ଦେଇଥିବୁ |

| | | | |
|---|---|---|---|
| କର୍ | ଉ | ଆଆନ୍ତି (ଆନ୍ତି) ଇ | କରୁଆଆନ୍ତି (କରୁଆନ୍ତି) |
| କର୍ | ଇ | ଆଆନ୍ତି (ଆନ୍ତି) ଏ | କରିଆଆନ୍ତେ (କରିଆନ୍ତେ) |

କେତେକ ସ୍ଥଳରେ ସାହାଯ୍ୟକାରୀ ‘ଅଛ୍’ ଧାତୁର ‘ଅ’ ପୂର୍ବବର୍ତ୍ତୀ ‘-ଉ’ ବା ‘-ଇ’ ସ୍ୱରର ସଂଯୋଗରେ ଲୁପ୍ତ ହୋଇଅଛି ।—

କରୁ-ଅଛି = କରୁଛି, କରି-ଅଛନ୍ତି = କରିଛନ୍ତି *

କ୍ରିୟାବାଚକ ବିଶେଷଣମୂଳକ ଓ ଯୌଗିକ କାଳ ତଥା ଭାବ ମ.ଭା.ଆ.ର ଅନ୍ତ୍ୟ ସ୍ତରରେ ଉତ୍ପନ୍ନ ।

## ଯୌଗିକ କ୍ରିୟା

ଦଶ ପ୍ରକାର ଯୌଗିକ କ୍ରିୟା ବ୍ୟବହୃତ ହୋଇଅଛି ।

(୧) ବିଶେଷ୍ୟ ଓ ସହାୟକ ‘କର୍’ ଧାତୁ

(କ) ତତ୍ସମ କ୍ରିୟାବାଚକ ବିଶେଷ୍ୟ ଓ ‘କର୍’ ଧାତୁ—

| | |
|---|---|
| ଆଗମ କଲେ | ପ୍ରବୋଧନା କରନ୍ତି |
| ଆରାଧନା କରଇ | ପ୍ରହାର କରୁ |
| ଆରୋପଣ କଲେ | ବଧ କଲା |
| ଆଲିଙ୍ଗନ କରନ୍ତି | ବିଚାର ନ କଲା |
| ଆସ୍ୱାଦନା କରନ୍ତି | ବିସ୍ତାର କର |
| ଆହାର କରନ୍ତି | ଭୋଗ କଲା |
| ଉପେକ୍ଷା କର | ଭୋଜନ କରନ୍ତି |
| ଗମନ କରନ୍ତି | ଲଙ୍ଘନ ନ କରି |
| ଦହନ କରି | ରକ୍ଷା କରୁ |
| ଦୃଷ୍ଟି କରନ୍ତି | ରମଣ କରନ୍ତି |
| ପାଠ କଲେ | ରୋଦନ କରୁ |
| ପାରଣା କରନ୍ତି | ଲେଖନ କର |
| ପୂଜା କଲେ | ଲେପନ କରି |
| ପଦାନ କଲେ | ସମାର୍ଜନା କଲେ |

---

* ମୌଳିକ ‘ଅଛନ୍ତି’ ଓ ‘ଅଛି’ କ୍ରିୟାର ମଧ୍ୟ ‘ଅ’ ଲୁପ୍ତ ହୋଇଛି । ଯଥା— ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁ ଛନ୍ତି (ମା. ପା. ଯଯାତିକେଶରୀ) (କାହିଁ ଅଛନ୍ତି) ବିଷ୍ଣୁ ପଦ ପରାକ୍ରମ କାହିଁ ଛି (ବୈ.ଚ. ୩୧-୧୯) (କାହିଁ ଅଛି)

(ଖ) ଅନ୍ୟାନ୍ୟ ତତ୍ସମ ବିଶେଷ୍ୟ ଓ କର୍ ଧାତୁ—

| | |
|---|---|
| ଅବଗ୍ୟାଂ କରିବ | ତୀର୍ଥ କଲେ |
| କଷଣ କଲ | ଦୟା କରଇ |
| କ୍ରୋଧ କଲ | ନାସ୍ତି କରୁ |
| ବଚନ କର | ରାଜ୍ୟ କରନ୍ତି |
| ଭସ୍ମ କଲ | ହତ୍ୟା କଲି |
| ଭ୍ରାନ୍ତ ନ କଲେ | ସାଧୁ ସାଧୁ କଲେକ |

(ଗ) ତଦ୍ଭବ ତଥା ଦେଶୀ ବିଶେଷ୍ୟ ଓ କର୍ ଧାତୁ—

| | |
|---|---|
| ଅନୁଗ୍ରହ କର | ବାରତା କଲେ |
| ଉପଲମ୍ଭ କରନ୍ତି | ବାହୁଡା କଲେ |
| କୋଳ କଲେ | ବିଜେ କଲେ |
| କ୍ଷେମା କରିବୁ | ବିଷ୍ଣ କର |
| ଖଣ୍ଡନ କରିବାକ | ଭିଆଣ କରି |
| ଗୁହାରି କରଇ | ଶୁଧା କଲୁଂ |
| ତୃପ୍ତି କଲେ | ଶାହାନ କରି |
| ଦ୍ରଶନ କଲେ | ସଂପ୍ରତେ ନ କରି |
| ପୂଛ କଲେ | ସଂଘରଣ କଲେ |
| ପ୍ରତିପାଳଣ କର | ସୁମରଣା କରନ୍ତି |

(୬) ବିଶେଷ୍ୟ ଓ ସହାୟକ 'ହୋ' ଧାତୁ

(କ) ତତ୍ସମ କ୍ରିୟାବାଚକ ବିଶେଷ୍ୟ ଓ ହୋ ଧାତୁ—

| | |
|---|---|
| ଅପହାର ହୋଅଇ | ପ୍ରସର ହୋଇଲା |
| ଧାରଣ ହୋଇବ | ବର୍ଣ୍ଣ ନୋହିଲା |
| ନାଶ ନୋହିଲା | ମୋକ୍ଷ ହୋଇବେ |
| ପ୍ରଦାନ ହୋଇଲା | ରକ୍ଷା ହୋଉ |
| ପ୍ରବେଶ ହୋଇଲେ | ସଙ୍ଗମ ହୋଇଲେ |

(ଖ) ଅନ୍ୟାନ୍ୟ ତତ୍ସମ ବିଶେଷ୍ୟ ଓ ହୋ ଧାତୁ—

| | |
|---|---|
| ଆନନ୍ଦ ହୋଇଲା | ପାଣ ହୋଅନ୍ତି |
| ଚମତ୍କାର ହୋଇଲା | ପ୍ରୀତ ହୋଅ |
| ତୁଷ୍ଟି ହୋଇଲେ | ବିଷାଦ ହୋଇଲେ |

(ଗ) ତଦ୍‌ଭବ ତଥା ଦେଶୀ ବିଶେଷ୍ୟ ଓ ହୋ ଧାତୁ—

| | |
|---|---|
| ଅନ୍ତର ହୋଇଲେ | ବଇକୁଣ୍ଠ ହୋଇଲା |
| ଉତ୍ପତ୍ତି ହୋଇଲେ | ବାହାର ହୋଇଲେ |
| ଜନ୍ମପୂର୍ଣ ହୋଇ | ବିଦ୍ଧ ହୋଇଲା |
| ଷଟ୍ଟ ହୋଇ | ବିଧ୍ବଂସ ହୋଇଲେ |
| ତ୍ରିପ୍ତ ହୋଇଲା | ଦେଶନ ହୋଇଲା |
| ଧଉର୍ଯ୍ୟ ହୋଇବ | ଭଗତ ହୋଇବ |
| ପାଟ ହୋନ୍ତୁ | ଭେଟ ହୋଇଲେ |
| ପାର ହୋଇଲା | ମୂକତ ହୋଇଲା |
| ପ୍ରାଣତ୍ୟାଗ ହୋଇଲା | ଶ୍ୟାନ୍ତ ହୋଇଲେ |
| | ହରଷ ହୋଇଲା |

(୩) ବିଶେଷଣ ଓ ସହାୟକ କର୍ ଧାତୁ—

| | |
|---|---|
| ଅନୁକୂଳ କଲେ | ଭଗ୍ନ କରନ୍ତୁ |
| ଗୋପ୍ୟ କର | ସନମତ କଲୁଂ |
| ପ୍ରଣମିତ କର | ସାଧ କଲେ |

(୪) ବିଶେଷଣ ଓ ସହାୟକ ହୋ ଧାତୁ—

| | |
|---|---|
| ଜାତ ହୋଇଲା | ପ୍ରକମ୍ପିତ ହୋଇଲେ |

(୫) ବିଶେଷ୍ୟ ଓ ସହାୟକ ଦେ ଧାତୁ—

| | |
|---|---|
| ଅପବାଦ ଦେଇ | ଜନ୍ମ ଦଲେ |
| ଆଗ୍ୟାଂ ଦେଲେ | ଝାସ ଦେଲା |
| ଗାଳି ଦଅଇ | ଶାପ୍ୟ ଦେଲେ |
| ଚୁମ୍ବନ ଦ୍ୟନ୍ତି | ହୁଳହୁଳି ଦଅନ୍ତି |

(୬) ବିଶେଷ୍ୟ ଓ ସହାୟକ ଯା ଧାତୁ—

| | |
|---|---|
| ଜାଣ ଗିଲୁ | ମେଶ୍ଚଣ ଗଲା * |

(୭) ବିଶେଷ୍ୟ ଓ ସହାୟକ ପା ଧାତୁ—

ଲଜ୍ୟା ପାଇଣ

(୮) ଅସମାପିକା କ୍ରିୟା ଓ ସମାପିକା କ୍ରିୟା—

| | |
|---|---|
| ଆରୋହଣ ବସିଲା | ପଳାଇ ପଶଇ |
| ଉଚ୍ଛିଡ଼ ଘେନଲେ | ପାଶ ଆଣଇ |

* ଓଡ଼ିଆରେ 'ଯା' ଏକ ଅପୂର୍ଣ୍ଣରୂପ ଧାତୁ । ଅତୀତ କାଳରେ ଏହା 'ଗମ୍' ହୋଇଯାଏ । ଗତ > ଗଲ + ଅନ୍ୟ ପୁରୁଷ ଏକବଚନ—ଆ = ଗଲା ଇତ୍ୟାଦି ।

ଉପୁଡଥାଇ ଗଲା — ବଣ ଅଣିଲେ
ଓହ୍ଲାଇ ଯାଉଥିବୁଂ — ବାଣ୍ଟି ନେଲେ
କାଢ଼ ଶୋଇଥାଇ — ବାହୁଡ଼ଣ ଗଲେ
କାଢ଼ି ନେଲେ — ଯାଚ ନ ଦେଉଂ
ଘେନ ଅଇଲ — ଗୁଛ ନ ଦଥଇ
ତୋଳି ଧଇଲକ — ଲେଉଟି ଗ୍ରହୁଂଲେ
ନରେଖି ଗ୍ରହାଂନ୍ତ — ସମର୍ପି ଆସ
— ଯାଉଂଟି ଆଣଇ

(୯) ନମିତ୍ତାର୍ଥକ କ୍ରିୟା ଓ ସମାପିକା କ୍ରିୟା—
ପକାଇ ନେଲେ (ପକାଇବାକୁ ନେଲେ)
ପାଲ୍ଲେଟି ଆସଇ (ପାଲ୍ଲେଟିବାକୁ ଆସଇ)
ଭ୍ରମି ଗଲେ (ଭ୍ରମିବାକୁ ଗଲେ)
ଭୁଞ୍ଜି ବସିଲ (ଭୁଞ୍ଜିବାକୁ ବସିଲ)
ଯାଇ ନ ବଲଇ (ଯିବାକୁ ନ ବଲଇ)
(ଚଦ୍ଧ) ହୋଇ ଆସୁଥିଲେ (ହେବାକୁ ଆସୁଥିଲେ)

(୧୦) ଅସମାପିକା କ୍ରିୟା ଓ ସାମର୍ଥ୍ୟ, କ୍ଷିପ୍ରତା, ସଂପୂର୍ଣ୍ଣତା, ଆକସ୍ମିକତାଦବୋଧକ ସାହାଯ୍ୟକାରୀ ଧାତୁ—

(କ) ଅସମାପିକା ଓ ପାର୍ ଧାତୁ—
ସହି ନ ପାରନ୍ତ — ଲଙ୍ଘି ନ ପାର
ମୁରୁଛି ପାରଲ — ବୋଲଣ ନ ପାର

(ଖ) ଅସମାପିକା ଓ 'ପକା' ଧାତୁ—
ଚର ପକାସ୍ତେ — ପେଲି ପକାଇଲ
କାଢ଼ି ପକାଇଲ — ହାଣି ପକାଇଲ

(ଗ) ଅସମାପିକା ଓ ପଡ଼୍ ଧାତୁ—
ଡେଇଂ ପଡ଼ — ଝାମ୍ପି ପଡ଼ୁଅଛୁ
ଧାଇଂ ପଡ଼ଲେ — ଛଳ ପଡ଼ିଲକ

(ଘ) ଅସମାପିକା ଓ ଯା ଧାତୁ—
ଚଳଯାସ୍ତେ — ବହିଗଲ

(ଙ) ଅସମାପିକା ଓ ଦେ ଧାତୁ—
ଘୁଞ୍ଚି ଦେଲ — ଭର ଦଥଇ

କହି ଦେବା | ଗୁଡ଼ାଇଣ ଦେଲି
--- | ---
 | ଝାଡ଼ିଆଣି ଦେବ

(ଚ) ଅସମାପିକା ଓ ଆଣ୍ ଧାତୁ—

ଲୁଚି ଆଣଇ | ପାଣି ଆଣଇ
--- | ---

(ଛ) ଅସମାପିକା ଓ ନେ ଧାତୁ—

ବାହିନେଲି

ସହାୟକ ଧାତୁଗୁଡ଼ିକ ସ୍ୱାଧୀନ ଭାବରେ ମଧ୍ୟ ବ୍ୟବହୃତ ହୋଇଅଛି—

ବାମ୍ଫରେ ପକାଇଲା ଲେଚ କରି ୩।୨୭।

ପଢ଼ିଲା ଯାଇଁ ଖିଡ ୩।୫୫। ଇତ୍ୟାଦି

ଯୌଗିକ କ୍ରିୟାରେ ଦୁଇରୁ ଅଧିକ ଅଂଶ ମଧ୍ୟ ରହିଛି—

ଛାଡ଼ି ଯାଇ ନ ପାରଇ | ବାହାର ହୋଇଯିବ
--- | ---
ନାଶ କରି ପାରଲି | ବଜେ କରି ଆସୁଅଛନ୍ତି
ପାଣି କରି ଦଅଇ | ମୂର୍ଚ୍ଛା ପଡ଼ିଗଲା ଇତ୍ୟାଦି ।

ବର୍ତ୍ତମାନ ଭାଷାରେ ଯୌଗିକ କ୍ରିୟାର ସାହାଯ୍ୟକାରୀ କର୍ ଧାତୁ ମୁଖ୍ୟ ଧାତୁ ରୂପେ ଏବଂ ତତ୍‌ପୂର୍ବବର୍ତ୍ତୀ ବିଶେଷ୍ୟ ତାହାର କର୍ମରୂପେ ବିବେଚିତ ହେଉଅଛି । ତେଣୁ ପ୍ରକୃତ କର୍ମରେ ସଂସ୍କୃତ ନିୟମ ଅନୁସାରେ ଷଷ୍ଠୀ ବିଭକ୍ତି ଲାଗୁଅଛି । ଯଥା—

ପିତାମାତାଙ୍କ ସେବା କର ।

ଈଶ୍ୱର ଜଗତର ସୃଷ୍ଟି କରିଛନ୍ତି ।

ଆପଣ ଏହି ବିଷୟର ଆଲୋଚନା କରନ୍ତୁ ।

ସେ ଇଷ୍ଟଦେବତାଙ୍କର ଆରାଧନା କଲେ । •ଇତ୍ୟାଦି

କିନ୍ତୁ ସଙ୍କଳିତ ଗ୍ରନ୍ଥାଂଶରେ ଯୌଗିକ କ୍ରିୟାଗୁଡ଼ିକ ଅର୍ଥଦୃଷ୍ଟିରୁ ଗୋଟିଏ ଗୋଟିଏ ଏକକ (unit) ରୂପେ ଗୃହୀତ ହୋଇଛି । ତେଣୁ ସକର୍ମକ ଯୌଗିକ କ୍ରିୟାର କର୍ମରେ ଷଷ୍ଠୀ ଲାଗିନାହିଁ । .

ଦେବତାନ୍ତ ସମାର୍ଜନା କଲେ ଦେବ ଆଦି । ୧।୮।୨

('ଦେବତାଙ୍କର' ହୋଇନାହିଁ)

ସାପ୍ତେନ୍ଦ୍ରନ୍ତୁ ମହର୍ଷି ରୁଦ୍ରକଇଂ ସେବା କଲା । ୧୭।୨୧

('ରୁଦ୍ରଙ୍କର' ହୋଇନାହିଁ) ଇତ୍ୟାଦି

---

• ସଂସ୍କୃତରେ ସକର୍ମକ ଯୌଗିକ କ୍ରିୟାର କର୍ମରେ ଷଷ୍ଠୀ ଲାଗେ ।

ଯଥା—ଫଳାନାମଶନଂ କରୋତି ।

ଛାତ୍ରସ୍ୟାଧ୍ୟୟନଂ କୃତବାନ୍ ।

ପୁନଶ୍ଚ, ବର୍ତ୍ତମାନ ସାହିତ୍ୟଭାଷାରେ 'ହୋ' ଧାତୁର ପୂର୍ବରେ ସାଧାରଣତଃ ବିଶେଷଣ ବ୍ୟବହୃତ ହୁଏ । କିନ୍ତୁ ସଂକଳିତ ଗ୍ରନ୍ଥରେ 'ହୋ' ଧାତୁର ପୂର୍ବରେ ବିଶେଷ୍ୟର ବ୍ୟବହାର ଅଧିକ ଦେଖାଯାଏ—

| ସାରଳା ମହାଭାରତର ଭାଷା | ବର୍ତ୍ତମାନ ସାହିତ୍ୟର ଭାଷା |
|---|---|
| ଅପହାର ହୋଅଇ | ଅପହୃତ ହୁଏ |
| ଆନନ୍ଦ ହୋଇଲେ | ଆନନ୍ଦିତ ହେଲେ |
| ଉତପତି ହୋଇଲେ | ଉତ୍ପନ୍ନ ହେଲେ |
| ଚମତ୍କାର ହୋଇଲା | ଚମତ୍କୃତ ହେଲା |
| ତୁଷ୍ଟି ହୋଇଲେ | ତୁଷ୍ଟ ହେଲେ |
| ତ୍ରିପତି ହୋଇଲା | ତୃପ୍ତ ହେଲା |
| ପ୍ରବେଶ ହେଲେ | ପ୍ରବିଷ୍ଟ ହେଲେ, ପ୍ରବେଶ କଲେ |
| ବିକଳ୍ପ ହୋଇଲା | ବିକଳ ହେଲା |
| ବିଷାଦ ହୋଇଲେ | ବିଷଣ୍ଣ ହେଲେ |
| ଭଗତି ହୋଅନ୍ତି | ଭକ୍ତ ହୁଅନ୍ତି, ଭକ୍ତି କରନ୍ତି |
| ମୁକତି ହୋଇବେ | ମୁକ୍ତ ହେବେ |
| ହରଷ ହୋଇଲା | ହୃଷ୍ଟ ହେଲା * |

'ପ୍ରଦାନ କର' ଓ 'ପ୍ରଦାନ ହୋ' ଏହି ଯୌଗିକ କ୍ରିୟା ଦୁଇଟି ନିମ୍ନଲିଖିତ ଅର୍ଥରେ ବ୍ୟବହୃତ ହୋଇଛି ।

ସତାଇଶ କନ୍ୟା ପ୍ରଦାନ କଲେ ଦକ୍ଷ ପ୍ରଜାପତି । ୭୨।୨

(ଦକ୍ଷ ପ୍ରଜାପତି ଚନ୍ଦ୍ରଙ୍କୁ ସତାଇଶି କନ୍ୟା ପ୍ରଦାନ କଲେ ।)

ତାହାର ଚିହ୍ନେ ବୃନ୍ଦାବତୀକି ହୋଇଲା ପ୍ରଦାନ । ୮୩।୨

(ଯଯାତି ତାଠାରୁ ବୃନ୍ଦାବତୀକି ପ୍ରଦାନ ହେଲେ ।)

'ବରଣ କର୍' ଓ 'ବରଣ ହୋ' ମଧ୍ୟ ଉପର୍ଯ୍ୟୁକ୍ତ ପ୍ରକାରେ ବ୍ୟବହୃତ ହୋଇଅଛି ।

'ବୋବାଲି' ଶବ୍ଦ ଓ 'ପାଡ୍' ('ପଡ୍'ର ପ୍ରେରଣାର୍ଥକ) ଧାତୁ ମିଳି ଯୌଗିକ କ୍ରିୟା ହୋଇଅଛି ।

ଘଣ୍ଟାଶାଳେ ପଶିଣ ପାଡ଼ଇ ବୋବାଲି । ୬୩।୨

ପଦ୍ୟଭାଷାର ପ୍ରକୃତି ଅନୁସାରେ କେତେକ ସ୍ଥଳରେ ଯୌଗିକ କ୍ରିୟାର ଗୌଣ ଅଂଶ ପ୍ରଥମେ ଏବଂ ମୁଖ୍ୟ ଅଂଶ ତାହାପରେ ବ୍ୟବହୃତ ହୋଇଅଛି—

* ମନୁଷ୍ୟଦେହେ ଧ୍ରୁବ୍ୟ ଧ୍ୟାନ
ଦେଖି ସନ୍ତୋଷ ଭଗବାନ । (ଭାଗବତ—୧୧ଶ ସ୍କନ୍ଧ—୧୦ମ ଅଧ୍ୟାୟ)

କରନ୍ତୁ ଆଲିଙ୍ଗନ  ପକାଇଲା ପେଲା
ପଢ଼ିଲୁକ ଚଳ  ହୋଅଇ ଅପହାର ଇତ୍ୟାଦ

ଉଭୟ ଅଂଶ ମଧ୍ୟରେ ଅନ୍ୟାନ୍ୟ ପଦ ମଧ୍ୟ ରହୁଛି—

ଅନ୍ତର ତହୁଂ ହୋଇଲେ
ବୁଡାଇ ସେ ଦେଲା
ଘ୍ରଣ୍ଡ ତାକୁ ଦେଲେ
ପ୍ରଦାନ ସେ ହୋଇଲେ

କେତେକ ସ୍ଥଳରେ କେବଳ ମୁଖ୍ୟ ଅଂଶଦ୍ୱାରା ଯୌଗିକ କ୍ରିୟା ବ୍ୟକ୍ତ ହୋଇଅଛି—

ଯାଇ ପ୍ରବେଶ ଗାନ୍ଧାର ଯେନ ଭୁବନ । ୧୧୧୭।

(ପ୍ରବେଶ— ପ୍ରବେଶ ହେଲେ)

ସପ୍ତନଧି ଯେନ କଣ ଖଜସ୍ଥେ ଦଣ୍ଡର । ୧୨୦।

(ଖଜସ୍ଥେ—ଖଜସ୍ଥେ କଲେ)

ପଦ୍ୟପ୍ରକୃତ ଏହାର କାରଣ ।

## ଊନବିଂଶ ଅଧ୍ୟାୟ

## ଅସମାପିକା କ୍ରିୟା

ଧାତୁରେ ଇ ଏବଂ ଇଣ ପ୍ରତ୍ୟୟ ଯୋଗରେ ଅସମାପିକା କ୍ରିୟା ଗଠିତ ହୋଇଅଛି । ବ୍ୟଞ୍ଜନାନ୍ତ ଧାତୁରୁ ଇ, ଇଣ ସଂଶ୍ଲିଷ୍ଟ ଭାବରେ ଏବଂ ସ୍ୱରାନ୍ତ ଧାତୁରୁ ବିଶ୍ଲିଷ୍ଟ ଭାବରେ ରହୁଅଛି ।

ସଂଶ୍ଲିଷ୍ଟ

ପାଳ୍ + ଇ = ପାଳି  ଭର + ଇ = ଭରି
ଚେଜ + ଇଣ = ଚେଜିଣ  ଦେଖ୍ + ଇଣ = ଦେଖିଣ

ବିଶ୍ଲିଷ୍ଟ

ନେଇ — ଇ = ନେଇ  ଯା—ଇ = ଯାଇ
ହୋ—ଇଣ = ହୋଇଣ  ଗ୍ରା—ଇଣ = ଗ୍ରାଇଣ

ଇ କେତେକ ସ୍ଥଳରେ ଅନୁନାସିକ ହୋଇଅଛି—

ଯାଇଂ, ଶୁଣିଂ

କ୍ରିୟାର ଅଧିକ ସଫଳତା ବୁଝାଇବା ପାଇଁ ଇ ବା ଇଂ ଅସମାପିକା ପରେ 'କରି' (କର୍ ଧାତୁର ଅସମାପିକା) ମଧ୍ୟ ବ୍ୟବହୃତ ହୋଇଅଛି ।

ହୋଇ କରି  ବୋଲି କରି
ଦେଖି କରି  ଘେନି କରି*

* 'କରି' ବର୍ତ୍ତମାନ କଥିତ ଭାଷାରେ 'କ' ହୋଇଅଛି । ଯଥା—ଦେଖିକରି > ଦେଖିକ, ହସିକରି > ହସିକ ।

ଇଣ ପରେ 'କଣ' କ୍ୱଚିତ୍ ବ୍ୟବହୃତ ହୋଇନାହିଁ ।

**ଅସମାପିକା କ୍ରିୟାର ପୌନଃପୁନିକ ପ୍ରୟୋଗ—**

ବଡ଼ ନାବ ସହଜେ ମୁଂ ବାହୁବାହୁ ଫୁଟି ୮୭୮।୧

**ପ୍ରେରଣାର୍ଥକ ଅସମାପିକା—**

ପାଣ୍ଡୈଣ୍ଟଙ୍କୁ ବସାଇଂ ନାବ ବାହୁନେଲ । ୮୭୭।୨

ଜଣେ ଜଣେ ଗୁହ୍ରାଣ କରଇ ଦୋହଡାକୁ ଦେଖାଇ । ୭୭୮।୨

**ଯୌଗିକ ଅସମାପିକା—**

| | |
|---|---|
| ଭିଆଣ କରି | ପେଲ୍ ପକାଇ |
| ଭଗ୍ନ କରି | ବରଣ କରି ଆଣି |

**ଅସମାପିକା ପ୍ରତ୍ୟୟର ଉତ୍ପତ୍ତି—**

ଇ ଅସମାପିକା ମୂଳତଃ ପ୍ରା. ଭା. ଆ. ଲ୍ୟପ୍ ପ୍ରତ୍ୟୟାନ୍ତ ପଦରୁ ଉତ୍ପନ୍ନ । ଯଥା— ପ୍ରା. ଭା. ଆ. ଆନୀୟ > ମ. ଭା. ଆ. ଆଣୀଅ > ଓ ଆଣି, ପ୍ରା. ଭା. ଆ. ପରିହୃତ୍ୟ > ମ. ଭା. ଆ. ପରିହରିଅ > ଓ ପହରି । କ୍ରମେ ସାଦୃଶ୍ୟର ପ୍ରଭାବରେ କ୍ତ୍ୱା ପ୍ରତ୍ୟୟାନ୍ତ ପଦରୁ ମଧ୍ୟ ଏହି ଆକୃତିର ଅସମାପିକା ଗଠିତ ହେଲା । ଯଥା—(ପଠିତ୍ୱା) > ପଢ଼ିଅ> ପଢ଼ି, (କୃତ୍ୱା) > କରିଅ > କରି ।*

ପ୍ରା. ଭା. ଆ. ଅସମାପିକା ପ୍ରତ୍ୟୟ ତ୍ୱାନଂ, ତ୍ୱିନଂ ମ. ଭା. ଆ. ର ଆଦ୍ୟ ସ୍ତରରେ ତ୍ୱାନ, ତୂନ ହୋଇଅଛି । ଯଥା—ପା. କତ୍ୱାନ, କତୁନ (କୃତ୍ୱା), ଘେତ୍ୱାନ, ଘେତୂନ (ଗୃହୀତ୍ୱା) । ପରେ ଏ ଦୁଇଟି ଊଣ ହୋଇଛି । ଯଥା—ପ୍ରା: ହସେଊଣ, ହସିଊଣ, ପଢେଊଣ, ପଢିଊଣ । ଓଡ଼ିଆ କରିଣ, ହସିଣ, ପଢ଼ିଣ ପ୍ରଭୃତି ଅସମାପିକାର ଣ ଏହି ପ୍ରାକୃତ 'ଊଣ'ର ଅବଶେଷ ।

## ବିଂଶ ଅଧ୍ୟାୟ

### ପ୍ରେରଣାର୍ଥକ କ୍ରିୟା

ଧାତୁରେ ଆ ପ୍ରତ୍ୟୟ ଲାଗି ପ୍ରେରଣାର୍ଥକ ଧାତୁ ଗଠିତ ହୋଇଛି ।

| ଧାତୁ | ପ୍ରେରଣାର୍ଥକ ପ୍ରତ୍ୟୟ | ପ୍ରେରଣାର୍ଥକ ଧାତୁ | କ୍ରିୟାର ନମୁନା |
|---|---|---|---|
| ବସ୍ | ଆ | ବସା | ବସାଇଲେ |

---

* ଦଢ଼ କରିଅ ମହା ସୁହ ପରମାଣ (କରିଅ କରି)
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ । (ପୁଚ୍ଛିଅ-ପୁଚ୍ଛି)
(ବୌ. ଦୋ. ଲୁଇପା, ଚର୍ଯ୍ୟା ୧)

| | | | |
|---|---|---|---|
| କର୍ | ଆ | କରା | କରାଅ |
| ଜା | ଆ | ଜାଆ | ଜାଆଇବେ |
| ତର୍ | ଆ | ତରା | ତରାଅ |
| ଶିଖ୍ | ଆ | ଶିଖା | ଶିଖାଇଛନ୍ତି |

ପ୍ରେରଣାର୍ଥକ ଆ ପ୍ରତ୍ୟୟ ଯୋଗରେ ଧାତୁର ଉପଧାଗତ 'ଆ' ହ୍ରସ୍ୱ ହୋଇଅଛି ।

ଛାଡ୍ + ଆ = ଛଡା ।   ଜାଣ୍ + ଆ = ଜଣା

ଆଣ୍ + ଆ = ଅଣା ।   ଲାଗ + ଆ = ଲଗା

ହ୍ ଅନ୍ତ ଧାତୁର ଉପଧାଗତ 'ଅ' > 'ଉ' ହୋଇଛି ।

ରହ୍ + ଆ = ରୁହା *

'ପୂର୍' ଧାତୁର ପ୍ରେରଣାର୍ଥକ ଆ > ଓ ହୋଇଛି ।

ପୂରୋଇଲେ †

କିନ୍ତୁ ଅନୁଜ୍ଞାରେ ଆ ରହିଛି—ପୂରାଅ

## ଯୌଗିକ ପ୍ରେରଣାର୍ଥକ କ୍ରିୟା

ସନ୍ତ୍ରସ୍ତେ କୁମାରଙ୍କୁ ସକଳ କରାଇଲେ ପଠନ । ୧୦୮୪।୨

ସକଳ ବିଦ୍ୟାମାନ ପରୀକ୍ଷା କରାଇଲେ । ୧୧୩୬।୨

ସମୋଦ୍ର ଛଡ଼ାଇଦେଲା ଅଗ୍ନି ସହସ୍ର ଗୁଣ । ୧୦୩।୨

ଯେଉଁ ଯୌଗିକ କ୍ରିୟାର ମୁଖ୍ୟ ଅଂଶ ବିଶେଷ୍ୟ ବା ବିଶେଷଣ, ତାହାର ପ୍ରେରଣାର୍ଥକ ରୂପରେ ମୁଖ୍ୟ ଅଂଶ ଅବିକୃତ ରହିଛି ଏବଂ ସାହାଯ୍ୟକାରୀ ଅଂଶର ପରିବର୍ତ୍ତନ ଘଟିଅଛି ।—

ପଠନ କଲେ—ପଠନ କରାଇଲେ

ପରୀକ୍ଷା କଲେ—ପରୀକ୍ଷା କରାଇଲେ

କିନ୍ତୁ ଯେଉଁଠାରେ ମୁଖ୍ୟ ଅଂଶ ବିଶେଷ୍ୟ ବା ବିଶେଷଣ ନୁହେଁ, ସେଠାରେ ସାହାଯ୍ୟକାରୀ ଅଂଶର ପ୍ରେରଣାର୍ଥକ ପରିବର୍ତ୍ତନ ନ ଘଟି ମୁଖ୍ୟ ଅଂଶର ଘଟିଛି—

ଛାଡ଼ିଦେଲା—ଛଡ଼ାଇ ଦେଲା

ଶିଖିଦିଅ—ଶିଖାଇଦିଅ

'ବୋଲ୍' ଧାତୁର ପ୍ରେରଣାର୍ଥକ କ୍ରିୟା ଆତ୍ମକର୍ମକ ଅର୍ଥରେ ବ୍ୟବହୃତ ହୋଇଅଛି—

ତହୁଁ ଭରଥଖଣ୍ଡ ମେଦିନୀ ବୋଲାଇଲା । ୧୦୭। ୨

---

* କହ୍ + ଆ = କୁହା, ସହ + ଆ = ସୁହା, ବହ୍ + ଆ = ବୁହା

† ଦେବ ମାନଙ୍କୁ ଲୁଗା ଗୁଡ଼ାଆଇ ମୁଣାରେ ପୂରୋଇ ମୁଦାଇଲେ । (ମା: ପା:— ଯଯାତିକେଶରୀ)

## ପ୍ରେରଣାର୍ଥକ ଆ ପ୍ରତ୍ୟୟର ଉତ୍ପତ୍ତି –

ପ୍ରା: ଭା: ଆ: ରେ ପ୍ରେରଣାର୍ଥକ ପ୍ରତ୍ୟୟ ଥିଲା ଦୁଇଟି– ଅୟ- ଏବଂ-ଆପୟ- ଯଥା– ପାଠୟ-ତି, କାରୟ-ତି, ସ୍ଥାପୟ-ତି, ଜାପୟ-ତି । -ଅୟ-ଥିଲା ମୁଖ୍ୟ ଏବଂ-ଆପୟ-ଥିଲା ଗୌଣ । (-ଆପୟ-କେତେକ ନିର୍ଦ୍ଦିଷ୍ଟ ଧାତୁରୁ ବ୍ୟବହୃତ ହେଉଥିଲା ।) ମ:ଭା:ଆ:ର ଆଦ୍ୟ ସ୍ତରରେ (ପାଲିରେ)- ଅୟ-ହେଲା -ଏ-ଏବଂ-ଆପୟ- ହେଲା-ଆପେ-। ଯଥା—ପାଠୟ-ତି>ପାଠେ-ତି, କାରୟ-ତି>କାରେ-ତି, ସ୍ଥାପୟ-ତି>ଠାପେ-ତି, ଜାପୟ-ତି>ଜନାପେ-ତି । ଏହି ସ୍ତରରେ-ଆପେ-ହେଲା ମୁଖ୍ୟ ଏବଂ -ଏ- ହେଲା ଗୌଣ । ବହୁ ସ୍ଥଳରେ'-ଏ-'ର ସ୍ଥାନ ଗ୍ରହଣ କଲା-ଆପେ- । ଯଥା—ଶ୍ରାବୟ-ତି>ସୁଣାପେ-ତି, ହାସୟ-ତି>ହସାପେ-ତି, ବନ୍ଦୟ-ତି>ବନ୍ଦାପେ-ତି, ଜୀବୟ-ତି>ଜୀବାପେ-ତି ।

ପରେ (ପ୍ରାକୃତରେ) ଆପେ ହେଲା -ଆବେ- । ଯଥା—ସୁଣାପେ-ତି>ସୁଣାବେ-ଇ ହସାପେ-ତି>ହସାବେ-ଇ, ବନ୍ଦାପେ-ନ୍ତୁ>ବନ୍ଦାବେ-ନ୍ତୁ, ଜୀବାପେ-ନ୍ତୁ>ଜୀବାବେ-ନ୍ତୁ । '-ଏ-'ର ପ୍ରଚଳନ ଆଗରୁ ହ୍ରାସ ପାଇଥିଲା । ତେଣୁ ଏହାର ଅଳ୍ପ କେତେକ ପ୍ରୟୋଗ ରହିଲା । ଯଥା—ପାଠେ-ତି>ପାଢେ-ଇ, କାରେ-ତି>କାରେ-ଇ ।

ପୁଣି ପରେ (ମ: ଭା: ଆ:ର ଅନ୍ତ୍ୟସ୍ତରରେ)-ଆବେ-> -ଆବ- > -ଆଅ- ହେଲା । ଯଥା – ସୁଣାବେ-ଇ>ସୁଣାବ-ଇ>ସୁଣାଅ-ଇ, ହସାବେ-ନ୍ତୁ>ହସାବ-ନ୍ତୁ> ହସାଅ-ନ୍ତୁ । (ଓଡ଼ିଆ-ଶୁଣା-ଏ<ସୁଣାଅ-ଇ, ହସା-ନ୍ତୁ<ହସାଅ-ନ୍ତୁ) ଅନ୍ତିମ ମ: ଭା: ଆ:ର ଏହି -ଆଅ- ଓଡ଼ିଆରେ -ଆ ହୋଇଛି । (ସୁଣାଅ->ଶୁଣା-, ହସାଅ-> ହସା-, ଇତ୍ୟାଦି) ।

ସକଳିତ ଗ୍ରନ୍ଥରେ 'ବୁଝାବ-ନ୍ତି' 'ଶିଖାବ-ନ୍ତି' ପ୍ରଭୃତି ଯେଉଁ -ଆବ-ଯୁକ୍ତ ପ୍ରେରଣାର୍ଥକ କ୍ରିୟା ବ୍ୟବହୃତ ହୋଇଛି, ତାହା ଅନ୍ତିମ ମ: ଭା: ଆ: (ଅପଭ୍ରଂଶ)ର ନିଦର୍ଶନ ।

ସେହିପରି, ଓଡ଼ିଆ 'ହସାଇଲା' (ହସାଇଲ+୩ୟ ପୁ' ଏକବ:—ଆ), 'ଶୁଣାଇଲେ' (ଶୁଣାଇଲ+୩ୟ ପୁ: ବହୁବ:-ଏ), 'ହସାଇବୁ' (ହସାଇବ+୨ୟ ପୁ: ଏକବ:-ଉ), 'ଶୁଣାଇବି' (ଶୁଣାଇବ+୧ମ ପୁ:ଏକବ:-ଇ) ପ୍ରଭୃତି ପ୍ରେରଣାର୍ଥକ କ୍ରିୟା ମ: ଭା: ଆ: ଆଦ୍ୟ ସ୍ତରରେ ହସାପିତ, ସୁଣାପିତ, ହସାପିତବ୍ୟ, ସୁଣାପିତବେ ପ୍ରଭୃତି କ୍ରିୟାବାଚକ ବିଶେଷଣ ଆକୃତିରୁ ଉତ୍ପନ୍ନ ।

# ଏକବିଂଶ ଅଧ୍ୟାୟ

## ନାମଧାତୁ-କ୍ରିୟା

ସକଳିତ ଅଂଶରେ କେବଳ ବିଶେଷ୍ୟ ପଦ ନାମଧାତୁରୂପେ ବ୍ୟବହୃତ ହୋଇଛି । ନାମଧାତୁଗୁଡ଼ିକ ଦୁଇ ଶ୍ରେଣୀରେ ବିଭକ୍ତ—ପ୍ରତ୍ୟୟହୀନ ଓ ପ୍ରତ୍ୟୟଯୁକ୍ତ ।

(୧) ପ୍ରତ୍ୟୟହୀନ ନାମଧାତୁ

(କ) କ୍ରିୟାବାଚକ ବିଶେଷ୍ୟ ନାମଧାତୁ—

| ନାମ | ବ୍ୟବହୃତ କ୍ରିୟାର ନମୁନା | ନାମ | ବ୍ୟବହୃତ କ୍ରିୟାର ନମୁନା |
|---|---|---|---|
| ଆମୋଦ | ଆମୋଦଇ | ନିରୋଧ | ନିରୋଧିଲେ |
| ଆଶ୍ୱାସ | ଆଶ୍ୱାସୁ | ପ୍ରକାଶ | ପ୍ରକାଶଇ |
| ଉଧାର (ଉଦ୍ଧାର) | ଉଧାରିବ | ପରବେଶ(ପ୍ରବେଶ) | ପରବେଶି |
| ଉପେକ୍ଷା | ଉପେଖିଲୁ | ପ୍ରବୋଧ | ପ୍ରବୋଧନ୍ତୁ |
| | | ପ୍ରତିଜ୍ଞା | ପ୍ରତିଜ୍ଞାଇ(ପ୍ରତିଜ୍ଞାକରି) |
| କଷ୍ଟାଳ | କଷ୍ଟାଳ | ପ୍ରସବ | ପ୍ରସବଣ |
| ନିବେଶ | ନିବେଶିଥାଇ | ପ୍ରହାର | ପ୍ରହାରେ |
| ନିର୍ମାଣ | ନିର୍ମାଣିଅଛଇ | ବିସ୍ତାର | ବିସ୍ତାରିଲେ |
| | | ଭଙ୍ଗ (<ଭଙ୍ଗ) | ଭଙ୍ଗିଲେ |

(ଖ) ଅନ୍ୟାନ୍ୟ ବିଶେଷ୍ୟ ନାମଧାତୁ—

| ନାମ ଧାତୁ | ବ୍ୟବହୃତ କ୍ରିୟାର ନମୁନା | ନାମଧାତୁ | ବ୍ୟବହୃତ କ୍ରିୟାର ନମୁନା |
|---|---|---|---|
| ଅଙ୍କୋର (<ଅଙ୍କୁର) | ଆଙ୍କୋରୁ | ଡର | ଡରୁଂ |
| | | ନିଷ୍ଠା | ନିଠାଇ |
| ଗୁପ | ଗୁପିଲେ | ନିର୍ଧାର | ନିର୍ଧାରେ |
| ଚନ୍ଦ୍ରି | ଚନ୍ଦ୍ରିଲେ | ମେଦ | ମେଦଇ |
| ଚୀର | ଚିରେ | | * |
| ଜନ୍ମ | ଜନ୍ମିଲ | | |
| ଝଲକ | ଝଲକଇ | | |
| ଝାଙ୍କୁଆ | ଝାଙ୍କୁଆଇଦେବ | | |

(୨) ପ୍ରତ୍ୟୟଯୁକ୍ତ ନାମଧାତୁ

-ଆ ପ୍ରତ୍ୟୟ ଯୋଗରେ ନାମଧାତୁ ଗଠିତ ହୋଇଅଛି ।

---

* ପ୍ରତିସ୍ପର୍ଦ୍ଧୀ ପ୍ରତିବିମ୍ବୁଅଛି । (ରୁ. ସୁ. ପୃ. ୭୦)

| ନାମ | ପ୍ରତ୍ୟୟ | ନାମଧାତୁ | ବ୍ୟବହୃତ କ୍ରିୟାର ନମୁନା |
|---|---|---|---|
| ଗୋଡ଼ | ଆ | ଗୋଡ଼ା | ଗୋଡ଼ାଉଅଛୁ |
| ଯୋଗ | ଆ | ଯୋଗା | ଯୋଗାଇ |
| ପାଣି | ଆ | ପାଣିଆ | ପାଣିଆଇଦେଉଛି |
| ମନ | ଆ | ମନା | ମନାଉଛି |
| କୁଢ଼ | ଆ | କୁଢ଼ା | କୁଢ଼ାଇ |

ନାମଧାତୁ ପ୍ରତ୍ୟୟର ଉତ୍ପତ୍ତି

ନାମଧାତୁ ପ୍ରତ୍ୟୟ-ଆ-ମୂଳତଃ ପ୍ରା: ଭା: ଆ: ନାମଧାତୁ କ୍ରିୟାର '-ଆୟ-' ଓ '-ଆପୟ-' ପ୍ରତ୍ୟୟ ଠାରୁ ଉତ୍ପନ୍ନ । ପ୍ରା: ଭା: ଆ:ରେ ନାମଧାତୁର ଯେତେଗୁଡ଼ିଏ ପ୍ରତ୍ୟୟ ଥିଲା, ତନ୍ମଧ୍ୟରେ ଏହି ଦୁଇଟି ଥିଲା ମୁଖ୍ୟ । ଯଥା—ଧୂମ—ଧୂମାୟ-ତେ, ଚର—ଚରାୟ-ତେ, ଶିଥିଳ—ଶିଥିଳାୟ-ତେ, ଦୁଃଖ—ଦୁଃଖାୟ-ତେ, ଶବ୍ଦ—ଶବ୍ଦାପୟ-ତି, ବେଦ—ବେଦାପୟ-ତି ଇତ୍ୟାଦି । ମ: ଭା:ଆ:ରେ ଏଗୁଡ଼ିକର ରୂପ ହେଲା—ଧୂମାୟ-ତେ>ଧୂମାଅ-ଇ, ଚରାୟ-ତେ>ଚରାଅ-ଇ, ଶିଥିଳାୟ-ତେ>ଢିଲ୍ଲାଅ-ଇ, ଦୁଃଖାୟ-ତେ>ଦୁକ୍ଖାଅ-ଇ, ଶବ୍ଦାପୟ-ତି>ସଦ୍ଦାବେ-ଇ, ବେଦାପୟ-ତି>ବେଦାବେ-ଇ । ପ୍ରେରଣାର୍ଥକ କ୍ରିୟାପଦ ଏଥିରେ ମଧ୍ୟ -ଆବେ- ଏବଂ -ଆଅ- କ୍ରମେ '-ଆ-'ରେ ପରିଣତ ହେଲା । ଓଡ଼ିଆରେ ଗୋଡ଼ା-ଏ, ମୁଣ୍ଡା-ଇଲା, ଶୀତଳା-ଉଛି, ତରଳା-ଇବ, ଫଙ୍ଗା-ଇଛି ପ୍ରଭୃତି କ୍ରିୟାର ନାମଧାତୁ ପ୍ରତ୍ୟୟ-ଆ-ଉପର୍ଯ୍ୟୁକ୍ତ '-ଆୟ-' ଓ '-ଆପୟ-'ରୁ ଉତ୍ପନ୍ନ ।

ପ୍ରତ୍ୟୟବିହୀନ ନାମଧାତୁର ପରମ୍ପରା ମଧ୍ୟ ପ୍ରା. ଭା. ଆ. କାଳରୁ ଆଗତ । ଯଥା— ପ୍ରା. ଭା. ଆ. ଜନ୍ମ—ଜନ୍ମ-ତି>ମ. ଭା. ଆ. ଜମ୍ମ-ଇ, ପ୍ରା. ଭା. ଆ. ଦୁଃଖ—ଦୁଃଖ-ତି> ମ: ଭା. ଆ. ଦୁକ୍ଖ-ଇ ଇତ୍ୟାଦି ।

---

ନାମରୁ କ୍ରିୟାବାଚକ ବିଶେଷ୍ୟ ମଧ୍ୟ ଗଠିତ ହୋଇଛି । ଯଥା—
କହୁଂ କହୁଂ ଶବ୍ଦର ତାର ହୋଇଲା ପଲ୍ଲବଣ । (ବ. ପ ୧ମ ପୃ. ୨୨୫)

ବର୍ତ୍ତମାନ କଥିତ ଭାଷାରେ ପ୍ରେରଣାର୍ଥକ ପ୍ରତ୍ୟୟ -ଆ- ଏବଂ ନାମଧାତୁ ପ୍ରତ୍ୟୟ -ଆ- ଅସମାପିକାସୂଚକ '-ଉ-'ର ସମ୍ପର୍କରୁ -ଅ- ହୁଏ ଏବଂ ସମାପିକାସୂଚକ ' ଇ-'ର ସମ୍ପର୍କରୁ '-ଏ-' ହୁଏ । ଯଥା—

କରା-ଉ-ଅଛୁ > କର-ଉ-ଅଛୁ > କରଉଛୁ
କରା-ଇ-ଲା > କରେ-ଇ-ଲା=କରେଇଲା
ଗୋଡ଼ା-ଉ-ଅଛନ୍ତି > ଗୋଡ଼-ଉ-ଅଛନ୍ତି > ଗୋଡଉଛନ୍ତି
ଗୋଡ଼ା-ଇ-ଲେ > ଗୋଡ଼େ-ଇ-ଲେ=ଗୋଡେଇଲେ ଇତ୍ୟାଦି ।

ଫକଲତ ଗ୍ରନ୍ଥାଂଶରେ ପ୍ରେରଣାର୍ଥକ କ୍ରିୟାପଦ, ନାମଧାତୁ କ୍ରିୟାରେ ମଧ୍ୟ-ଆଦ-
(ମ. ଗ୍ର. ଆ ଶେଷ ଯୁଗର ନିଦର୍ଶନ) ରହିଛି ।—

ପଢ଼େଣ ଗୋଡ଼ାବନ୍ତ ଧନ ଭ୍ରାଥ । ୭୧୮ । ୨

## ଦ୍ୱାଦଶ ଅଧ୍ୟାୟ

### କ୍ରିୟାବାଚକ ବିଶେଷଣ

ବର୍ତ୍ତମାନକାଳୀନ, ଭୂତକାଳୀନ ତଥା ଭବିଷ୍ୟତକାଳୀନ କ୍ରିୟାବାଚକ ବିଶେଷଣମାନ ବ୍ୟବହୃତ ହୋଇଅଛି ।

(୧) ବର୍ତ୍ତମାନକାଳୀନ

(କ) -ଅନ୍ତା

ଏହା କର୍ତ୍ତୃବାଚ୍ୟରେ ବିଶେଷ୍ୟର ପୂର୍ବରେ ତଥା ପରେ ବ୍ୟବହୃତ ।

ବିଶେଷ୍ୟର ପୂର୍ବରେ—

ଖେଳନ୍ତା ସିଂହ ନାଶି ଧଣର ଗଙ୍ଗାର ବାଲ । ୫୭୯ । ୨

ଜଳନ୍ତା ଅନଳେ କେ ଅବା ଦେବ ଝାସ । ୫୧୦ । ୨ ❋

ବିଶେଷ୍ୟର ପରେ--

ଧୃତରାଷ୍ଟ୍ରର କନ୍ୟା କେହ୍ନ ବଅନ୍ତା ନୋହିଲେ । '୧୬୨ । ୨

ଜଗତ୍ରୁ ଦେବ ସୁରେଙ୍ଗ ରଖନ୍ତା

ଜଗତ୍ରୁ ଦେବ ପରମ ଗତି ଦ୍ୟନ୍ତା । ୬ ❋ ❋

ଏହି କ୍ରିୟାବାଚକ ବିଶେଷଣ ବିଶେଷ୍ୟ ରୂପେ ମଧ୍ୟ ବ୍ୟବହୃତ ହୋଇଅଛି ।—

ସ୍ନେହେ ଶୁଣନ୍ତା ନାହିଂ ତୋହର ଅର୍ଥମାନ । ୯୩୫ । ୨

(ଶୁଣନ୍ତା—ଶୁଣନ୍ତା ଲୋକ) †

ବର୍ତ୍ତମାନକାଳୀନ କ୍ରିୟାବାଚକ ବିଶେଷଣର ପ୍ରବୃତ୍ତି —

---

❋ କୌରବନ୍ତ ଗମଣ କରନ୍ତା ଭ୍ରମରମାନେ ପଦ୍ମବନକୁ ଗମିଲେ ।
କୁମୁଦପତ୍ରରେ ଧୂସର ହୁଅନ୍ତା' ଭ୍ରମରକୁ ଦେଖି ପ୍ରାତବାତେ
କମ୍ପନ୍ତା ପଦ୍ମମାନେ ସନ୍ଧ୍ୟରେ ନାହିଁ ନାହିଁ ପ୍ରାୟେକ ବର୍ତ୍ତିଲେ । (ରୁ. ସୁ. ପୃ.୪୭)
ସଂପନ୍ନ ବର୍ତ୍ତମାନ ଅର୍ଥରେ ମଧ୍ୟ ଏହାର ବ୍ୟବହାର ଦେଖାଯାଏ । ଯଥା—
ସେ ହସ୍ତରେ ଧରିଥାନ୍ତା ଦିବ୍ୟ ପଦ୍ମରୁ......... (ରୁ. ସୁ. ପୃ. ୧୫୫)
❋❋ ପୃଥ୍ୱୀଦେବୀର ଶିରରେ ପୁଷ୍ପମାଳାର ପ୍ରାୟେ ଶୋଭା ପାନ୍ତା ହୋଇଅଛି ।
(ରୁ. ସୁ. ପୃ. ୧୫୭)
† ଗାଇଲେ ଗାଆନ୍ତା ଗୀତ ଗୁଣ୍ଡିକେଶ୍ୱ ରଥ (ଭ: ମ. ୮୨ ଗ୍ରନ୍ଥ)।
(ଗାଅନ୍ତା—ଗାୟକ)

ପ୍ରା. ଭା. ଆ. 'ଶତୃ' ପ୍ରତ୍ୟୟ ମ. ଭା. ଆ.ରେ -ଅନ୍ତ- ବା -ନ୍ତ- ହୋଇଛି । ଯଥା—ହସନ୍ତୋ (ହସ୍-ଅନ୍ତ ୧ମା ଏକବଚନ) (ହସନ୍), ହସନ୍ତା (ହସ୍-ଅନ୍ତ ୧ମା ବହୁବଚନ) (ହସନ୍ତଃ), ଦେନ୍ତୋ (ଦେ-ନ୍ତ ୧ମା ଏକବଚନ) (ଦଦତ୍) । ସାଦୃଶ୍ୟର ପ୍ରଭାବରୁ 'ଶାନଚ୍' ପ୍ରତ୍ୟୟ -ଅନ୍ତ-ରେ ପରିଣତ ହୋଇଛି । ଯଥା—କମ୍ପନ୍ତୋ (କମ୍ପମାନଃ) ଲଭନ୍ତା (ଲଭମାନାଃ) । ଏହି -ଅନ୍ତ- ଓଡ଼ିଆରେ -ଅନ୍ତା ହୋଇଛି ।

(ଙ) -ଇଂ, -ଇ

ଏହା କର୍ତ୍ତୃବାଚ୍ୟରେ ଶତୃଣିଜନ୍ତର କେବଳ ପରେ ବ୍ୟବହୃତ ।
ସୁପଥ ଥାଉଂ କେହେନେକେ କୁପଥରେ ଯାନ୍ତି । ୩।୩୧ । ୨
ରୁମ୍ଭର ମୁଣ୍ଡୋହିଂ ନୋହିଂ ଆଗ ମୁଂ ଖାଇଲି । ୧୩୧୫ । ୨
ଏହାର ପୌନଃପୁନିକ ପ୍ରୟୋଗ ମଧ୍ୟ ରହିଛି ।—
ଏତେ ନର୍କପଥ ଦେଖୁ ଦେଖୁ କେହନେ ଯେ ପଶୁ । ୯୫୦ । ୨
କୁମାରଙ୍କ ଯନ୍ତୁଂ ଯହିତ୍ରେ ବାଟ ଦେଖୁଂ ଦେଖୁଂ ହୋଇଲା । ୧୮୪ । ୧

ଏହାର କର୍ତ୍ତା କେତେକ ସ୍ଥଳରେ ସମ୍ବନ୍ଧ ପଦ ଆକୃତିରେ ରହିଅଛି । (୪ଠୀ ଓ ୭ମୀ ବିଭକ୍ତିର ବିଶେଷ ବ୍ୟବହାର ଦ୍ରଷ୍ଟବ୍ୟ) ❋

ସମସ୍ତ ଅସମ୍ପନ୍ନତାସୂଚକ କାଳ ଓ ଭାବରେ ଏହି ଆକୃତିର କ୍ରିୟାବାଚକ ବିଶେଷଣ ହେଉଛି କ୍ରିୟାର ମୁଖ୍ୟ ଅଂଶ । ଯଥା—

| | |
|---|---|
| କରୁ-ଅଛି | କରୁ-ଥିବ |
| କରୁ-ଥିଲ | କରୁ-ଥାଇ |
| | କରୁ-ଥାଉ ଇତ୍ୟାଦି । |

-ଇଂ (-ଇ) କ୍ରିୟାବାଚକ ବିଶେଷଣର ଉତ୍ପତ୍ତି—

---

ଏବଂ ଭୁଜ ସେ ଅବିଭୂତ ଗନ୍ଧର୍ବ ଅପ୍ସରା ବେଶ ଧରନ୍ତାଙ୍କୁ ଦେଖି ରାଜା ମନେ ବିସ୍ମଇଲା । (ରୁ. ସ୍ୱ. ପୃ. ୧୬୩)

ଏପ୍ରକାର ବିଶେଷଣର ସ୍ତ୍ରୀଲିଙ୍ଗ ଆକୃତି ମଧ୍ୟ ଅଛି । ଯଥା—ଚଳନ୍ତୀ, ଚଳନ୍ତି; ହସନ୍ତୀ, ହସନ୍ତିକା । କିନ୍ତୁ '-ଅନ୍ତା' ବା -ଅନ୍ତୀ (-ଅନ୍ତ) ବିଶେଷ୍ୟର ଲିଙ୍ଗସାପେକ୍ଷ ନୁହେଁ । ଯଥା— ଚଢ଼ନ୍ତା ପୁଅ, ଚଢ଼ନ୍ତା ଝିଅ, ଚଢନ୍ତ ଝିଅ, ବହନ୍ତା ନଈ, ବହନ୍ତ ନଈ, ଚଳନ୍ତା ଟ୍ରେନ୍, ଚଳନ୍ତ ପ୍ରତିମା ଇତ୍ୟାଦି । -ଅନ୍ତା ବା -ଅନ୍ତୀ (-ଅନ୍ତ) ସ୍ଥାନରେ -ଅନ୍ତ ମଧ୍ୟ ପ୍ରଚଳିତ । ଯଥା—ଜଳନ୍ତ ନିଆଁ, ଉଡ଼ନ୍ତ ଚଢେଇ, ବହନ୍ତ ନଈ ।

❋ ବେଗ ଧାଇଂ ବୋଇଲେ ଅମ୍ଭ ଥାଉଂ ପୁଣଆ ରାଜା ହୋଇଲ ।

(ମା. ପା. ପୁରୁଷୋତ୍ତମ ଦେବ)

ତୋହର ଥାଉଁ ଥାଉଁ କୁମରବେନଙ୍କ ଅମ୍ଭରେ ସରଚେ କର । (ମ. ମ. ୩-୨୧)

ଏହା ସମ୍ଭବତଃ ପ୍ରା. ଭା. ଆ. ହ୍ଣଂ ହ୍ଣଂ, ଭାରଂ ଭାରଂ, ଖାଦଂ ଖାଦଂ ପ୍ରଭୃତି ମୂଳ୍ ପ୍ରତ୍ୟୟାନ୍ତ ପଦରୁ ଉତ୍ପନ୍ନ। କ୍ରମେ (ଆହ୍ନଂ ଆହ୍ନଂ ଇତ୍ୟାଦି) ପୁଟ୍ର ଆକୃତି (ଆହ୍ନଂ ଇତ୍ୟାଦି) ଏକକ ଆକୃତିରେ ମଧ୍ୟ ବ୍ୟବହୃତ ହୋଇଛି। '-ହ୍ନଂ'ର ନାସିକ୍ୟହୀନ ରୂପ -ହ୍ନ ଏବଂ ପ୍ରଚଳିତ ରୂପ -ଉଣ, -ଉଣ୍ଡ।

ଅଶୋକଙ୍କ ଗିର୍ନାର ଅନୁଶାସନରେ ବର୍ତ୍ତମାନକାଳିକ କ୍ରିୟାବାଚକ ବିଶେଷଣ 'କରୁଂ' ଏବଂ 'କରୁ' ବ୍ୟବହୃତ ହୋଇଅଛି। (E. O. L. S. ପୃଷ୍ଠା ୧୭୧)

(ଗ) - ହ୍ନଂଣ *

ଆମ୍ଭର ଆଉଂଣ ମାଳା ଦେଇ ବଳ
ହ୍ରସ୍ଵ ହ୍ରାଦେ ପ୍ରଜାନଛି ହୋଇବେ କୁମାଣ୍ଡ। ୭୫୮

(୬) ଭୂତକାଳିକ କ୍ରିୟାବାଚକ ବିଶେଷଣ

(କ)—ଆ

ଏହା କର୍ମବାଚ୍ୟରେ ନିଷ୍ପନ୍ନ।
ପାଲଟା ବସ୍ତ୍ର ଖଣ୍ଡି ପଖାଳିବ ନେଇ ୧୩୬୭।୧

---

ମଧ୍ୟଯୁଗୀୟ ସାହିତ୍ୟରେ 'ଥିବେ' ବା ହେତୁ ଅର୍ଥରେ -ଇ, -ଉ କ୍ରିୟାବାଚକ ବିଶେଷଣର ବହୁଳ ବ୍ୟବହାର ଦେଖାଯାଏ।—

ବିରହାନଳ କାଳୁଁ ତା ଶରୀର
କୃତଥିବ ଭବ ଭବନା ମୀର। (ବୈ. ବି. ୩-୩୦)
ଦେବ ତୁଁ ସୁଗ୍ରୀବ ସତ କରୁଁ ଗସବ
ବୀର ଅସ୍ତ୍ର ଅସ୍ୱତେ ପ୍ରବେଶ ଜବ ଯେ। (ବୈ. ବି. ୩୮-୪)
ଅମ୍ବୁଜାକ୍ଷ ଏହା କରୁଁ ଶ୍ରବଣ
ଅଙ୍ଗେ ଦର୍ଶିଲ ଏ ଶୁଭ ଲକ୍ଷଣ। (ବି. ଚ. ମ. ୫-୧୩)
କଟାକ୍ଷେ ନ ଗୁହିଁ ବଚନ ନ କହି
ଗଲୁ ଯା କାମ ବନ୍ଧୁ ବନ୍ଧୁ। (ଗ. କ. ୮-୭)
ସୁମୀକସମ୍ଭର ପଚ୍ଛୁ ଅମର—
ଯତ ବଦନ୍ତି ଏସନେ। (ପ୍ର. ପୁ ଚ. ୪୮-୮)

* -ଉଣ -ଉଣ୍ଡରେ ପରିଣତ ହୋଇଛି।—
ଘରେ ନ ପଶୁଣ୍ଡୁ ଗୃହ ବାଜିଲ।
ନଈ ନ ଦେଖୁଣ୍ଡୁ ନଙ୍ଗଲା।

ବର୍ତ୍ତମାନ ଏ ଶ୍ରେଣୀର କ୍ରିୟାବାଚକ ବିଶେଷଣ କର୍ମବାଚ୍ୟ କ୍ରିୟାର ମୁଖ୍ୟ ଅଂଶରୂପେ ବ୍ୟବହୃତ । ଯଥା—ଶୁଣା-ଯାଏ, କରା-ଯାଉଛି, ଦିଆ-ଗଲା, ନିଆ-ଯିବ । ସଙ୍କଳିତ ଗ୍ରନ୍ଥାଂଶରେ କର୍ମବାଚ୍ୟ କ୍ରିୟାର ମୁଖ୍ୟ ଅଂଶ ରୂପେ ଏହାର ବ୍ୟବହାର ନାହିଁ ।

ଏହା ବିଶେଷ୍ୟର ପୂର୍ବରେ ଓ ପରେ ବ୍ୟବହୃତ ହୋଇଥାଏ ।

ଶିଝା କାଠ, କଣା ଘୁଷୁଲ, ଏମାନେ କଣାଶୁଣା ।

-ଆ କ୍ରିୟାବାଚକ ବିଶେଷଣର ଉତ୍ପତ୍ତି

ସମ୍ଭବତଃ ପ୍ରା. ଭା. ଆ. ଅନଟ୍-କ୍ତ ଓ ସ୍ୱାର୍ଥିକ-କ, ଉଭୟର ସମ୍ମିଶ୍ରଣରୁ ଏହାର ଉତ୍ପତ୍ତି । ଯଥା—

ପ୍ରା. ଭା. ଆ. ପର୍ଯ୍ୟସ୍ତ-କ > ମ: ଭା: ଆ. ପଲ୍ଲଟ୍ଟ-ଅ > ଓ. ପାଲଟା
,, କୃତ୍ତ-କ > ,, କଟ୍ଟ-ଅ > ଓ. କଟା
,, ଲଗ୍ନ-କ > ,, ଲଗ୍ଗ-ଅ > ଓ. ଲଗା
,, କୃଷ୍ଟ-କ > ,, କଡ୍ଢ-ଅ > ଓ. କଢ଼ା

କ୍ରମେ ଏହା ସେଟ୍--କ୍ତ+ସ୍ୱାର୍ଥିକ-କ-ରୁ ମଧ୍ୟ ଉତ୍ପନ୍ନ ହୋଇଥିବ ।

ଯଥା—ପଠିତକ— > ପଢ଼ା, *ଶୁଣିତକ— > ଶୁଣା, *କରିତକ— > କରା ।

(ଖ)—ଇ, ଇଂ

ଏହା କର୍ତ୍ତୃବାଚ୍ୟ ତଥା କର୍ମବାଚ୍ୟରେ ନିଷ୍ପନ୍ନ ।

କର୍ତ୍ତୃବାଚ୍ୟରେ—

ଆଠ ସନ୍ୟ ନ ଆଇଂ କହୁ ସ୍ନେହାଙ୍କର ତୁଲେ
ସ୍ୱେଚ୍ଛନ୍ଦ କରି ନବଖଣ୍ଡ ମେଦିନୀ ସାଧି କଲେ । ୪୮
ସୁଜ୍ଞାନପଣେ ଋଷିଙ୍କି ଆଇ ସେବା କରୁ । ୧୩୭୫ । ୨

କର୍ମବାଚ୍ୟରେ—

ଶ୍ରିଗାଳର ବଳେ ସିଂହ ହୋଇଲା ଧ୍ୱଂସି । ୭୪୯।୨
ତତକ୍ଷଣାତ୍ ସବୁ ପାତେକ ଯାଇ ପୋଛି । ୧୧୭୫।୨

ସମସ୍ତ ସମ୍ପନ୍ନତାସୂଚକ କାଳ ଓ ଭାବରେ କ୍ରିୟାର ମୁଖ୍ୟ ଅଂଶ ରୂପେ-ଇ କ୍ରିୟା-ବାଚକ ବିଶେଷଣ ରହେ ।

| | |
|---|---|
| କରି-ଅଛି | କରି-ଥିବ କରି-ଥାଇ |
| କରି-ଥିଲା | କରି-ଥାନ୍ତି ଇତ୍ୟାଦି |

ଏହା ଇଣ ମଧ୍ୟ ହୋଇପାରେ—

| | |
|---|---|
| କରିଣ-ଅଛି | କରିଣ-ଥିବ |
| କରିଣ-ଥିଲା | କରିଣ-ଥାନ୍ତି |

ଲୋକେ ଯେ ପୂରିଣଅଛନ୍ତି ଦୃଗ କୂଳେ ୧୦୮।୧

-ଇ (-ଇଂ) କ୍ରିୟାବାଚକ ବିଶେଷଣର ଉତ୍ପତ୍ତି—

ଏହା ପ୍ରା. ଭା. ଆ. ସେଟ୍ -କ୍ତ (-ଇତ)ରୁ ଉତ୍ପନ୍ନ । ଯଥା—

| ପ୍ରା. ଭା. ଆ. | ମ. ଭା. ଆ. | ଓ. |
|---|---|---|
| ଚଳିତ | ଚଳିଅ | ଚଳି |
| ଖାଦିତ | ଖାଇଅ | ଖାଇ |
| କର୍ଷିତ | କର୍ଷିଅ | କର୍ଷି |

କ୍ରମେ ଅନଟ୍ -କ୍ତ (-ତ) ରୁ ମଧ୍ୟ ଏହାର ଉତ୍ପତ୍ତି ହେଲା । ଯଥା—କୃତ > *କରିତ > କରିଅ > କରି, ଶ୍ରୁତ > *ଶୁଣିତ > ଶୁଣିଅ > ଶୁଣି ।

-କ୍ତ ପ୍ରତ୍ୟୟାନ୍ତ ପଦ ସାଧାରଣତଃ ଅକର୍ମକ ଧାତୁରୁ କର୍ତ୍ତୃବାଚ୍ୟରେ ଏବଂ ସକର୍ମକ ଧାତୁରୁ କର୍ମବାଚ୍ୟରେ ପ୍ରଯୁକ୍ତ ହେଉଥିଲା । କିନ୍ତୁ ମ. ଭା. ଆ. ରେ ଉଭୟ ବାଚ୍ୟର ଏକୀଭୂତତା ଫଳରେ ଓଡ଼ିଆରେ କର୍ମବାଚ୍ୟନିଷ୍ପନ୍ନ -ଇ କ୍ରିୟାବାଚକ ବିଶେଷଣ କର୍ତ୍ତୃବାଚ୍ୟରେ ମଧ୍ୟ ବ୍ୟବହୃତ ହେଲା ।

ବିଶେଷିତର ପୂର୍ବରେ ଏହାର ବ୍ୟବହାର ନାହିଁ ।

(ଗ) -ଲା, -ଇଲା

ଏହା ଅକର୍ମକ ଧାତୁରୁ କର୍ତ୍ତୃବାଚ୍ୟରେ ଓ ସକର୍ମକ ଧାତୁରୁ କର୍ମବାଚ୍ୟରେ ନିଷ୍ପନ୍ନ ।

କର୍ତ୍ତୃବାଚ୍ୟରେ—

ମଥାପ୍ରେ ଯେକମ ତାହାର ଝଡ଼ିଲା ପତ୍ରଗୋଟି । ୧।୮୩।୨
ଏବେ ସରିଲା ବେଳକୁ କେସନେକେ ନ କରିବୁଂ ଗୁରୁବାକ୍ୟ । ୮୩୯।୧

କର୍ମବାଚ୍ୟରେ—

କଳା କୃତ୍ୟ ଗୋ ଏବେ ଲଙ୍ଘିବ କେମନ୍ତ । ୭୯୭।୨

-ଲା, -ଇଲା ଭାବବାଚ୍ୟରେ ନିଷ୍ପନ୍ନ ହୋଇ କ୍ରିୟାବାଚକ ବିଶେଷ୍ୟରୂପେ ମଧ୍ୟ ରହିଛି ।

ଗାଙ୍ଗିନ ବୋଇଲାକୁ ଶ୍ରୁତପୂର୍ବ ମାଇଲା । ୪୩୧।୨ *
ରୁମ୍ଭର ଗଲାର ତ ହୋଇଲାକ ମାସ ସ୍ୱର ।
(ବନପର୍ବ ୧ମ ଖଣ୍ଡ, ପୃ. ୫୮୭)

---

* ମୂଗଲରୋଳ ହୋଇଲାକୁ ସୋମୋଦ୍ର ମାଡ଼ି ଅଇଲାକୁ ।
ଅପାର ବନ ହୋଇଲା । (ମା. ପା. ଯଯାତି କେଶରୀ)
ସୂର ଜାତ ହୋଇଲାଉଁ ମୁଁ ଦୁଃଖୀ ବୋଲି ଜାଣଇଁ ।
(ରୁ. ସୁ. ପୃ: ୭୦)

## -ଲ, -ଇଲ କ୍ରିୟାବାଚକ ବିଶେଷଣର ଉତ୍ପତ୍ତି—

ମ. ଭା. ଆ.ର ଅନ୍ତିମ ସ୍ତର (ଅପଭ୍ରଂଶ) ବେଳକୁ ପ୍ରା· ଭା, ଆ· ର ସମସ୍ତ ପ୍ରକାର ଭୂତ କାଳିକ କ୍ରିୟା (ଲଙ୍, ଲୁଙ୍, ଲିଟ୍) ଲୋପ ପାଇ ଯାଇଥିଲା। ସେସବୁର ସ୍ଥାନ ଗ୍ରହଣ କରିଥିଲା ଭୂତକାଳିକ କୃଦନ୍ତ। ପ୍ରା. ଭା· ଆ· ଭୂତକାଳିକ କୃଦନ୍ତ -ତ, -ଇତ ପ୍ରାଚ୍ୟ ଅପଭ୍ରଂଶରେ -ଲ, -ଇଲ ହୋଇଯାଇଥିଲା। ଯଥା—କୃତ > କଲ, ପଠିତ > ପଢ଼ିଲ, (ଶ୍ରୁତ) *ଶୁଣିତ > ଶୁଣିଲ, (ଜ୍ଞାତ) *ଜାଣିତ > ଜାଣିଲ। -ଲ, -ଇଲ ପୁରୁଷ ଓ ବଚନବୋଧକ ପ୍ରତ୍ୟୟ (ଧାତୁବିଭକ୍ତି) ଯୋଗ ଭୂତକାଳିକ କ୍ରିୟାରେ ପରିଣତ ହେଲା (ଯଥା—କଲ + ୩ୟ ପୁ ଏକ ବ -ଆ = କଲା, କଲ + ୩ୟ ପୁ ବହୁ ବ -ଏ = କଲେ ଇତ୍ୟାଦି)। ବର୍ତ୍ତମାନକାଳିକ କ୍ରିୟାବାଚକ ବିଶେଷଣ ପରି ଏହା ମଧ୍ୟ ଆକାରାନ୍ତ ହୋଇ ଭୂତକାଳିକ କ୍ରିୟାବାଚକ ବିଶେଷଣ ହେଲା (ଯଥା—କଲ + ଆ = କଲା, ହିଣ୍ଡିଲ + ଆ = ହିଣ୍ଡିଲା)। ପ୍ରଥମେ ଏହା ଲିଙ୍ଗସାପେକ୍ଷ ଥିଲା, ମାତ୍ର ପରେ ଲିଙ୍ଗ-ନିରପେକ୍ଷ ହେଲା। ଯଥା—ବଢ଼ିଲା ପୁଅ, ବଢ଼ିଲା ଝିଅ।

### (୩) ଭବିଷ୍ୟତକାଳିକ କ୍ରିୟାବାଚକ ବିଶେଷଣ

-ବା, -ଇବା

ଏହା ବିଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି।

(କ) ୨ୟ ପୁରୁଷ ପ୍ରତି ସମ୍ମାନଜ୍ଞାପନ ଉଦ୍ଦେଶ୍ୟରେ—

ବିଭକାର୍ଯ୍ୟକରି ଆଜ୍ୟାଂ ଦେବା ଦେବ ସ୍ୱାମି। ୫୮୪।୨

(ଦେବା—ଦିଅନ୍ତୁ)

ଅମ୍ଭା କନ୍ୟା ବୋଇଲା ମୋତେ ପ୍ରସନ୍ନ ହୋଇବା

ଆନେ କାର୍ଯ୍ୟ ନାହିଂ ମୋତେ ସ୍ୱାମି ଦାନ ଦେବା। ୭୦୩

(ହୋଇବା-ହୁଅନ୍ତୁ, ଦେବା-ଦିଅନ୍ତୁ)

ବିଗୁଣ କହିବା ଆମ୍ଭକଇ ସେବଣ ଶକ୍ୟ। ୮୩୯।୨

---

ଇନ୍ଦ୍ର, ଚନ୍ଦ୍ର, ଆଦି ଦେବତା

ତୋର ସୃଜିଲରୁ ଏହି ବିକତା। ମ. ମ ୧-୧୩)

ବିଶେଷିତର ପରେ ମଧ୍ୟ -ଲା, -ଇଲା କ୍ରିୟାବାଚକ ବିଶେଷଣର ବ୍ୟବହାର ରହିଛି। ଯଥା—

ଜନକର ସତ୍ୟ ବଚନ କଲା ରହୁ (ଦା: ଗ୍ର: -ହରଧନୁଭଙ୍ଗ)

ସେ ରଥେ ସହସ୍ରେ ପିଶାଚ ଯୋଚିଲା ଅଛୁ।

(ଲୁ: ସୁ. ପୃ· ୧୪୩)

ଇନ୍ଦ୍ର ଆରୋହିଲା ଅଛଇ ଐରାବତ ହାଥୀ। (ବନପର୍ବ ୨ୟ ଖଣ୍ଡ ପୃ: ୩୧)

(କହିବା-କହନ୍ତୁ)

ବ୍ୟାସେ ବୋଇଲେ ମାଗୋ ଶୁଣିମା ଆଦ ନାଗ୍ର । ୮୦।୧

( ଶୁଣିମା < ଶୁଣିବା—ଶୁଣନ୍ତୁ )

(ଖ) ଅନୁଜ୍ଞା ତଥା ଔଚିତ୍ୟ ଅର୍ଥରେ—

ରୁ ଏବେ ଆମ୍ଭର ବଚନ କରିବା

ଏ ତୋର ଭୂମାଗ୍ନଳ ଆମ୍ଭ ଧୃତରାଷ୍ଟ୍ରକଇ ଦେବା । ୧୩୩୨

(କରିବା—କର, କରିବା ଉଚିତ)

(ଦେବା—ଦଅ, ଦେବା ଉଚିତ)

(ଗ) ଯୋଗ୍ୟତା ଅର୍ଥରେ—

ଅନଙ୍ଗ ଶରଘାତ ସହିବାକ କେନ୍ତୁ । ୨୧୨ । ୨

(ସହିବା-କ—ସହିବାକୁ ଯୋଗ୍ୟ)

(ଘ) ଭବିଷ୍ୟତ କାଳ ଅର୍ଥରେ—

ପଦ୍ମଲୋଭ ରାଜା ମୋତେ ଦେବାକ ଦୋହିତା ୨୫୦ । ୧

(ଦେବା-କ—ଦେବ)

ପାଳଲେ ଅବଶ୍ୟ ହୋଇବା ବଇକୁଣ୍ଠବାସି । ୨୨୪ । ୨

(ଆମେ ବୈକୁଣ୍ଠବାସୀ ହେବା) *

-ବା, -ଇବା କ୍ରିୟାବାଚକ ବିଶେଷଣର ଉତ୍ପତ୍ତି—

ଏହା ପ୍ରା. ଭା. ଆ. -ତବ୍ୟ କୃଦନ୍ତ ପଦରୁ ଉତ୍ପନ୍ନ । ଅନ୍ୟାନ୍ୟ କ୍ରିୟାବାଚକ ବିଶେଷଣ ପରି ଏହା ମଧ୍ୟ ଅକାରାନ୍ତ ହୋଇଅଛି ।

| ପ୍ରା. ଭା. ଆ. | ମ. ଭା. ଆ. | ଓ. |
|---|---|---|
| ଚଳିତବ୍ୟ | ଚଳିଅବ୍ବ | ଚଳିବ > ଚଳିବା |
| ପଠିତବ୍ୟ | ପଢ଼ିଅବ୍ବ | ପଢ଼ିବ > ପଢ଼ିବା |
| କର୍ତ୍ତବ୍ୟ | କରିଅବ୍ବ | କରିବ > କରିବା |
| ଦାତବ୍ୟ | ଦେଅବ୍ବ | ଦେବ > ଦେବା |

ଇତ୍ୟାଦ

---

* ବାହାରକୁ କାଢ଼ି ଆଣିମା ଶବ୍ଦପନ

ରୁ ଯେବେ ମହାରାଣି ହୋଇବା ପରସନ୍ନ । (ଦା: ରା: —ହରଧନୁଭଙ୍ଗ)

ମୋର ହୃଦେ ବିଜେ କରିବା ଗୋବିନ୍ଦ (ର: ମ: ୧-୨୫)

ପ୍ରା: ଭା: ଆ: ଭବିଷ୍ୟତ କାଳ କ୍ରିୟା ଅପଭ୍ରଂଶ ସମୟକୁ ଲୋପ ପାଇଯାଇଥିଲା । ଏହି ଭବିଷ୍ୟତକାଳିକ କୃଦନ୍ତ -ବ, -ଇବରୁ ପୁରୁଷ ଓ ବଚନବୋଧକ ପ୍ରତ୍ୟୟ (ଧାତୁ-ବିଭକ୍ତି) ଲାଗି ଭବିଷ୍ୟତକାଳିକ କ୍ରିୟା ଗଠିତ ହେଲା । ଯଥା—କରିବ + ୧ମ ପୁରୁଷ ଏକବଚନ -ଇ = କରିବି, ଦେବ + ୩ୟ ପୁରୁଷ ବହୁବଚନ -ଏ = ଦେବେ ।

ଓଡ଼ିଆରେ -ବା, -ଇବା ଯେଉଁ ଅର୍ଥରେ ବ୍ୟବହୃତ, -ତବ୍ୟ ସେହି ଅର୍ଥରେ ବ୍ୟବହୃତ ଥିଲା ।—

ତ୍ୱୟା ଇଦଂ ପଠିତବ୍ୟମ୍ ।

(ତୁମେ ଏହା ପଢ଼, ତୁମେ ଏହା ପଢ଼ିବ, ତୁମର ଏହା ପଢ଼ିବା ଉଚିତ, ତୁମର ଏହା ପଢ଼ା ହେବାର ଯୋଗ୍ୟ । )

ପ୍ରା: ଭା: ଆ:ରେ -ତବ୍ୟ କର୍ମବାଚ୍ୟ ଓ ଭାବବାଚ୍ୟରେ ନିଷ୍ପନ୍ନ । ଅବଶ୍ୟ କର୍ତ୍ତୃ-ବାଚ୍ୟରେ 'ବାପ୍ତବ୍ୟ' 'ପ୍ରାପ୍ତବ୍ୟ' ଭଳି କେତେକ ପଦ ରହିଛି । କିନ୍ତୁ ମ: ଭା: ଆ ରେ ବାଚ୍ୟମାନଙ୍କର ତାଦାତ୍ମ୍ୟ ଫଳରେ ଓଡ଼ିଆରେ କର୍ମ-ଭାବବାଚ୍ୟ ନିଷ୍ପନ୍ନ -ବା, -ଇବା କର୍ତ୍ତୃ-ବାଚ୍ୟରେ ମଧ୍ୟ ବ୍ୟବହୃତ ।

-ବା, -ଇବା ଭାବବାଚ୍ୟରେ ନିଷ୍ପନ୍ନ ହୋଇ କ୍ରିୟାବାଚକ ବିଶେଷ୍ୟରୂପେ ମଧ୍ୟ ବ୍ୟବହୃତ ।—

ବାହାର ହୋଇବାକଇ ଭାବ ଘେନିଲା । ୮।୧।୧

ପୁଣ ଦେଖିବାକୁ ହରଷ ଉପୁଜେ । ୩୬୩ । ୧

ଭୂତକାଳିକ ଓ ଭବିଷ୍ୟତକାଳିକ କ୍ରିୟାବାଚକ ବିଶେଷଣ ସଂକଳିତ ଗ୍ରନ୍ଥାଂଶରେ କେବଳ ସାଧାରଣ ଆକୃତିରେ ରହିଅଛି । ବର୍ତ୍ତମାନ ଏହା ଅସମ୍ପନ୍ନ ଓ ସମ୍ପନ୍ନ (କାଳ) ଆକୃତିରେ ମଧ୍ୟ ବିଭିନ୍ନ ବାଚ୍ୟରେ ବ୍ୟବହୃତ ହେଉଅଛି । ପ୍ରୟୋଗର କେତେ ମାତ୍ର ଉଦାହରଣ—

କର୍ତ୍ତୃବାଚ୍ୟରେ—

| | | | |
|---|---|---|---|
| ଖାଇଲା | ଖାଇବା | | |
| ଖାଉଥିଲା | ଖାଉଥିବା | ଲୋକ | |
| ଖାଇଥିଲା | ଖାଇଥିବା | | |

---

ଭୋଗର ଅଣିମା ସୁଆର (କର୍ତ୍ତୃବାଚ୍ୟରେ) (E.O.L.S. ଶିଳାଲେଖ ୨୯-୬), ଡେହଲ ଦେବା ଭାତ (କର୍ମବାଚ୍ୟରେ) (E. O. L. S. ୭-୫), ଠୁଳ କରିଥିବା ଭିକ୍ଷା ମାଗିବାର ଧନ (କ. ଚ) (କରିଥିବା—କର୍ମବାଚ୍ୟରେ, ମାଗିବା—ଭାବବାଚ୍ୟରେ), କି ସୁଗନ୍ଧକାରି ଧାତୁଜବଡ଼କୁ ଧୋଉଥିବାରେ । ...ମାଳାପତ୍ରଏ ବଣ୍ଟୁଥିବାରେ । (ବୁ. ସୁ: ସୁ ୧୭୩) (ଧୋଉଥିବା, ବଣ୍ଟୁଥିବା—ଭାବବାଚ୍ୟରେ), ଏମନ୍ତ ଯେବେ ବଞ୍ଚୁଣିବା ହୋଉଅଛୁ (ବଞ୍ଚୁଣିବା—କର୍ତ୍ତୃବାଚ୍ୟରେ), ଗ୍ରାସାଦ କେତେଣଏ ହାଥ ଉଚ୍ଚେ କରିବ ବୋଲି ବଞ୍ଚୁଣିବା ହୋଇଅଛୁ (ବଞ୍ଚୁଣିବା—ଭାବବାଚ୍ୟରେ) (ମ: ପା: ଅନଙ୍ଗଭୀମଦେବ) ।

କର୍ମବାଚ୍ୟରେ—

| | | | |
|---|---|---|---|
| ରୁ, ତୋ | ଖାଇଲା<br>ଖାଉଥିଲା<br>ଖାଇଥିଲା | ଖାଇବା<br>ଖାଉଥିବା<br>ଖାଇଥିବା | ଧନ |

ଭାବବାଚ୍ୟରେ—

| | | |
|---|---|---|
| ଖାଇଲା<br>ଖାଉଥିଲା<br>ଖାଇଥିଲା | ଖାଇବା<br>ଖାଉଥିବା<br>ଖାଇଥିବା | ଲୁ, ରୁ, ର, ରେ<br>ଇତ୍ୟାଦି |

(ସେହି ଭେଜାଲ ଜନ୍ଦାଗୁଣ୍ଡା ଖାଇଲାକୁ ତୋ ଦେହ ଖରାପ ହେଲା । ପ୍ରଚୁର ଉପୁର ମାଲ ଖାଉଥିବାରୁ ଦେଶସେବୀମାନେ ମୋଟା ହେଉଛନ୍ତି, ଇତ୍ୟାଦି । )

ବିଶେଷିତର ପରେ ରହିଲେ ଏହା କର୍ତ୍ତୃପଦ 'ହୋ' ଧାତୁର ସାହାଯ୍ୟ ନିଏ । ଯଥା—

କର୍ତ୍ତୃବାଚ୍ୟରେ—ଏ ବିଗରେ ଟିକିଏ ଧ୍ୟାନ ଦେବା ହୁଅନ୍ତୁ ।

କର୍ମବାଚ୍ୟରେ—ଏ ବିଗରେ ଟିକିଏ ଧ୍ୟାନ ଦେବା ହେଉ ।

ଭୂତକାଳିକ କ୍ରିୟାବାଚକ ବିଶେଷଣର କର୍ତ୍ତା ବିକଳ୍ପେ ଷଷ୍ଠ୍ୟନ୍ତ ହୋଇଛି ।

(୪ର୍ଥୀ ଓ ୬ଷ୍ଠୀ ବିଭକ୍ତିର ବ୍ୟବହାର ବୈଶିଷ୍ଟ୍ୟ ଦ୍ରଷ୍ଟବ୍ୟ)

ସଂସ୍କୃତରେ ମଧ୍ୟ ଏହାର କର୍ତ୍ତା ବିକଳ୍ପେ ଷଷ୍ଠ୍ୟନ୍ତ ହୁଏ । ଯଥା—

ଅସ୍ମାଭିରିଦଂ ପଠିତବ୍ୟମ୍ ।

ଅସ୍ମାକମିଦଂ ପଠିତବ୍ୟମ୍ ।

## ତ୍ରୟୋବିଂଶ ଅଧ୍ୟାୟ

### ସପ୍ତମ୍ୟନ୍ତ କ୍ରିୟାବାଚକ ବିଶେଷଣ

(୧) ବର୍ତ୍ତମାନକାଳିକ -ନ୍ତେ, -ଅନ୍ତେ

ବଧିକ ଆସନ୍ତେ ସେ ସାଗ୍ୟାଂର ଅବଳା । ୧୬୮ । ୧

ଦଣ୍ଡ ଯେନ ଗ୍ରସ୍ତେ ପୃଥ ପୁତ୍ର ଆସନ୍ତେ

ତ୍ରିପୁର ନଦୀ ଉତ୍ତର ତୀରେ ରହନ୍ତେ । ୬୧୭

---

ବର୍ତ୍ତମାନ, ଅନୁଷ୍ଠାନ ବା ଅନୁଷ୍ଠିତତା ଅର୍ଥରେ -ବା, -ଇବା ବ୍ୟବହୃତ ହୁଏ । ଯଥା—

ପ୍ରଶ୍ନ—ତୁମେ କିଏ ତ ?

ଉତ୍ତର—ଦେଖିବା, ଚେଷ୍ଟା କରିବା (ଦେଖିବ, ଚେଷ୍ଟା କରିବ)

-ବା, -ଇବା ଅଧିକରଣ ବାଚ୍ୟରେ ମଧ୍ୟ ବ୍ୟବହୃତ ହୋଇପାରେ ।—

ଷାଠିଏ କୋଟି ଲୋକ ରହିବା/ରହୁଥିବା/ରହିଥିବା ଦେଶରେ ସମସ୍ୟା ତ ସବୁବେଳେ ଲାଗିରହିଥିବ ।

ଅମୋଢ଼ ରେତ ପଡ଼ନ୍ତେ ଗର୍ଭେ ରହିବ ଆସି କି । ୧୪୨୭ । ୨

ଗୋଡ଼ାବନ୍ତେ ବନସ୍ତରେ ଝୁଣ୍ଟିଲେ ସେ ସତି । ୧୩୯୧ । ୧

ଏଗୁଡ଼ିକରେ ବର୍ତ୍ତମାନକାଳିକ କ୍ରିୟାବାଚକ ବିଶେଷଣରୁ 'ସ୍ଥିବେ' ଅର୍ଥରେ ୭ମୀ -ଏ ଲଗିଅଛି ।—

ଆସନ୍ତ୍ + ଏ = ଆସନ୍ତେ, ରହନ୍ତ୍ + ଏ = ରହନ୍ତେ ଇତ୍ୟାଦି ।

କେତେକ ସ୍ଥଳରେ ୭ମୀ -ଏଣ ମଧ୍ୟ ଲଗିଅଛି ।—

ଏମନ୍ତ ବିଗ୍ଧର କରନ୍ତେଣ ଦେବ ସୂର୍ଯ୍ୟ । ୧୫୦ । ୧

ବୁଲନ୍ତେଣ ଯନ୍ତ୍ରଂ ହୋଇଲକ ଅସମ । ୫୭ । ୨

ଏଗୁଡ଼ିକର କର୍ତ୍ତା ବିକଳ୍ପେ ଷଷ୍ଠ୍ୟନ୍ତ ହୋଇଅଛି । (୪ର୍ଥ ଓ ୬ଷ୍ଠୀ ବିଭକ୍ତିର ବିଶେଷ ବ୍ୟବହାର ଦ୍ରଷ୍ଟବ୍ୟ)

(୨) ଭୂତକାଳିକ -ଲେ, -ଇଲେ

ଦିବ୍ୟ ଚକ୍ଷୁରେ ଦେଖନ୍ତି ପଡ଼ିଲେ ଅରଣ୍ୟ । ୧୬୭ । ୨

ଅନେକ ଦୋଷ କଲେ ହୋଇବ ଭଲଚା ୨୪୩ । ୨

ଧନ କଉଡ଼ି କିଛୁ ନ ଘେନବୁ ଯାଉଲେ

ସୁଖେ ପାର କରେଦେବୁ ନାବରେ ବସିଲେ । ୮୬୭

ଭୂତକାଳିକ କ୍ରିୟାବାଚକ ବିଶେଷଣରୁ 'ସ୍ଥିବେ' ୭ମୀ -ଏ ଯୋଗରେ ଏଗୁଡ଼ିକ ଗଠିତ । ଯଥା—

ପଡ଼ିଲ + ଏ = ପଡ଼ିଲେ, କଲ + ଏ = କଲେ

ଏଥିରେ ମଧ୍ୟ କେତେକ ସ୍ଥାନରେ ୭ମୀ -ଏଣ ଲଗିଛି । ଯଥା—

କୋହିଲେଣ ଚନ୍ଦ୍ରଉପରେଣ ବସି । (ଆଦ୍ୟପର୍ବ ୧ମ ଖଣ୍ଡ ପୃ. ୩୦୭)

ସଂପନ୍ନ ଭୂତକାଳିକ ଆକୃତିରେ ମଧ୍ୟ ଏହାର ପ୍ରୟୋଗ ରହିଛି ।—

ସେବା କରିଥିଲେ କରଇ ଅବା ଦୟା । ୬୮୫ । ୧ †

(କର-ଥିଲ + ଏ = କରିଥିଲେ)

ଏହାର କର୍ତ୍ତାରେ ମଧ୍ୟ ବିକଳ୍ପେ ଷଷ୍ଠୀ ଲଗିଅଛି । (୪ର୍ଥ ଓ ୬ଷ୍ଠୀ ବିଭକ୍ତିର ବିଶେଷ ବ୍ୟବହାର ଦ୍ରଷ୍ଟବ୍ୟ)

## ଚତୁର୍ବିଂଶ ଅଧ୍ୟାୟ

### ନିମିତ୍ତାର୍ଥକ ଅସମାପିକା କ୍ରିୟା

ଆକୃତି ଦୃଷ୍ଟିରୁ ଏହା ତିନି ଶ୍ରେଣୀରେ ବିଭାଜ୍ୟ—(୧) -ଇତେ, (୨) -ଇତ, (୩) -ଇ ।

---

† ଅସଂପନ୍ନ ଭୂତକାଳିକ ଆକୃତିରେ ମଧ୍ୟ ଏହା ବ୍ୟବହୃତ ହୋଇପାରେ ।—
କ୍ୟାୟ ବାଟରେ ଚଳୁଥିଲେ ଭୟ କଅଣ ?

(କ) -ଇତେ

ଏ ଘୋର ସଂସାର ସାଗରେ ତରତେ ବଳାଇଲ ମନସା । ୨୨ । ୧

(ତରତେ—ତରିବା ନିମିତ୍ତ)

ଆମ୍ଭର ମାତାକଇଂ ହରତେ ଏତେ ଦର୍ପ କାହାର । (ଦା: ପ: ୧ମ ସ୍କ. ୪୨)

(ହରତେ—ହରିବା ନିମିତ୍ତ)

ଜଳ ଖୋଜିତେ ସେ ଗଜ ହୋଇଲା ବନ୍ଧନ । (ଦା: ପ: ୧ମ ସ୍କ ୩୩୧)

(ଖୋଜତେ—ଖୋଜିବା ନିମିତ୍ତ)

(ଖ) -ଇତ

ମୁଣ୍ଡ ମୋଡ଼ିତ ଶ୍ରୀମୁଖଙ୍କର ଲୋଡ଼ଇ ପ୍ରସୂଧର ୭୫୩ । ୧

(ମୋଡ଼ିତ—ମୋଡ଼ିବା ନିମିତ୍ତ)

ଧର୍ମ ଦୂଷିତ ଲୋଡ଼ଇ ତେଣୀ ତୋପ୍ୟା । ୨୭୩ । ୧

(ଦୂଷିତ—ଦୂଷିବା ନିମିତ୍ତ) †

(ଗ) -ଇ

ସ୍ୱାମୀ ସ୍ୱପ୍ନ ହାଦେ ବଣ୍ଡ ହୋଇ ଆସୁଥିଲେ । ୬୧୯ । ୧

(ହୋଇ—ହେବା ନିମିତ୍ତ)

ଆମ୍ଭନ୍ତ ଅପସ୍ମୃତ ଦେଇ ନଦୀରେ ପକାଇ ଲୋଡ଼ୁ । ୮୮୪ । ୨

(ପକାଇ—ପକାଇବା ନିମିତ୍ତ) ††

-ଇତ କ୍ରମଶଃ -ଇ ହୋଇଥିବା ସମ୍ଭବ ।

ବର୍ତ୍ତମାନ -ଇତ ନିମିତ୍ତାର୍ଥକ କ୍ରିୟାର ବ୍ୟବହାର ବଲୁପ୍ତ । ମାତ୍ର '-ଇ'ର ବ୍ୟବହାର ରହିଛି । ଯଥା—

ନଈକ ପାଣି ଆଣି ଯାଉଛି । (ଆଣିବା ନିମିତ୍ତ)

ମୁଁ ଯାଣା ଦେଖି ଯିବି । (ଦେଖିବା ନିମିତ୍ତ)

ଉତ୍ତର ଓଡ଼ିଶାରେ -ଇତେ ବହୁଳଭାବେ ବ୍ୟବହୃତ ହୁଏ । ଯଥା—ଖାଇତେ, ଯାଇତେ ।

---

† ତାହା ଶୁଣିତ ମୋର ଇଚ୍ଛା
ପୁଚ୍ଛଇ କହ ଧର୍ମ ଦୀକ୍ଷା । (ସ୍ୱର୍ଗ : ୧୧ଶ ସ୍କନ୍ଧ ୨ୟ ଅଧ୍ୟାୟ)
ତାହା ଜାଣିତ ମୋର ଇଚ୍ଛା
କହ ପୁଣ୍ୟ ମନବାଞ୍ଛା । (ସ୍ୱର୍ଗ : ୧୧-୪)
ପୁନରପି ହରତପ ଭାଙ୍ଗିତ ଅନଙ୍ଗ
ଭ୍ରୂଲତା ଗୁଣ ସାଜିଲା କପାଳ ଶାରଙ୍ଗ । (ଭ: ଭ: ୨-୧୩)

†† ଯୌଗିକ କ୍ରିୟାର ୯ମ ବର୍ଗ ଦ୍ରଷ୍ଟବ୍ୟ ।

## ନମିତ୍ତାର୍ଥକ ଅସମାପିକାର ଉତ୍ପତ୍ତି

ମୂଳତଃ ପ୍ରା: ଖ୍ର: ଆ: 'ପଠିତବେ' 'ନେତବେ' (ପଢ଼ିବା ନିମିତ୍ତ, ନେବା ନିମିତ୍ତ) ଇତ୍ୟାଦ '-ତବେ'ରୁ ଉତ୍ପନ୍ନ ବୋଲି ମନେହୁଏ ।

କିପ୍ପାର ନମିତ୍ତ ଅର୍ଥ ଭବିଷ୍ୟତକାଳକ କ୍ରିୟାବାଚକ ବିଶେଷ୍ୟ ଓ ୪ର୍ଥୀ ବିଭକ୍ତିର ସଂଯୋଗଦ୍ୱାରା ମଧ୍ୟ ବ୍ୟକ୍ତ ହୋଇଅଛି ।—

ତାହାର ହୋଇବାକଇ ଖାବ ଗ୍ଭଡ଼ିଲ । ୬୮୧ । ୧

# ପଞ୍ଚବିଂଶ ଅଧ୍ୟାୟ

## କର୍ମବାଚ୍ୟକ୍ରିୟା

ସକଳତ ଗ୍ରନ୍ଥାଂଶରେ କ୍ରିୟାଗୁଡ଼କ ବହୁ ସଂଖ୍ୟାରେ କର୍ତ୍ତୃବାଚ୍ୟରେ ବ୍ୟବହୃତ । କର୍ମବାଚ୍ୟକ୍ରିୟା ଅତ୍ୟନ୍ତ ଅଳ୍ପ । ବର୍ତ୍ତମାନ ଭାଷାରେ -ଅ ଭୂତକାଳକ କ୍ରିୟାବାଚକ ବିଶେଷଣ ଏବଂ 'ହୋ' କମ୍ବା 'ଯା' ଧାତୁର ସଂଯୋଗରେ କର୍ମବାଚ୍ୟକ୍ରିୟା ଗଠିତ ହୁଏ । ଯଥା—କର-ହୁଏ, କର-ଯାଉଛୁ ଇତ୍ୟାଦ । କନ୍ତୁ ଏ ପ୍ରକାର ଯୌଗିକ କର୍ମବାଚ୍ୟକ୍ରିୟା ଏଥିରେ ଆଦୌ ବ୍ୟବହୃତ ହୋଇନାହିଁ । † ଏଥିରେ ଦୁଇ ଶ୍ରେଣୀର କର୍ମବାଚ୍ୟକ୍ରିୟା କେତୋଟିମାତ୍ର ଦେଖାଯାଏ ।

(୧) ଐକକ ଅର୍ଥାତ୍ ଏକ ପଦରେ ବ୍ୟକ୍ତ

(କ) ସାଧାରଣ ବର୍ତ୍ତମାନ କାଳରେ—

ପୁରୁଂ ଙ୍କର ସିଦ୍ଧ ଗୁ ଦେବତାଙ୍କ ଅଦ

ଦ୍ରଶନେ ଦୁରତ ହରଇ ପ୍ରସନେ କାର୍ଯ୍ୟ ସିଦ୍ଧ । ୬୫

(ହରଇ—ହୃତ ହୁଏ)

ତୋତେ ସୁମରଲେ ଅଶେଷ ପାପ ଖଣ୍ଡି । ୪ । ୬

(ଖଣ୍ଡି—ଖଣ୍ଡିତ ହୁଏ)

ତାହାର ରାଜ୍ୟେ ଅଧର୍ମ ନ ଭାଷେ । ୪୬୮ । ୧

(ନ ଭାଷି—ଭାଷିତ ହୁଏ ନାହିଁ)

ହରଲେ ସକୀ ଯେତ୍ନେଂଗଣନେ ସୂର୍ଯ ନ ଦଶ । ୬୬୩ । ୬

(ନ'ଦଶି—ଦୃଷ୍ଟ ନ ହୁଏ)

---

† କର୍ମବାଚ୍ୟକ୍ରିୟାର ମୁଖ୍ୟ ଅଙ୍ଗରୂପେ -ଅ ଭୂତକାଳକ କ୍ରିୟାବାଚକ ବିଶେଷଣ 'ରୁଦ୍ରସୁଧାନିଧି'ରେ ନିମ୍ନଲିଖିତ ପ୍ରକାରେ ବ୍ୟବହୃତ ହୋଇଥିବାର ଦେଖାଯାଏ ।—

ତାହା ବଡ଼ ଆୟତନ କର ନର୍ମାଣ କରା ଅଛୁ । (ପୃ. ୬୭)

ଦିବ୍ୟ ପଲଙ୍କ ଉପରେ ଅମୃତ ଫେନସମ ଶଯ୍ୟାଏ ନର୍ମାଣ କରା ଅଛୁ । (ପୃ. ୧୦୪)

ଖଣ୍ଡି, ଖ୍ୱସି, ଦଣି—ଏଗୁଡ଼ିକର ପ୍ରଚଳିତ ରୂପ ଖଣ୍ଡଇ, ଖ୍ୱସଇ, ଦଣଇ ।

ହରଇ, ଖଣ୍ଡଇ, ଖ୍ୱସଇ—ଏଗୁଡ଼ିକ କର୍ତ୍ତୃବାଚ୍ୟରେ ମଧ୍ୟ ବ୍ୟବହୃତ ହୋଇପାରେ । କିନ୍ତୁ 'ଦଣଇ' କର୍ତ୍ତୃବାଚ୍ୟରେ ବ୍ୟବହୃତ ହୋଇପାରେ ନାହିଁ । କାରଣ, ମୂଳତଃ ଏହା କର୍ମବାଚ୍ୟକ୍ରିୟାରୁ ଉତ୍ପନ୍ନ । ଯଥା—ପ୍ରା: ଭା: ଆ: ଦୃଶ୍ୟତେ>ମ: ଭା: ଆ: ଦୀସଇ>ଓ· ଦଣଇ । †

ସାଧାରଣ ବର୍ତ୍ତମାନକାଳିକ ଯୌଗିକ କର୍ମବାଚ୍ୟକ୍ରିୟାର ଉତ୍ପତ୍ତି—

ମ: ଭା: ଆ:ରେ ଏହାର ରୂପ ତିନପ୍ରକାର ଥିଲା । ଯଥା—

| ପ୍ରା· ଭା· ଆ. | ମ. ଭା. ଆ. |
|---|---|
| ହସ୍ୟତେ> | ହସ୍ସଇ, ହସିଅଇ, ହସିଜ୍ଜଇ |
| ଭଣ୍ୟତେ> | ଭଣ୍ଣଇ, ଭଣିଆଇ, †† ଭଣିଜ୍ଜଇ |

ଆଧୁନିକ କର୍ମବାଚ୍ୟକ୍ରିୟା ପ୍ରଥମୋକ୍ତ ତଥା ଦ୍ୱିତୀୟୋକ୍ତ ରୂପରୁ ଉତ୍ପନ୍ନ ।

(ଖ) ସାଧାରଣ ଅତୀତ କାଳରେ—

ମଦନ ଶରଘାଏ ଭେଦିଲେ ମହର୍ଷି
ଅମ୍ବାଳିକାକୁ କୋଳ କରି ଧଇଲେ ଆକର୍ଷି । ୧୦୪୭
(ଭେଦିଲେ—ଭେଦିତ ହେଲେ)
ଉଭୟେ ମାତାଙ୍କ ଶୃଙ୍ଗାରେଣ ଇଚ୍ଛା
ଛାଡ଼ିଲା ଭଦ୍ୟମାନ ପୁରନ୍ଦ୍ର ମନବାଞ୍ଛା । ୧୦୫୫
(ଛାଡ଼ିଲା—ଛର୍ଦ୍ଦିତ ଅର୍ଥାତ୍ ତ୍ୟକ୍ତ ହେଲା) ※

---

† ଏହିପରି କେତେକ କ୍ରିୟା ଆକୃତି ଦୃଷ୍ଟିରୁ କର୍ତ୍ତୃବାଚ୍ୟରେ, କିନ୍ତୁ ଅର୍ଥ ଦୃଷ୍ଟିରୁ କର୍ମବାଚ୍ୟରେ ବ୍ୟବହୃତ ହୁଏ । ଏଭଳି କ୍ରିୟାକୁ କର୍ମକର୍ତ୍ତୃବାଚ୍ୟ କ୍ରିୟା ବୋଲିଯାଏ । ଯଥା—

ଧରେ

କର୍ତ୍ତୃବାଚ୍ୟ—କେଉଟ ମାଛ ଧରେ । କର୍ମବାଚ୍ୟ—ମାଟିଆରେ ପାଣି ଧରେ ।

ଖାଉଛି

କର୍ତ୍ତୃବାଚ୍ୟ—ସେ ଭାତ ଖାଉଛି । କର୍ମବାଚ୍ୟ—ପ୍ରବଳ ସ୍ରୋତରେ ନଦୀର କୂଳ ଖାଉଛି ।

†† ଚଞ୍ଚଳ ସମାହିଅ କାହ୍ନ କରିଅଇ । (ବୌ. ଦୋ. ଲୁଇପା, ଚର୍ଯ୍ୟା ୧)
(କରିଅଇ—କରାହୁଏ)

※ ପୁଣ ତୃଣ ଶକଟା ବେକନ ଗଲେ
ସେହି ନାଶିଲେ ବାହୁଡ଼ି ନଇଲେ । (ମ. ମ. ୧-୭୨)
(ନାଶିଲେ—ନାଶିତ ହେଲେ)

ଏ ପ୍ରକାର ଯୌଗିକ କର୍ମବାଚ୍ୟକ୍ରିୟା ପ୍ରା° ଷ୍ଟ: ଆ: ଭୂତକାଳିକ କ୍ରିୟାବାଚକ ବିଶେଷଣରୁ ଉତ୍ପନ୍ନ। (କ୍ରିୟାବାଚକ ବିଶେଷଣ ଦ୍ରଷ୍ଟବ୍ୟ)

(୬) ଯୌଗିକ ଅର୍ଥାତ୍ ଯୁଗ୍ମପଦରେ ବ୍ୟକ୍ତ

(କ) କ୍ରିୟାବାଚକ ବିଶେଷ୍ୟ ଓ 'ଯା' ଧାତୁ—

ଦୁଷ୍ୟନ୍ତର ମହିମା ନ ଯାଇ କହଣ। ୧୦୩। ୧

(ନ ଯାଇ କହଣ—କୁହାଯାଇ ନ ପାରେ) †

ତଥାପି ଗଙ୍ଗାର ଶାପ ନ ଗଲା ମେଣ୍ଟଣ। ୪୮୩। ୬

(ନ ଗଲା ମେଣ୍ଟଣ—ମେଣ୍ଟିତ ଅର୍ଥାତ୍ ନିବାରିତ ହେଲା ନାହିଁ)

(ଖ) କ୍ରିୟାବାଚକ ବିଶେଷ୍ୟ ଓ 'ହୋ' ଧାତୁ—

କଣ ବୁଦ୍ଧିଲ କେସନେକେ ହୋଇବ ଧାରଣ। ୭୯୬। ୬

(ହୋଇବ ଧାରଣ—ଧାରିତ ହେବ)

ଭୂ ପାଣ୍ଡେନ୍ଦ୍ରନୁ ଶିର ଛେଦ ହୁଅ ତାହାର ହସ୍ତ। ୪୪୧। ୬

(ଶିର ଛେଦ ହୁଅ—ତୋ ଶିର ଛିନ୍ନ ହେଉ)

ଅବଶ୍ୟ ଶିର ଛେଦନ ହୋଇବ ତୋର ପୁତ୍ର ହାତେ। ୫୯୭। ୬

(ଶିର ଛେଦନ ହୋଇବ—ମୋ ଶିର ଛିନ୍ନ ହେବ) ❋

(ଗ) ଭୂତକାଳିକ -ଇ କ୍ରିୟାବାଚକ ବିଶେଷଣ ଓ 'ହୋ' ଧାତୁ—

ଶୃଗାଳର ବଳେ ସିଂହ ହୋଇଲା ଧଂସି। ୭୪୯। ୬

(ଧଂସି ହୋଇଲା—ଧ୍ୱଂସିତ ହେଲା)

---

ଏକକ କର୍ମବାଚ୍ୟକ୍ରିୟା ଧାତୁରୁ ଭବିଷ୍ୟତକାଳିକ ଆକୃତିରେ ମଧ୍ୟ ବ୍ୟବହୃତ ଅଛି—

ଭୂମ୍ୟେହିଁ ତରିବ

ଭୂମଯୋଗୁ ଆମ୍ଭ ତାପ ହାରିବ। (ର. ମ. ୩-୬୧)

(ହାରିବ—ହୃତ ହେବ)

† ଋଷିଗଣଙ୍କର ମୁଂ ସେ ଆକର୍ଷ ନ ଯାଇ। (ଦା. ସ୍ୱ.—ହରଧନୁଭଙ୍ଗ)

(ଆକର୍ଷ ନ ଯାଇ—ଆକର୍ଷିତ ହୁଏ ନାହିଁ)

❋ ବର୍ତ୍ତମାନ ମଧ୍ୟ କ୍ରିୟାବାଚକ ବିଶେଷ୍ୟ ଓ 'ହୋ' ଧାତୁର ସଂଯୋଗରେ କର୍ମ-ବାଚ୍ୟ ବ୍ୟକ୍ତ ହେଉଅଛି। ଯଥା—

ପରମେଶ୍ୱରଙ୍କଦ୍ୱାରା ଜଗତ ସୃଷ୍ଟି ହୋଇଛି।

(ଜଗତ ସୃଷ୍ଟ ହୋଇଛି)

ଏହସ୍ପତିର ଗୁରୁତ୍ୱ ଉପଲବ୍ଧି ହେଲା।

(ଗୁରୁତ୍ୱ ଉପଲବ୍ଧ ହେଲା)

ବିକଟାଳନସ୍ତନେ ସ୍ତନ୍ଦଂଲେ ଦୋଚନ୍ତୁ ଶିର ଛେଦ । ୨୩୦ । ୨
(ଶିର ଛେଦ ଦୋଚନ୍ତୁ—ତୋ ଶିର ଛିନ୍ନ ହେବ) *

---

କେହି କେହି ଜଗତର ସୃଷ୍ଟି=ଜଗତସୃଷ୍ଟି, ଗୁରୁତ୍ୱର ଉପଲବ୍ଧି=ଗୁରୁତ୍ୱ ଉପ-ଲବ୍ଧି- ଏହିପରି ଷଷ୍ଠୀ ତତ୍ପୁରୁଷ ସମାସଦ୍ୱାରା ଉତ୍ପନ୍ନ ଗୋଟିଏ ଗୋଟିଏ 'ସମସ୍ତ' ପଦ ରୂପେ ଗ୍ରହଣ କରି ସେହି 'ସମସ୍ତ' ପଦକୁ 'ହେବା' କ୍ରିୟାର କର୍ତ୍ତା ବୋଲି କହନ୍ତି । କିନ୍ତୁ ଏ ପ୍ରକାର ବିଶ୍ଳେଷଣ ସଙ୍ଗତ ବୋଧ ହୁଏ ନାହିଁ । କାରଣ, ଯଦି ଦୁଇ ସମସ୍ୟମାନ ପଦ ମଧ୍ୟରେ ଅନ୍ୟ ପଦ ରହେ, ତେବେ ଷଷ୍ଠୀ ତତ୍ପୁରୁଷ ସମାସ ହୋଇପାରେ ନାହିଁ । ଯଥା—

ବିଷୟଟିର ଗୁରୁତ୍ୱ ଭଲରୂପେ ଉପଲବ୍ଧି ହେଲା ।

ପ୍ରକୃତରେ 'ସୃଷ୍ଟି ହେବା' 'ଉପଲବ୍ଧି ହେବା' ପ୍ରଭୃତି ଗୋଟିଏ ଗୋଟିଏ ଯୌଗିକ କ୍ରିୟା । ଏଗୁଡ଼ିକ କର୍ମବାଚ୍ୟରେ ବ୍ୟବହୃତ ହୁଏ ।

କେହି କେହି ଏଭଳି କର୍ମବାଚ୍ୟ ଯୌଗିକ କ୍ରିୟାକୁ ସଂସ୍କୃତାନୁମୋଦିତ ଆକୃତିରେ ରଖନ୍ତି—

ପରମେଶ୍ୱରଙ୍କଦ୍ୱାରା ଜଗତ ସୃଷ୍ଟ ହୋଇଛି ।

ବିଷୟଟିର ଗୁରୁତ୍ୱ ଉପଲବ୍ଧ ହେଲା । ଇତ୍ୟାଦି

* ଅସମ୍ଭାଳ ହୋଇଲେ ହୋଇବୁଟି ଧ୍ୱଂସି । (ଦା. ଗ୍ରା:—ହରଧନୁଭଙ୍ଗ)

ଏହି ଶ୍ରେଣୀର ଯୌଗିକ କର୍ମବାଚ୍ୟକ୍ରିୟା ବର୍ତ୍ତମାନ ଓଡ଼ିଆରେ ବିଶେଷ ପ୍ରଚଳିତ । ଯଥା—

କଣ-ହୁଏ, କଣ-ହେଲା, କଣ-ହେବ ଇତ୍ୟାଦି ।

କିନ୍ତୁ -ଇ କ୍ରିୟାବାଚକ ବିଶେଷଣ ଓ 'ହୋ' ଧାତୁ ଏବଂ -ଆ କ୍ରିୟାବାଚକ ବିଶେଷଣ ଓ 'ହୋ' ଧାତୁ ଉଭୟର ବ୍ୟବହାରରେ ଅର୍ଥଗତ ପାର୍ଥକ୍ୟ ରହିଛି । ଯଥା—

କାମ କରିହୁଏ । କାମ କରାହୁଏ ।

ପ୍ରଥମୋକ୍ତ ବ୍ୟବହାରରୁ କର୍ମବାଚ୍ୟ ସୂଚିତ ହେବା ସଙ୍ଗେ ସଙ୍ଗେ କର୍ମର ସହଜ-ସାଧ୍ୟତା ମଧ୍ୟ ପ୍ରକାଶ ପାଏ । ମାତ୍ର ଦ୍ୱିତୀୟୋକ୍ତ ବ୍ୟବହାରରୁ କେବଳ କର୍ମବାଚ୍ୟ ସୂଚିତ ହୁଏ ।

-ଇ କ୍ରିୟାବାଚକ ବିଶେଷଣ ଓ 'ହୋ' ଧାତୁ କର୍ତ୍ତୃବାଚ୍ୟରେ ଆତ୍ମକର୍ମକ ଅର୍ଥାତ୍ 'ଆପଣାକୁ ଆପେ' ଅର୍ଥରେ ବ୍ୟବହୃତ ହୁଏ । ମଧ୍ୟଯୁଗୀୟ ସାହିତ୍ୟରେ ଏହାର ବହୁଳ ବ୍ୟବହାର ଦେଖାଯାଏ ।—

ବିଜ ମୃଣାଳଖଣ୍ଡକୁ ଏ ଦ୍ୱିତୀୟା ଗୁନ୍ଦ ବୋଲି ହେଲି କହି ଯେ ।

(ବୈ. ବି. ୩୪-୪୦

(ଘ) -ଇ କ୍ରିୟାବାଚକ ବିଶେଷଣ ଓ 'ଯା' ଧାତୁ—

ତତ୍‌କ୍ଷଣାତ୍ ସବୁ ପାତେକ ଯାଇ ପୋଛି । ୧୨୮୨ । ୨

(ପୋଛି ଯାଇ—ପ୍ରୋଞ୍ଛିତ ଅର୍ଥାତ୍ ନିବାରିତ ହୁଏ)

-ଇ ପଦର ବହୁବିଧ ବ୍ୟବହାର

୧ । ଅସମାପିକା କ୍ରିୟା—

ଶ୍ରୀଭୂଜେ ଲେଖନେକ ଘେନି ବସିଲେ ଯୋଗଧ୍ୟାନେ । ୧୫ । ୨

୨ । ଭୂତକାଳର କର୍ତ୍ତୃବାଚ୍ୟ କ୍ରିୟାବାଚକ ବିଶେଷଣ—

ଥାଠ ସନ୍ୟ ନ ଥାଇଂ କିଛି ସେହ୍ୱାଙ୍କର ଭୂଲେ

ସେହ୍ୱକଛଟ କରି ନବଖଣ୍ଡ ମେଦନୀ ସାଧି କଲେ । ୯୮

('ଥାଇ'ର ଅନୁନାସିକ ରୂପ 'ଥାଇଂ')

୩ । ଭୂତକାଳର କର୍ମବାଚ୍ୟ କ୍ରିୟାବାଚକ ବିଶେଷଣ—

ଶ୍ରିଗାଲର ବଳେ ସିଂହ ହୋଇଲା ଧ୍ୱଂସ । ୭୪୯ । ୨

୪ । ନମିତ୍ତାର୍ଥକ କ୍ରିୟା—

ଆନ୍ଧ୍ରନ୍ତ ଅପଗ୍ରାଢ ଦେଇ ନଦୀରେ ପକାଇ ଲେଡ । ୮୪ । ୨

୫ । ଏକକ କର୍ମବାଚ୍ୟ କ୍ରିୟା—

ଯେତେ ସୁମରିଲେ ଅଶେଷ ପାପ ଖଣ୍ଡି । ୪ । ୨

୬ । ସପନ୍ନତାସୂଚକ କ୍ରିୟାଗୁଡ଼ିକର ମୁଖ୍ୟ ଅଂଶ—

କରି-ଅଛି, କରି-ଥିଲା ଇତ୍ୟାଦି ।

୭ । କର୍ତ୍ତୃବାଚ୍ୟ ସାଧାରଣ ବର୍ତ୍ତମାନ କାଳର କ୍ରିୟା—

ଏହାର କୋପ କଲେ ବାବୁ କେହି ନ ବ୍ରତି । ୭୨୮ । ୧

(୩ୟ ପୁରୁଷ ଏକବଚନ)

ତୋତେ ଦେଖିଣ ମୁଂ ମନରେ ବଡ଼ ଭାସି । ୭୯୧ । ୨

(୧ମ ପୁରୁଷ ଏକବଚନ)

---

(ହେଲା କହି—ଆପଣାକୁ ଆପେ କହିଲା)

ବାହୁଡ଼ି ଆଉ ପାଇବ, ବୋଧି ହୋଇବ କି । (ବୈ. ବି. ୨୬-୧୧)

(ବୋଧି ହୋଇବ—ଅପଣାକୁ ଅପେ ବୋଧିବ)

ଟେକିହୁଏ ରୂଚ ମେରୁ ବିବାଦେ । (ବି. ଚ. ମ. ୫୬-୨୧)

(ଟେକିହୁଏ—ଆପଣାକୁ ଆପେ ଟେକେ)

ଭ୍ରମର ଗୁଆଁର ଆଗେ ଗୁଣବନ୍ତ ଅନୁସରେ

ଗୁଣ ଦେଖାଇ ଯେମନ୍ତ ହୁଏ ଦହି ସେ । (ର. ଭ. ୩୧-୧୬)

(ହୁଏ ଦହି—ଆପଣାକୁ ଅପେ ଦହେ)

ମୂର୍ଦ୍ଧଂ ବୋଇଲ ନାଟବ ପଞ୍ଚାଶ ଜଣ ବସି । ୮୭୩ । ୧
(ଅନ୍ୟ ପୁରୁଷ ବହୁବଚନ)

୮ । ଔଚିତ୍ୟାର୍ଥକ କ୍ରିୟା—

ଯେତେ ବର୍ଷେ, ତୁଇଂ ସେତେ ବର୍ଷେ, ଶ୍ରାଦ୍ଧାନ କର
ସେଦିନ ଉପବାସେ ବସିଣ ଦନ ଦ୍ୱର । ୭୩୭
(କର—କରିବା ଉଚିତ, ଦ୍ୱର—ଦ୍ୱରିବା ଉଚିତ)
କଷ୍ଟିତ ଦୋଷେଣ ବଡ଼ପଣ ନ ନାଣି । ୭୫୦ । ୧
(ନ ନାଣି—ନାଣିବା ଉଚିତ ନୁହେଁ)
ଦୋଷି କନ୍ୟା ହୋଇଲେ ତାହାକୁ ଦଣ୍ଡ ହୋଇ ଯୁଗତ । ୬୭୮ । ୨
(ହୋଇ—ହେବା ଉଚିତ)

୯ । ସମ୍ଭାବନାତ୍ମକ କ୍ରିୟା—

ଗଙ୍ଗାର ଶାପ୍ୟ ସେ କେହୁ ଆନ କର । ୭୬୮ । ୨
(କର—କରପାରେ)
କେମନ୍ତେ ପୁତ୍ରେ ମୋର ମାତାର ଶାପ୍ୟ ମେଣ୍ଟି । ୪୮୧ । ୨
(ମେଣ୍ଟି—ମେଣ୍ଟିପାରିବେ)

୧୦ । 'ଲ୍' ବିହୀନ ଅତୀତକାଳ କ୍ରିୟା—

ବେଦବର ସନ୍ନିଧେ ଯାଇଣ କନ୍ୟା ମିଳି । ୧୪୦ । ୨
(ମିଳି)—ମିଳିଲା)
ବାମନ ନାରାୟଣେ ପାଦେ ମୋତେ ନେଇ ଡାଳି । ୨୩୨ । ୨
(ଡାଳି—ଡାଳିଲେ)
ବନ୍ଦାପନା ଉଛବ ସମସ୍ତ ସେ ସାରି । ୩୩୮ । ୧
(ସାରି—ସାରିଲେ)
ଗଙ୍ଗାର ଗର୍ଭେଂ ପୁତ୍ରେକ ଅବତରି । ୩୪୦ । ୨
(ଅବତରି—ଅବତରିଲା)
ନବକୋଟି କାନ୍ତାନ ଯାହାର ଶରୀରୁ ଉପୁଜି । ୫୬୩ । ୨
(ଉପୁଜି—ଉପୁଜିଲେ)
ବଇବସ୍ୱତ ମନୁ ଅଗସ୍ତିଙ୍କି ପଚ୍ଛାରି
କନ୍ୟା କହୁ ଧୃତରାଷ୍ଟ୍ର ନାମେଂ ମରି । ୧୧୫୩
(ପଚ୍ଛାରି—ପଚ୍ଛାରିଲେ, ମରି—ମଲେ)

'ଲ୍' ସ୍ଥାନ ଅତୀତକାଳ କ୍ରିୟାରୂପେ ଏହାର ପ୍ରଚୁର ବ୍ୟବହାର ରହିଛି । *

# ଷଡ୍‌ବିଂଶ ଅଧ୍ୟାୟ

## କ୍ରିୟା ବିଶେଷଣ

କ୍ରିୟା ବିଶେଷଣ ନିମ୍ନଲିଖିତ ଆକୃତିମାନଙ୍କରେ ଅଭିବ୍ୟକ୍ତ ହୋଇଅଛି ।

୧ । ବିଭକ୍ତିସ୍ଥାନ ବିଶେଷ୍ୟ—

ତଗର ବାରତା କହିଲେ ବେଗ ଯାଇଂ । ୭୨୩।୧
ସହୋଦ୍ରେ କଳଙ୍କ ତୁ ନ ଲଗାଅ ଅକାରଣ । ୭୪୭।୨

୨ । ବିଭକ୍ତିସ୍ଥାନ ବିଶେଷଣ—

ଏହିକ୍ଷଣି ମାଗ ଦେବଇଂ ଦ୍ରୁଗତ । ୭୦୧।୨
ଭିତରେ ପଶି ବୃକ୍ଷଭିକୁ ଝୁହିଂଲେ ସଢ଼ଳ । ୧୩୧୧।୨

୩ । ଅବ୍ୟୟ ପଦ—

ଶ୍ରୀମ୍ଭଙ୍କ ଗ୍ରାମୁରେ ଯାଇଂ ପ୍ରବେଶ ତଡ଼ିତ । ୬୩୪।୧
ଅମ୍ବିକାପୁରେ ପ୍ରବେଶ ହୋଇଲେକ ଝାଟ । ୮୩୦।୨

୪ । ତୃଣାସ୍ଥାନ୍ ବିଶେଷ୍ୟ—

---

* ଗଣ୍ଡସ୍ଥଳୁ ସ୍ୱେଦ ଗଳ (ଗଳିଲା)
ନୟନୁ ନୀର ଗଳ (ଗଳିଲା) (ରୁ. ସ୍ୱ. ପୃ. ୧୯)
ବିଶୁଦ୍ଧ ତାର ଲଗ୍ନରୁ ଜ୍ୟୋତିଷେ ବିଗ୍ନର ସେ ।
(ବୈ. ବି. ୧୪-୧, ବିଗ୍ନର—ବିଗ୍ନରଲେ)
ବର୍ଷାଭୂଃମଜନାଦେ ଦଶଦଣ ପୂର ସେ ।
(ବୈ. ବି ୧୪-୩୦, ପୁର—ପୁରିଲା)
ଶୁଣି ଆନନ୍ଦେ ବାହୁଡ଼ ଦେବତା
ସହୁଁ ଆଜ୍ଞା ଦେଲେ ସୃଷ୍ଟିକରତା । (ମ. ମ. ୧-୫୪)
(ବାହୁଡ଼—ବାହୁଡ଼ିଲେ)

ଏହି 'ଲ'ସ୍ଥାନ ଅତୀତକାଳ କ୍ରିୟା ପାଲି -ଇ କ୍ରିୟା ସହିତ ସଂଯୁକ୍ତ ବୋଲି ମନେହୁଏ । ଯଥା—

ଅଥ ଏକ ଦିବସଂ ରାଜା ଉଦ୍ୟାନଂ ଗନ୍ତ୍ୱା । ଅମଚ୍ଚପରିବୁତୋ ତତ୍ଥ ବିଚରନ୍ତୋ ଏକଂ ଗଜକୁମ୍ଭଂ ଆଲପିସ୍ତଂ ପସ୍‌ସି । (ପସ୍‌ସି)—ଦେଖିଲେ)

ରଜା ତାଂ ଦିସ୍ୱା ବିମ୍ହିତ୍ୱ କୋ ନାମ ପୁଚ୍ଛି । (ପୁଚ୍ଛି—ପୁଚ୍ଛିଲେ)
(ତେଲକୁମ୍ଭଜାତକ)

ଅମ୍ବିକା ପାଟଦେବୀଙ୍କି କାଢ଼ିନେଲେ ବେଗେ । ୧୦୦୪।୨
ହେବେନେଂ ବଧ କଲ୍ଲ ଷାଠି ସହସ୍ର ବରଷେ । ୮।୧

୫ । ତୃତୀୟାନ୍ତ ବିଶେଷଣ—
ଆରତେ ମହାତ୍ମା ପିଙ୍ଗଳକ କଲେ କେଳି । ୨୯୮।୧
ଗାନ୍ଧାରସେନ ନୃପତି ବସିଲ୍ଲ ବରଷେ । ୧୩୩୪।୨
କୋଟିସେନ ରାଜ୍ୟରେ ରହିଲେ ନିଷ୍ଚିନ୍ତେ । ୧୩୭୮।୧
ପ୍ରଜାମ୍ବିତେ ଖଟଇ ଶ୍ରୀ କପିଳେଶ୍ୱର ମାହାରାଜା । ୩୪।୨

୬ । ବିଶେଷ୍ୟ ଓ 'କରି' 'କରିଣ' ଅସମାପିକା—
ଯତନ କରି ନେଇ ଗୁଆଣି ଖମ୍ବରେ ବାନ୍ଧିଲ୍ଲ । ୧୨୯୮।୨
ସମ୍ଭର କରିଣ ଘାଜୁଥିବ ଥାଠ । ୨୬୯।୨
ନିଷ୍ଟନ୍ତ୍ରେଂ କରି ଯେବେ ଖ୍ରୀଷ୍ଟଙ୍କ ବରିଲ୍ଲ । ୬୭୦।୧

୭ । ଧ୍ୱନ୍ୟାତ୍ମକ ଶବ୍ଦ ଓ 'କରି' ଅସମାପିକା—
ଭଡ଼୍ ଭଡ଼୍ କରି ନାବ ବୁଡ଼ାଇଣ ଦେଲ୍ଲ । ୯୨୪।୨

୮ । ବିଶେଷଣ ଓ 'କରି' 'କରିଣ' ଅସମାପିକା—
ମାଗୋ ଚମତ୍କାର ହୋଇଲ୍ଲ ଥିର କରି କହି । ୮୦୦।୧
ଦୃଢ଼ କରିଣ ଯେ ଭିଡ଼ିଲେ ମାହାତ୍ମା । ୯୮୩।୧
ଅନ୍ତ୍ରେଖର ବେଳେଣ ଅପାର କରି ଯାଚ । ୨୯୦।୨

୯ । ବିଶେଷଣ, ବିଶେଷ୍ୟ ଓ 'ହୋଇ' 'ହୋଇଣ' ଅସମାପିକା—
ନିସ୍ତଳ ହୋଇଣି ନ ଥାଇ ତାହାର ଯେ ମତି । ୨୮୦।୨
କୁଶଳ ହୋଇ ତୋର ଅଛନ୍ତି ନା ଯୋଦରେ । ୧୨୧୮।୧

୧୦ । ସର୍ବନାମଜ କ୍ରିୟାବିଶେଷଣ—

(କ) ପ୍ରକାରବାଚକ—

ଏମନ୍ତେ (ହେମନ୍ତେ) — ତେସନେ
କେମନ୍ତ — ଯେସନେ
ଏସନେ (ହେସନେ) — ଯେହ୍ନେ
ଏସନେକେ (ହେସନେକେ) — ତେହ୍ନେ

(ଖ) ସ୍ଥାନବାଚକ—

ଯହିଂ — କାହିଂ
ତହିଂ — କାହୁଂ
ଯହୁଂ ତହୁଂ — ତେଣେ

(ଗ) କାଳବାଚକ—

ଏବେ, ଏଥାନ୍ତ୍ର, ଯେବେ

(ଘ) କାରଣବାଚକ—

ଏଣୁ, ତେଣୁ, କାହିଂକ, କମ୍ପା, କମ୍ପାଇଂ

## 'କରି'ର ବିଭିନ୍ନ ପ୍ରକାର ବ୍ୟବହାର

୧। ଅସମାପିକା କ୍ରିୟା—
ତ୍ରିବେଣୀ ସ୍ନାହାନ କରି ମାଧବ ଦରଶନେ । ୧୪।୨

୨। ଅସମାପିକାର ପରବର୍ତ୍ତୀ ଅସମାପିକା—
ସପ୍ତନିଧି ଘେନ କରି ବିଜୟେ ସଞ୍ଚରି । ୧୨୦।୨

୩। କ୍ରିୟାବିଶେଷଣର ଦ୍ୱିତୀୟ ଅଂଶ—
ବନ୍ଧନ କରି ଆଣିଲେ ସଖିଙ୍କୁ କନ୍ୟାଗୋଟି । ୫୦୭।୨
ତେଣୁ କରି ମୁହିଂ ହୋଇଲି ଅମୋକ୍ଷ ଗତି । ୨୩୪।୧

୪। 'ବୋଲି' ପାରସର୍ଗିକ ପଦ ପରେ—
ମୂର୍ଚ୍ଛିତି ବୋଲି କରି ଦୋହିତାସେ ତାହାର । ୮୭।୨

୫। ସାକଲ୍ୟ ଅର୍ଥରେ 'ଆଦି' ଶବ୍ଦ ପରେ—
କୃଶ ଦଣ୍ଡ ଆଦି କରି କଷା ଯେ କର୍ପଁଟି । ୨୮।୧ *

---

* ଚତୁର୍ଥୀ ଅର୍ଥକ ପାରସର୍ଗିକ ପଦ ପରେ 'କରି'—
ଯେ କନ୍ୟା ବିଭା ଅର୍ଥେ କରି, ବିପ୍ରେ ମିଳିଲେ ପାଞ୍ଚ ସ୍ଥିର । (ସ୍ୱର୍ଗ. ୧୧-୧୦)
ହେତୁ ଅର୍ଥକ ୫ମୀ ବିଭକ୍ତି ପରେ 'କରି'—
ଶୁଭାଶୁଭ କର୍ମବଳୁଁ କରି ଯଥୋଚିତ ଯୋନି ପାଇ । (ରୁ. ସୁ. ପୃ. ୨୨)
ହେତୁଅର୍ଥକ ୩ୟା ବିଭକ୍ତି ପରେ 'କରି'—
ସମସ୍ତ ଗୁଣେ କରି ମହେନ୍ଦ୍ରପ୍ରାୟେ ଦିଶଇ ଶୋଭା । (ରୁ. ସୁ. ପୃ. ୪୩)

ନିମିତ୍ତାର୍ଥକ ୪ର୍ଥୀ ବିଭକ୍ତି ପରେ 'କରି'—
ମଇଙ୍କୁ ସପକ୍ଷ ହୋଇବାକୁ କରି ଆକାଶେ ନିର୍ମଳ ହୋଇ ଚନ୍ଦ୍ରମା ଉଇଁଲା ।
(ରୁ. ସୁ. ପୃ. ୭)

ସପ୍ତମ୍ୟନ୍ତ କ୍ରିୟାବାଚକ ବିଶେଷଣ ପରେ 'କରି'—
ପରମାତ୍ମା ଉଲ୍ଲସନ୍ତେ କରି ଜ୍ଞାନାନନ୍ଦପର ହୋଇନାହିଁ ଯାବନ୍ତ ।
(ରୁ. ସୁ. ପୃ. ୫୧)

୭ମୀ ବିଭକ୍ତି ପରେ 'କରି'—
ଜ୍ୟୋତିଷ ଭିତ୍ତ୍ୟେ ଶାସ୍ତ୍ରେ କରି ନିପୁଣ ଅଟଇ । (ରୁ. ସୁ. ପୃ. ୮୭)

# ସପ୍ତବିଂଶ ଅଧ୍ୟାୟ

## କାଳର ବିଶେଷ ବ୍ୟବହାର

୧ । ସାଧାରଣ ଅତୀତ ଅର୍ଥରେ ସାଧାରଣ ବର୍ତ୍ତମାନ—
ବାପ୍ତନ ଉପବାସ ରୁଷିଙ୍କର ଥିଲା
ପ୍ରେମ ଲଗାଇଣ ସମସ୍ତ ଛଡାଇଲା । ୨୫୩
ଶ୍ରୀ ଏକାଦଶୀ ବ୍ରତ ସେବା ଅଛି ରୁଷିଙ୍କର
ତାହାଂକ କଷ୍ଟାଳ କରୁଅଛଇ ଅପାର । ୨୫୪
ମକର ମାସ ଶୁକ୍ଳ ପକ୍ଷ ଏକାଦଶୀ
ଅନେକ ଭଗତେ ଖଟନ୍ତି ସଦ୍ଧରୁଷି । ୨୫୫
୨ । ଅସପନ୍ନ ଅତୀତ ଅର୍ଥରେ ଅସପନ୍ନ ବର୍ତ୍ତମାନ—
ତୋତେ ନାଶ କରନ୍ତେ ଆମ୍ଭେ ହୋଇଲୁଂ ବଡ଼ ସ୍ରଗି । ୫୯୧
ସ୍ରଗେ ତାକୁ ଆମ୍ଭେ ବୋଇଲୁଂ ଭ୍ରଛନା
ନ ଯିବୁ ଯାଉଅଛି ସେ ଅନାଦ ଅପର୍ଣ୍ଣା । ୫୯୨
ଆମ୍ଭେ ଯାଉଂ ଗଙ୍ଗାକୁ ଜୋଲ କଲୁଂ
୩ । ସପନ୍ନ ଅତୀତ ଅର୍ଥରେ ସପନ୍ନ ବର୍ତ୍ତମାନ—
ପ୍ରସୁରାମ ବନେ କରଛନ୍ତି ତ୍ରିପୁର ପର୍ବତେ
ଶାଳଗ୍ରାମ ରଘୁରାମ ପ୍ରବେଶ ବେଦ ଭ୍ରାଥେ । ୭୧୪
୪ । ସାଧାରଣ ଭବିଷ୍ୟତ ଅର୍ଥରେ ସାଧାରଣ ଅନୁଜ୍ଞା—
ଏକଥା ବିସ୍ମର କେଉନେ ନ କର ଗୋ ଶାଶୁ
ଏତେ ନର୍କପଥ ଦେଖୁ ଦେଖୁ କେହନେ କେ ପଶ୍ତୁ । ୮୫୦
(ପଶୁ—ପଶିବ)
ଶବଦକୁ ଭେଦବ ଯେବଣ ଶସ୍ତ୍ର ପ୍ରହାର କରୁ । ୧୧୩୪।୨
୫। ସାଧାରଣ ଅନୁଜ୍ଞା ଅର୍ଥରେ ସାଧାରଣ ବର୍ତ୍ତମାନ—
ରୁଦ୍ର କରୁ କ ନା ଶ୍ରିଯୁଂ ଯେକାଦଶି ବ୍ରତ । ୨୭୩।୧
ଆରମ୍ଭେ ବୋଲନ୍ତି ଆହୋ କରୁ କନା ପାଶ । ୮ ।୨
(କରୁ କନା—କର) *

---

* ଏବେ ରୁ ପୁର୍ବବତ ହୋଇ ହସ, କନା…
ମୋତେ ଆସ୍ମା ଉପଦେଶ କହ୍ନ କନା ।
ମୋହର ପ୍ରକୃତିବନ୍ଧ ଫେଡ଼ୁ କନା ।
ମୋହର ଅକ୍ଷିପଟଳ ଛଡ଼ାଉ କନା । ରୁ. ସୁ. ପୃ. ୧୨)

୭ । ସାଧାରଣ ଭବିଷ୍ୟତ ଅର୍ଥରେ ସାଧାରଣ ବର୍ତ୍ତମାନ—

ଗାର୍ଗି ବୋଇଲେ ଫୁରଇ ମୋହୋର ବ୍ରତେ । ୨୪୬।୨
(ପୁରଇ—ପୁରିବ)
ନ ପୂଣ ପୁଣ ବୋଇଲେ ସ୍ନେହାଙ୍କୁ ମାରଇ । ୩୨୭।୨
(ମାରଇ—ମାରିବ)
ରୁ ଈଶ୍ବର ସମାନେ ଋଷି ନପୁଣ କୋପ କରୁ ମୋତେ । ୧୩୭୫।୨
(କରୁ—କରିବୁ)
ଗ୍ରଜା ତ୍ରେ।ଯ୍ବେଣ ପାଶୋରଇ ନକ ତୋତେ । ୧୩୭୫।୧
(ପାଶୋରଇ—ପାଶୋରିବ)

୭ । ଔଚିତ୍ୟ ଅର୍ଥରେ ଭବିଷ୍ୟତ କାଳ—

ଶୁଦ୍ଧ ସ୍ନାହ୍ନାନ କରିବ ପଞ୍ଚମ ଦିବସେ
ସେଦିନ ପୁରୁଷ ଯିବ ତାହାର ପାଶେ । ୭୪୦
(କରିବ—କରିବା ଉଚିତ, ଯିବ—ଯିବା ଉଚିତ) †

ଦଣ୍ଡ ପଣ୍ଟଣୀ ସାଜିବ ଦୁଜନ ନିବାରିବ
ସୁଜନ ପାଳି ତପୋଧନ ଉଧାରିବ । ୬୨୦
(ସାଜିବ—ସାଜିବା ଉଚିତ, ନିବାରିବ—ନିବାରିବା ଉଚିତ,
ଉଧାରିବ—ଉଦ୍ଧାରିବା ଉଚିତ)

ବର୍ତ୍ତମାନ ଯେପରି -ବା, -ଇବା ପଦ ଏବଂ 'ଉଚିତ' 'ବିଧେୟ' 'ଆବଶ୍ୟକ' ପ୍ରଭୃତି ପଦ, ଉଭୟର ସଂଯୋଗରେ କ୍ରିୟାର ଔଚିତ୍ୟ ଅର୍ଥ ପ୍ରକାଶ ପାଉଅଛି (ଯଥା—କରିବା ଉଚିତ, ଦେବା ବିଧେୟ), ଆଲୋଚ୍ୟ ଗ୍ରନ୍ଥରେ ସେଭଳି ପ୍ରୟୋଗ ନାହିଁ ।

---

ଗୋ ସଖି ରୁ ଯାଉ କନା
କନାଇ ପାଶକୁ ଯାଉ କନା
ରତନ ବସନ ହାର କଙ୍କଣ
ଯାହା ମାଗୁ ତାହା ନଉ କନା । (ର° ମ. ୧୦-୧)

† ପ୍ରା. ଭ୍. ଆ. -ତବ୍ୟ ପ୍ରତ୍ୟୟାନ୍ତ ପଦରେ ଭବିଷ୍ୟତଗର୍ଭକ ଔଚିତ୍ୟ ଅର୍ଥ ପ୍ରକାଶ ପାଉଥିଲା । ଯଥା—କୃତ୍ୟା ତନ୍ଦ ଗନ୍ତବ୍ୟମ୍ । ଓଡ଼ିଆ ଭବିଷ୍ୟତ କାଳ କ୍ରିୟା-ତବ୍ୟ ପ୍ରତ୍ୟୟାନ୍ତ ପଦରୁ ଉତ୍ପନ୍ନ ହୋଇଥିବା ହେତୁ ସେଥିରୁ ଔଚିତ୍ୟ ଅର୍ଥ ପ୍ରକାଶ ପାଇବା ସ୍ୱାଭାବିକ ।

# ଅଷ୍ଟବିଂଶ ଅଧ୍ୟାୟ

## ପଦାଶ୍ରୟୀ ନିର୍ଦ୍ଦେଶକ

### (୧) -ଟି

ଏହା କ୍ରିୟା ତଥା ଅନ୍ୟାନ୍ୟ ପଦରୁ ଲାଗିଅଛି ।

(କ) କ୍ରିୟାରୁ—

ରମ୍ଭେ ଯେବେ ଭିଆଣ କଲଟି ଏମନ୍ତ । ୯୫୧।୧
ଈଶ୍ବର କଷଣ୍ଡ ବୃଷଭ ହୋଇଲଟି ପାଠ । ୧୩୦୬।୧
ଏସନେକେ ଅଛୁଟି ଶାସ୍ତ୍ର ଧର୍ମବାକ୍ୟ । ୭୪୩।୨
ସ୍ବବେଣ ଶୃଙ୍ଗାର ମାଗେ ଦେବୁଟି ତାହାଙ୍କୁ । ୧୦୩୧।୨

(ଖ) ଅନ୍ୟାନ୍ୟ ପଦରୁ—

ବହନରେ ଜାଲ କଣ କରଇ ଲସ୍ତୁଟି । ୨୮।୨
ତାହାକଇ ପ୍ରଭାନଟି ହୋଇଲା ସପାଠ । ୮୫।୧
ସ୍ବଗେଣ ଗଙ୍ଗା ବୋଇଲେ ତୋହୋର ପୁଅ ଏଟି । ୩୭୭।୨

### (୨) -ଗୋଟି

ଏହା କେବଳ ଅଣକ୍ରିୟା ପଦରୁ ଲାଗିଅଛି ।

ବେନଗୋଟ ଦୋହିତା ବେନ ଭ୍ରାଅକୁ ଆମ୍ଭର ଦେଲ । ୪୯୬।୨
ଯେତ୍ତାନ୍ତ ପୁଅଗୋଟିକ ମାଣବ । ୩୯୯।୧ *

### (୩) -ଖଣ୍ଡି

ସାର ଭୂମି ତୀର୍ଥଖଣ୍ଡି ଈଶାନ୍ୟ ପୂର୍ବଦଗ ଆଡ଼େ । ୩୫।୨
ପାଲଟା ବସ୍ତ୍ରଖଣ୍ଡି ପଖାଳିବ ନେଇ । ୧୩୬୭।୧ **

## ଅନ୍ତ୍ୟାଗମ

### (୧) ସ୍ୱାର୍ଥିକ ଅନ୍ତ୍ୟାଗମ

-କ

(କ) ସାଧାରଣ ଅତୀତ କାଳ ତୃତୀୟ ପୁରୁଷ କ୍ରିୟାରେ ଏହାର ବହୁଳ ବ୍ୟବହାର ଦେଖାଯାଏ ।

ଆକାଶରେ ସାଧୁ ସାଧୁ ବୋଲେ କଲେକ ତ୍ରିଦଶେ । ୮।୨

---

* '-ଟି', '-ଗୋଟି'ର ସମ୍ଭାବିତ ଉତ୍ପତ୍ତି ପ୍ରସଙ୍ଗ E. O. L. S. ପୃଷ୍ଠା ୨୦୫ ଏବଂ O. D. B. L. ପୃଷ୍ଠା ୭୭୯ରେ ଦ୍ରଷ୍ଟବ୍ୟ ।

** ତତ୍ସମ 'ଖଣ୍ଡ'+ଓ. କ୍ଷୁଦ୍ରାର୍ଥେ ବା ଆଦରାର୍ଥେ -ଇ=ଖଣ୍ଡି ।

ତୋଷେଣ ବର ତୋତେ ଦେଲେକ ଦେବରାଜା । ୯।୧
ଭୂଲକ୍ରେଣ ଯନ୍ତ୍ରଂ ହୋଇଲ୍କ ଅସମ । ୫୭।୨
ସମୋଦ୍ର ଛଡାଇ ସେ ଦେଲ୍କ କଅଭ । ୧୦୬।୧

(ଖ) ଭବିଷ୍ୟତକାଳିକ କ୍ରିୟାବାଚକ ବିଶେଷଣରେ—
ଅନଙ୍ଗ ଶରଘାତ ସହ୍ନିବାକ କେହ୍ନ । ୨୯୭।୨
ଫିଟିବାକ ପାତେକ ସ୍ୱେ ସର୍ବ ଦୂଷ୍ଟୁକୁଟମାନେ । ୪୫।୨
ସ୍ୱେ ମୋହୋର ଦୋଷ ଖଣ୍ଡଣ କରିବାକ ଶୀକରଙ୍ଗ । ୧୧୦୮।୧
ପଦ୍ମଲଭ ରାଜା ମୋତେ ଦେବାକ ହୋହୁତା ୭୪୯।୧

(ଗ) ସର୍ବନାମଜ ବିଶେଷଣରେ—
ଏସନକ        ସ୍ୱେହ୍ରେଣ୍ଣିକ
କେସନକ        ଏତେକ
ଯେସନକ        ଯେତେକ
              ଏତେକ

(ଘ) ସର୍ବନାମକ କ୍ରିୟାବିଶେଷଣରେ—
ଏସନେକେ, ଯେସନେକେ, କେସନେକେ †

-ଣ

(କ) ଅସମ୍ପନ୍ନତାସୂଚକ କ୍ରିୟାବାଚକ ବିଶେଷଣରେ—
ଆମ୍ଭର ଥାଉଂଣି ମାଳା ଦେଇ ବର । ୭୫୮।୧

(ଖ) ସମ୍ପନ୍ନତାସୂଚକ କ୍ରିୟାବାଚକ ବିଶେଷଣରେ—
ଲେକ ଯେ ପୂରଣି ଅଛନ୍ତି ଦୁଇ କୂଳେ । ୯୦୮।୧

(ଗ) ହେତୁବାଚକ ସର୍ବନାମଜ କ୍ରିୟାବିଶେଷଣରେ—
ତହୁଂଣି ମାଳା ଯେନ ଗଳକ ସୂର୍ଯ୍ୟ ବାଳ । ୧୪୦।୧ ※

(ଘ) ଅନ୍ୟାନ୍ୟ ପଦରେ—
ଆହୁଂଣ, ସ୍ୱଂପ୍ନେଣ, ଯେତେଣ, ତେତେଣ ଇତ୍ୟାଦି ।

---

† ସଂସ୍କୃତର ସ୍ୱାର୍ଥିକ -କ (ଯଥା— ପୁତ୍ରଃ-ପୁତ୍ରକଃ, ବାଳଃ-ବାଳକଃ, ଶନୈଃ-ଶନକୈଃ, ଯୁଷ୍ମାସୁ-ଯୁଷ୍ମାକେଷୁ, ଗଳିତଂ-ଗଳିତକଂ ଇତ୍ୟାଦି) ଓଡ଼ିଆରେ ପ୍ରବର୍ତ୍ତିତ ହୋଇଛି ।

※ ଏଥୁଂଣି ଶ୍ରୀରାମ ପାଦୁକ କରେ ଧରି । (ଦାଃ ରାଃ-ହରଧନୁଭଙ୍ଗ)

ଅସମାପିକା କ୍ରିୟା '-ଇଣ'ର ସାଦୃଶ୍ୟରେ '-ଣ' ଅସମ୍ପନ୍ନତାସୂଚକ ଓ ସଂପନ୍ନତାସୂଚକ କ୍ରିୟାବାଚକ ବିଶେଷଣରେ ସଂକ୍ରମିତ । ଅନ୍ୟ ସ୍ଥଳରେ ଏହା ସଂସ୍କୃତ 'ପୁନଃ' ଶବ୍ଦରୁ ଉତ୍ପନ୍ନ । ଯଥା—ପୁନଃ > ପ୍ରାଃ ଉଣ > ଓଃ ଣ ।

(୨) ନଷ୍ଟସ୍ମୃତିବାଚକ ଅନ୍ତ୍ୟାଗମ

-ନ

ଏହା କ୍ରିୟାର ନଷ୍ଟସ୍ମୃ ଅର୍ଥ ସୂଚିତ କରେ—
ବାଇଣି ଗଜା ମଲେନ ବଳଣ ସ୍ଥାନେ । ୧୨।୮।୨
(ମଲେନ—ନଷ୍ଟି ଭାବରେ ମଲେ)
ପ୍ରତକ୍ଷେ ଦେଖିଲୁନ ଖଞ୍ଜିଳ ସମୁଦ୍ରମୂର । ୫୩୪।୧
(ଦେଖିଲୁନ—ନଷ୍ଟି ଭାବରେ ଦେଖିଲୁ) ††

-ହେଂ

ଏହା ପୂର୍ବ ପଦର ନଷ୍ଟସ୍ମୃ ଅର୍ଥ ସୂଚିତ କରେ ।
ଅନୁକ୍ରମେ ଭ୍ରମନ୍ତ ଷଣ୍ଢେହେଂ ନ ରହନ୍ତ କହୁଂଣିପି ପାଶେ । ୧୨୮।୬।୨
ଏମନ୍ତେହେଂ ସନ୍ତାନ ନ ପାଇଲେ ତେଜ ଦେହା । ୮୬୦।୧ †

†† ଶ୍ୟାମିନ ବୋଇଲେ ସେ କନ୍ନନ ଯେବେ ଶୁଧ । (ଡା. ସ୍ୱ:-ସ୍ୱରଧର୍ନୁଭଙ୍ଗ)
ଗ୍ୟାନଭ୍ରଷ୍ଟ ହୋଇଲନ ଭେବଲ ତା ମଢ । (କ: ର:)
ଅପାରକାନ୍ତୁ ରଘୁନାଥ ପଡ଼ିଲନ ସ୍ୱେ ପଥ । (ସ୍ୱ: ଵ: ୩ୟ ଗ୍ରନ୍ଥ)
ଅନ୍ୟାନ୍ୟ କାଳ ଓ ସ୍ଥାନରେ ମଧ୍ୟ '-ନ'ର ବ୍ୟବହାର ଅଛି—
ଦେଙ୍କ କେ ବନସ୍ତେ ଅଛଇ ଫାଲଗୁନ । (ପ୍ରା: ମ:-ଏକଲବ୍ୟଚରିତ)
ଅମ୍ଭଙ୍କୁ ଦେଖାନ ରୁ କାହାକୁ ଦେବା କରୁ । (ପ୍ରା: ମ:-ଏକଲବ୍ୟଚରିତ)
ସ୍ୱେହା ବଇଦକ ମତେ ଆମ୍ଭେ ଅଛୁନ କହ । (ଭୂ: ସୂ.)
ତ୍ରିପୁର ବୋଇଲେ ବସ୍ତ୍ର କହିଲୁ ଯାହା
ନ କହୁଁ ଆଗହୁଁ ଆମ୍ଭେ ଜାଣୁନ ତାହା । (ର. ମ: ୨୩-୨୨)
କେ ବୋଲଇ ସତ୍ୟାଗ୍ରମା ଗୁଡ଼ିତେଜ ଜୀବ । (ର. ମ. ୨୪-୬)
-ନ ସଂସ୍କୃତ ଅବ୍ୟୟ 'ନୁ'ର ରୂପାନ୍ତର ।

ବର୍ତ୍ତମାନ କେବଳ ଅନୁଜ୍ଞାରେ -ନ ଏବଂ ଅନ୍ୟତ୍ର -ଣି ବ୍ୟବହୃତ ହୁଏ । ଯଥା— ତୁ ପଢ଼ନ, ତୁ ଦେଖାନ, ସେ ଗଲଣି, ସେମାନେ ଆସିଲେଣି ଇତ୍ୟାଦ ।

† ସଂସ୍କୃତ ନଷ୍ଟସ୍ମୃତିବାଚକ 'ହ' ଅବ୍ୟୟ ଓଡ଼ିଆରେ 'ହଂ' (ହିଂ) ହୋଇଛି । 'ହଂ' ଏକାରାନ୍ତ ପଦର ପରେ ରହି ସ୍ୱରସମୀଭବନ ଫଳରେ 'ହେଂ' ହୋଇଛି । ଯଥା— ଷଣ୍ଢେହଂ > ଷଣ୍ଢେହେଂ, ଏମନ୍ତେହଂ > ଏମନ୍ତେହେଂ ।

# ଊନବିଂଶ ଅଧ୍ୟାୟ

## ଅବ୍ୟୟ

### ଏକାକ୍ଷର ଅବ୍ୟୟ

ଇ

ନିଶ୍ଚୟ ଅର୍ଥରେ—

ବଡ଼ କୋପାନଳ ଏ ବଡ଼ ଇ ଉକଣ୍ଠା । ୭୨୫ । ୧

ଏତେ ବୋଲି ରଜାଙ୍କୁ ଇ ଲଗିଲା ବଡ଼ ଭୟେ । ୫୨୫ । ୧

ହିଂ

ନିଶ୍ଚୟ ଅର୍ଥରେ—

ନାନା ମନ୍ତ୍ରଷୋଧି କଣ୍ଠ ହିଂ ନ କାଟିଲା ।୭୬୧ । ୨

ବରପୁଷ୍ପା ବୋଲି ସେ ବସ୍ତ୍ର ହିଂ ନୋହିଲା । ୬୬୬ । ୨

କି

ବିକଳ୍ପ ଅର୍ଥରେ—

ଋଷି ବୋଇଲେ ବଳବନ୍ତା ହୋଇ କି ସୁନ୍ଦର ହୋଇ । ୪୦୨ । ୧

ଶାଉ କି ମରୁ ତାହାର ମନ୍ଦ କର୍ମେ । ୪୧୯ । ୧

ପ୍ରଶ୍ନ ଅର୍ଥରେ—

ସ୍ନେହା ଭ୍ରାନ୍ତି କି ପାରଇ ସ୍ନେହକ୍ଷୀଣୀ । ୫୦୪ । ୨

ତାହାକୁ ଉପେକ୍ଷି କି ଆନକୁ ବଶ ହୋଇଲ । ୬୭୩ । ୨

ନା

ପ୍ରଶ୍ନ ଅର୍ଥରେ—

ଦେବତା ବ୍ରାହ୍ମଣେ ହୋଇଅଛୁ ନା ଭରଥ । ୧୨୨୦ । ୧

ଶୁଣଲେ ବୃତାନ୍ତ ନା ତୋହୋର ଜନପ୍ରଜା । ୧୨୨୨ । ୨

ନିଶ୍ଚୟ ଅର୍ଥରେ—

ଭୂଆ ହିଂ ସେ ସହିବ ନା ଶ୍ରଣଯା ଆର୍ଦ୍ଧୋଳି । ୨୩୭ । ୨

ଧର୍ମେଣ ବ୍ରତଇ ନା ସ୍ନେହ ସଂସାର । ୩୦୭ । ୨

ବଳ ଭ୍ରାଅ ପୁତ୍ର କେହି ନାହିଂ ନା ମୋହୋର । ୧୩୭୩ । ୨

---

ଇ < ସଂ. ହି । କମ୍ବା ସଂ. ଅପି > ପ୍ରା. ବି > ଓ. ଇ । ହିଂ ସଂ. 'ହି'ର ଅନୁନାସିକ ରୂପ ।

କି < ସଂ. କିମ୍

ନା < ସଂ. ନାମ (ଅବ୍ୟୟ)

ତ

ପୂର୍ବବର୍ତ୍ତୀ ପଦର ଗୁରୁତ୍ୱ ବଢ଼ାଇବା ଅର୍ଥରେ—

ସୁଝ ମାହ୍ନଳ ଯେ ଶାଲୁ ତ ନଇଲ । ୭୭୨ । ୨
ସାସ୍ପେନ୍ଦ୍ରନୁ ବୋଇଲେ ଏ ତ ବଡ଼ଇ ପ୍ରମାଦ । ୩୯୨ । ୨
ଛୁଡ଼ଯାଇ ତ ନ ପାରଇ ସତ୍ୟ ବ୍ରତେ । ୩୯୮ । ୧

ଯେ

ପଦାଲଂକାର ଅର୍ଥରେ—

ଗଙ୍ଗା ଜାତ ହୋଇଲେ ଯେ ଜର୍ଘାତର ଘରେ । ୧୭୪ । ୧
ରୋହିଣୀ ନକ୍ଷତ୍ର ବେଳ ଦେଢ଼ ଯେ ପହରେ । ୩୮୭ । ୨
ରୁଦ୍ରର ଷ୍ୱବେଳ ଯେ ଅଟଇ ଜାନ୍ନଖ୍ୟ । ୩୧୧ । ୧

ଏକାଧିକାକ୍ଷର ଅବ୍ୟୟ

ଅବା, ଆଉ, କନା, ନକ, ପୁଣ, ପୁଣି, ନପୁଣ, ସିନା ପ୍ରଭୃତି ଏକାଧିକାକ୍ଷର ଅବ୍ୟୟ ବ୍ୟବହୃତ ହୋଇଛି । ଏଗୁଡ଼ିକ ମଧ୍ୟରୁ 'କନା' 'ନକ' ଓ 'ନପୁଣ'ର ବ୍ୟବହାର-ଗତ ପ୍ରାଚୀନତା ରହିଛି ।

କନା

ତାଚ୍ଛଲ୍ୟ ଅର୍ଥରେ—

ବେଇଲ ଆସୁ କନା ଚୋହୋର ପ୍ରପୁରମ । ୭୧୩ । ୧

'ଅବଶ୍ୟ' ଅର୍ଥରେ—

ଅମ୍ମା ବୋଇଲ ମୁହଂ ଯାଉଅଛୁ କନା । ୭୧୪ । ୧

ଔଚିତ୍ୟ ଅର୍ଥରେ—

ରୁହ କରୁ କନା ପ୍ରିୟ ସ୍ୱେକାଦଶୀ ବ୍ରତ । ୨୭୩ । ୧

ନକ

ସମ୍ଭାବନା ଅର୍ଥରେ—

ସନ୍ୟଚନ୍ଦ୍ରାସ୍ୱେଣ ପାଶୋରଇ ନକ ଚୋତେ । ୧୩୭୪ । ୧

---

ତ < ସଂ. ତତ୍ । କିମ୍ବା ସଂ. ତାବତ୍ > ପ୍ରା. ତା > ଓ. ତ । ଯେ < ମା. ପ୍ରା. ଜେ < ସଂ. ଯଦ୍ ।

ରେ, ହେ, ହୋ, ରୋ ପ୍ରଭୃତି ସମ୍ବୋଧନବାଚକ ଏକାକ୍ଷର ଅବ୍ୟୟମାନ ମଧ୍ୟ ବ୍ୟବହୃତ ହୋଇଛି ।

କନା < ସଂ, କିନ୍ନାମ (କିମ୍ + ନାମ)

ନକ < ସଂ. ନ-କିମ୍ କିମ୍ବା ନୁ-କିମ୍

ନପୁଣ

ସମ୍ଭାବନା ଅର୍ଥରେ—

ନପୁଣ ପୁଅ ବୋଇଲେ ଏହାଙ୍କୁ ମାରଇ । ୩୭୬ । ୨

ରୁ ଈଶ୍ୱର ସମାନେ ରୁଷି ନପୁଣ କୋପ କରୁ ମୋତେ । ୧୩୬୪ । ୨

## ତ୍ରିଂଶ ଅଧ୍ୟାୟ

### କୃଦନ୍ତ

ନିମ୍ନଲିଖିତ ପ୍ରତ୍ୟୟଗୁଡ଼ିକ ଯୋଗରେ କୃଦନ୍ତ ପଦମାନ ଗଠିତ ହୋଇଅଛି ।

-ଅ

ଭାବବାଚ୍ୟରେ—

ବୋଲ୍ + ଅ = ବୋଲ, ବୁଡ଼୍ + ଅ = ବୁଡ଼ †

-ଅଣ

ଭାବବାଚ୍ୟରେ—

କହ୍ + ଅଣ = କହଣ, ଘଟ୍ + ଅଣ = ଘଟଣ

ମେଣ୍ଟ୍ + ଅଣ = ମେଣ୍ଟଣ, ଖଣ୍ଡ୍ + ଅଣ = ଖଣ୍ଡଣ

କର୍ତ୍ତୃବାଚ୍ୟରେ—

ଉଧାର୍ + ଅଣ = ଉଧାରଣ

ମଣ୍ଡ୍ + ଅଣ + ସ୍ତ୍ରୀପ୍ରତ୍ୟୟ -ଇ (< ଈ) = ମଣ୍ଡଣି (୧୦୨୫।୨)

ରକ୍ଷ୍ + ଅଣ + ସ୍ତ୍ରୀପ୍ରତ୍ୟୟ -ଇ (< ଈ) = ରକ୍ଷଣି (୫୭୨।୨)

-ଅଣା

ଭାବବାଚ୍ୟରେ—

ବାନ୍ଧ୍ + ଅଣା = ବାନ୍ଧଣା

---

ନପୁଣ < ସଂ. ନ-ପୁନଃ

ଅବା < ପ୍ରା. ଅହବା < ସଂ. ଅଥବା

ଆଉ < ପ୍ରା. ଆବର < ସଂ. ଅପର

ସିନା < ସଂ. ଚନ୍ନାମ (ଚତ୍ + ନାମ)

† -ଅ ଏହା ସଂସ୍କୃତ -ଅ ପ୍ରତ୍ୟୟର ସାଦୃଶ୍ୟରେ ପ୍ରଚଳିତ । ସଂସ୍କୃତରେ ଭାବବାଚ୍ୟରେ -ଅ ପ୍ରତ୍ୟୟ ହୁଏ । ଯଥା—ହସ୍ + ଅ = ହସ, ରବ୍ + ଅ = ରବ, ଜି + ଅ = ଜୟ ଇତ୍ୟାଦି ।

-ଅଣ ସଂସ୍କୃତ -ଅନ (ଯଥା—ଗମ୍ + ଅନ = ଗମନ) ପ୍ରାକୃତରେ -ଅଣ ହୋଇ ଓଡ଼ିଆରେ ପ୍ରଚଳିତ ।

-ଅଣା -ଅଣ + ଅନାଦରସୂଚକ -ଆ

-ଅଣି

ଭାବବାଚ୍ୟରେ—

ଜାଳ୍ + ଅଣି = ଜାଳଣି, କଲ୍ + ଅଣି = କଲଣି

-ଆ

କର୍ତ୍ତୃବାଚ୍ୟରେ—

ଧର୍ମ-ଜାଣ୍ + ଆ = ଧର୍ମଜାଣା, ଘର-ଭାଙ୍ଗ୍ + ଆ = ଘରଭଙ୍ଗା

ଭାବବାଚ୍ୟରେ—

ପୁଛ୍ + ଆ = ପୁଛା, ମୁଛ୍ + ଆ = ମୁଛା, ଭୁଜ୍ + ଆ = ଭୋଜା

-ଆଣ

ଭାବବାଚ୍ୟରେ—

ବନ୍ଧ୍ + ଆଣ = ବନ୍ଧାଣ

-ଆଲ

ବୋବ୍ + ଆଲ = ବୋବାଲ

-ଏଣି

ଭାବବାଚ୍ୟରେ—

ଗା-ଏଣି = ଗାଏଣି > ଗାସ୍ୱେଣି

---

-ଅଣି - ଅଣ + ଆଦରସୂଚକ -ଇ

-ଆ କର୍ତ୍ତୃବାଚ୍ୟରେ -ଆ ସଂସ୍କୃତ-ଅକ ପ୍ରତ୍ୟୟରୁ ଉତ୍ପନ୍ନ । ଯଥା—ଜାଣକ > ଜାଣଅ > ଜାଣା, ରଞ୍ଜକ > ରଞ୍ଜଅ > ରଞ୍ଜା । କ୍ରମେ ଏହି -ଅକ > -ଆ ଅନ୍ୟାନ୍ୟ ଧାତୁରୁ ମଧ୍ୟ ବ୍ୟବହୃତ ହେଲା । ଯଥା—ମୋଡ୍ + ଆ = ମୋଡ଼ା, ପିଟ୍ + ଆ = ପିଟା । ଭାବବାଚ୍ୟରେ -ଆ ସଂସ୍କୃତରୁ ଅବିକଳ ଗୃହୀତ । ଯଥା—ପୃଚ୍ଛ୍ + ଆ = ପୃଚ୍ଛା > ପୁଛା, ମୂର୍ଚ୍ଛ୍ + ଆ = ମୂର୍ଚ୍ଛା > ମୁଛା । ଏହାର ସାଦୃଶ୍ୟରେ ଭୁଜ୍ + ଆ = ଭୋଜା ।

-ଆଣ ଏହା '-ଅଣ'ର ରୂପାନ୍ତର ।

-ଆଲ ଏହା ଏକ ଦେଶଜ ପ୍ରତ୍ୟୟ । କିନ୍ତୁ କର୍ତ୍ତୃବାଚ୍ୟରେ ଏହା '-କାର'ରୁ ଉତ୍ପନ୍ନ ବୋଲି ମନେହୁଏ । ଯଥା—ଖେଳକାର > ଖେଳାଳି, ଖେଳାଲ ।

-ଏଣି ଏହା '-ଅଣି'ର ରୂପାନ୍ତର ।

କର୍ତ୍ତୃବାଚ୍ୟରେ -ଆ—

ଜୟ ରୂ ଚନା ଶର ବସ୍ତ୍ର କଚଡ଼ା
ଜୟ ସୋଦୋଡ଼ ଖଣ୍ଡୁାଗିଣବ ମୋଡ଼ା
ଜୟ ବୃକ ସକଖା ମାହୁନ୍ତ ପିଟା
ଜୟ ମାଲ ମାରୁଆ ମହଲା ଭେଟା । (ଭ: ମ: ୪-୧୭; ୪-୧୯)

# ଏକତ୍ରିଂଶ ଅଧ୍ୟାୟ

## ତଦ୍ଧିତ

ନିମ୍ନଲିଖିତ ପ୍ରତ୍ୟୟଗୁଡ଼ିକ ଯୋଗରେ ତଦ୍ଧିତ ପଦମାନ ଗଠିତ ହୋଇଅଛି ।

### -ଆ

କେତେକ ବିଶେଷଣ ଓ ଜାତିବାଚକ ବିଶେଷ୍ୟରେ ସ୍ୱାର୍ଥିକ-ଆ ଯୁକ୍ତ ହୋଇଅଛି । †

ସାର—ସାସ୍ର  
ଭେଦ—ଭେଦା  
ନାଥ—ନାଥ୍ୱା  
ଦୁଷ୍ଟ—ଦୁଷ୍ଟା  
ଶକତ—ଶକତା  
ବିକଟ—ବିକଟା  
ଉତ୍ତମ—ଉତ୍ତମା  
ଖେଳ—ଖେଳା  
ଆତ୍ମଜ—ଆତ୍ମଜା  
ସ୍ୱଷଯ—ସ୍ୱଷଯା  
ଶୁଚବନ୍ତ—ଶୁଚବନ୍ତା  
ବଳବନ୍ତ—ବଳବନ୍ତା  
ଦୁର୍ଲକ୍ଷଣ—ଦୁଲକ୍ଷଣା  
ନିର୍ଜିତ—ନିର୍ଜିତା

### -ଆଣି

ଆଗ + ଆଣି = ଆଗିଆଣି

### -ଇ

କ୍ଷୁଦ୍ରତା ଅର୍ଥରେ—

କାଠ—କାଠି  
ଖଣ୍ଡ—ଖଣ୍ଡି  
ଗୁଣ୍ଡା—ଗୁଣ୍ଡି  
ପାଟ—ପାଟ୍ଟି  
ମାଳ, ମାଳା—ମାଳି  
କଉପୀନ—କଉପୁନି  
କଙ୍କଣ—କଙ୍କଣି

---

† ସ୍ୱାର୍ଥିକ -ଆ : ସଂସ୍କୃତ ଶବ୍ଦର ଅନ୍ତ୍ୟସ୍ୱର -ଅ + ସ୍ୱାର୍ଥିକ -କ ପ୍ରାକୃତରେ -ଅଅ ହୋଇ ଓଡ଼ିଆରେ -ଆ ହୋଇଛି । ଯଥା—ସାରକ > ସାରଅ > ସାସ୍ର, ଅନ୍ଧକ > ଅନ୍ଧଅ > ଅନ୍ଧା । କମ୍ବା ଦେଶରେ ଅନ୍ତ୍ୟ 'ଅ' ଧ୍ୱନି ଓଡ଼ିଆରେ ବିବୃତ ହୋଇଛି । ଯଥା—ସାର > ସାସ୍ର, ଅନ୍ଧ > ଅନ୍ଧା । ଏହି -ଆ କ୍ରମେ ଅନ୍ୟାନ୍ୟ ସ୍ୱରାନ୍ତ ପଦରୁ ମଧ୍ୟ ବ୍ୟବହୃତ ହୋଇଛି । ଯଥା—ହରିଆ, ମଧୁଆ । -ଆ କ୍ରମଶଃ ଅନାଦର ଅର୍ଥ ବହନ କରୁଛି । ଯଥା—ଅନ୍ଧା, କାଲ୍ଲା, ରାମା, ହରିଆ ।

-ଆଣି 'ଅଗ୍ରଣୀ' ପ୍ରଭୃତି ଶବ୍ଦର '-ଣୀ' କ୍ରମେ '-ଅଣି' ହୋଇଛି । ଏହି '-ଆଣି' ଏକ ସ୍ୱତନ୍ତ୍ର ପ୍ରତ୍ୟୟ ରୂପେ ଅନ୍ୟାନ୍ୟ ଶବ୍ଦରୁ ପ୍ରଯୁକ୍ତ ହୋଇଅଛି । ଯଥା—ପଛୁଆଣି (ପଛୁଆଣି), ଆଣ୍ଟୁଆଣି (ଅଣ୍ଟିଆଣି)

ଅସ୍ତି ଅର୍ଥରେ—

| | |
|---|---|
| ସାଗ—ସାଗି | ଘର୍ଘର—ଘର୍ଘରି |
| ଖାର—ଖାରି | ଅପବାଦ—ଅପବାଦି |
| କ୍ରୋଧ—କ୍ରୋଧି | ଗନ୍ଧସ୍ରୋତ—ଗନ୍ଧସ୍ରୋତି |

ଆଦର ଅର୍ଥରେ—

| | |
|---|---|
| ତପୋଧନ—ତପୋଧନି | ଅପତ୍ୟ—ଅପତ୍ୟି |
| ତପସ୍ବିନୀ—ତପସ୍ବିନି | ବୃନ୍ଦ—ବୃନ୍ଦି |

ସ୍ୱାର୍ଥେ—

| | |
|---|---|
| ବେଗ—ବେଗି | କ୍ଷଣ—କ୍ଷଣି |
| ପୁଣ—ପୁଣି | ଭୁସ୍ତ—ଭୁସ୍ତି |

-ଈ

ଅସ୍ତି ଅର୍ଥରେ—

| | |
|---|---|
| ଯୌବନ—ଯୌବନୀ | (ଯେଉଁ ସ୍ତ୍ରୀର ଯୌବନ ଅଛି) |
| କୁତୂହଳ—କୁତୂହଳୀ | (ଯେଉଁ ସ୍ତ୍ରୀର କୁତୂହଳ ଅଛି) |
| ଅଭାବ—ଅଭାବୀ | (ଯେଉଁ ସ୍ତ୍ରୀର ଅଭାବ ଅଛି) |

ନିପୁଣ ଅର୍ଥରେ—

ଜଞ୍ଜାଳ—ଜଞ୍ଜାଳୀ (ଜଞ୍ଜାଳି) (ଜଞ୍ଜାଳ ସୃଷ୍ଟି କରିବାରେ ନିପୁଣ)

ଜାତି ଅର୍ଥରେ—

ଇଂରେଜ ଜାତି ଇଂରେଜୀ

-ଓଇ

ଘାଣ୍ଟ+ଓଇ=ଘାଣ୍ଟୋଇ

---

-ଇ କ୍ଷୁଦ୍ରତାସୂଚକ, ଆଦରସୂଚକ ତଥା ସ୍ୱାର୍ଥିକ -ଇ ପ୍ରତ୍ୟୟ ମୂଳତଃ ସ୍ତ୍ରୀପ୍ରତ୍ୟୟ -ଈ। ଏହା କ୍ରମଶଃ ସ୍ତ୍ରୀଲିଙ୍ଗକୁ ପରିତ୍ୟାଗ କରିଛି ।

ଅସ୍ତ୍ୟର୍ଥକ -ଇ ସଂସ୍କୃତ -ଇନ୍ ପ୍ରତ୍ୟୟରୁ ଉତ୍ପନ୍ନ । ସଂସ୍କୃତ -ଇନ୍ ପ୍ରତ୍ୟୟାନ୍ତ ଶବ୍ଦ ପୁଂଲିଙ୍ଗ କର୍ତ୍ତା ଏକବଚନରେ -ଈ ହୁଏ । ଯଥା—କ୍ରୋଧୀ, ଖରୀ । କ୍ଲୀବଲିଙ୍ଗ କର୍ତ୍ତା ଏକବଚନରେ ଏହା -ଇ ହୁଏ । ଯଥା—କ୍ରୋଧି, ଖରି । ଓଡ଼ିଆରେ 'ଈ' ଓ 'ଇ' ମଧ୍ୟରେ ଉଚ୍ଚାରଣଗତ ପାର୍ଥକ୍ୟ ନାହିଁ ।

-ଈ ଏହା ସ୍ତ୍ରୀପ୍ରତ୍ୟୟ -ଈଠାରୁ ଭିନ୍ନ ନୁହେଁ ।

-ଓଇ ଏହା ସମ୍ଭବତଃ ଏକ ଦେଶଜ ପ୍ରତ୍ୟୟ । ବାଣ୍ଟ—ବାଣ୍ଟୋଇ

-ବନ୍ତ

ଅସ୍ତି ଅର୍ଥରେ—

ଭାଗ୍ୟବନ୍ତ | ଭଗ୍ୟଂବନ୍ତ (ଅଭଙ୍ଗବନ୍ତ)
ବଳବନ୍ତ | ଶୁରବନ୍ତା (ସ୍ୱାର୍ଥେ-ଆ)

-ବନ୍ତୀ,-ବତୀ

ଅସ୍ତି ଅର୍ଥରେ—(ସ୍ତ୍ରୀଲିଙ୍ଗ)

ରୂପବନ୍ତୀ | ଯଉବନବତୀ

-ପଣ

ରାଜପଣ, ବଡ଼ପଣ, ଭୃତ୍ୟପଣ, ସତୀପଣ ।

## ଦ୍ୱାତ୍ରିଂଶ ଅଧ୍ୟାୟ

### ସନ୍ଧି

ତଦ୍‌ଭବ ଓ ଦେଶୀ ଶବ୍ଦମାନଙ୍କରେ ସନ୍ଧିଗତ ବର୍ଣ୍ଣମିଳନ ଅତ୍ୟନ୍ତ ବିରଳ । ସଙ୍କଳିତ ଗ୍ରନ୍ଥାଂଶରେ କେବଳ ତିନିପ୍ରକାର ସନ୍ଧି ଦେଖାଯାଏ ।

(୧) ଅ+ଅ=ଅ

ନ+ଅଇଲ=ନଇଲ

(୨) ଅ+ଓ=ଓ

ନ+ହୋଇଲ=ନୋହିଲ,ନ+ହୋଇ=ନୋହି †

(୩) ଅ+ଏ=ଏ

---

-ବନ୍ତୀ ପ୍ରା: ଭା: ଆ: ଅସ୍ତ୍ୟର୍ଥକ-ବନ୍ତୁ (ଧନବନ୍ତୋ, ଗୁଣବନ୍ତ, ପ୍ରଭୃତି ଆକୃତି ହେଉ) ମ: ଭା: ଆ:ରେ-ବନ୍ତ- ହୋଇଛି । '-ବତ୍'ର ସ୍ତ୍ରୀଲିଙ୍ଗ -ବତୀ, '-ବନ୍ତ'ର -ବନ୍ତୀ ।

-ପଣ ପ୍ରା: ଭା: ଆ: ଭାବବୋଧକ-ତ୍ୱନ (ସ: ତ୍ୱମ୍, ଯଥା—ନରତ୍ୱମ୍, ରାଜତ୍ୱମ୍) ମ: ଭା: ଆ:ରେ-ପ୍‌ପଣ ହୋଇଛି । ସେଥିରୁ ଓଡ଼ିଆ -ପଣ ଉତ୍ପନ୍ନ ।

* ଭଗ୍ୟଂବନ୍ତ, ଶୂରବନ୍ତା—ଏଥିରେ 'ଭଗ୍ୟଂ,' 'ଶୁର' ବିଶେଷଣରୁ ମଧ୍ୟ 'ବନ୍ତ' ପ୍ରତ୍ୟୟ ହୋଇଛି । ଏହିପରି,

ବ୍ୟଗ୍ରବନ୍ତ ଗତ କରେ କର୍ଣ୍ଣିଡବସରେ ଯେ (ବୈ:ବି: ୪-୧୩)

† ଉଷ୍ମଧ୍ୱନି 'ହ୍'ର ସ୍ଥାନ ପରିବର୍ତ୍ତନ ଘଟିଛି ।

ଓଡ଼ିଆ ସନ୍ଧି ପ୍ରାକୃତ ସନ୍ଧିର ଅନୁସାରୀ । ପ୍ରାକୃତ ସନ୍ଧିରେ ସ୍ୱରବର୍ଣ୍ଣ ଥିଲେ ପୂର୍ବବର୍ତ୍ତୀ ସ୍ୱରବର୍ଣ୍ଣ ଲୋପ ପାଏ । ଯଥା—ହରିଣ+ଅଙ୍କ=ହରିଣଙ୍କ

(ଚନ୍ଦବାଳଧରଣୀହରିଣଙ୍କୋ—କା:ମ: ୧ମ ଜବନକାନ୍ତରମ୍)

(କୁସୁମଶର+ଏକ୍କ=କୁସୁମଶରେକ୍କ—କା:ମ: ୧ମ ଜବନକାନ୍ତରମ୍)

ଆର + ଏକ = ଆରେକ, ଲକ୍ଷ + ଏକ = ଲକ୍ଷେକ
ବରଂ ବହୁ ସଂସ୍କୃତ ସନ୍ଧିଯୁକ୍ତ ପଦ ବିଶ୍ଳିଷ୍ଟ ହୋଇଅଛି ।

ଯଥାର୍ଥ—ଯଥାଅର୍ଥ                    ମହର୍ଷି—ମହରୃଷି
ପାଦାର୍ଘ—ପାଦାଅର୍ଘ                    ଅତ୍ୟନ୍ତ—ଅତିଅନ୍ତ **

ଏପରିକି, ନାମ ମଧ୍ୟ ବିଶ୍ଳିଷ୍ଟ ହୋଇଅଛି ।—

ଯମଦଗ୍ନି—ଯମଦଅଗ୍ନି                    ଚନ୍ଦ୍ରୋଜ୍ଜ୍ୱଳା—ଚନ୍ଦ୍ରଉଜ୍ଜ୍ୱଳା

# ତ୍ରୟସ୍ତ୍ରିଂଶ ଅଧ୍ୟାୟ
## ସମାସ

ତତ୍ପୁରୁଷ, କର୍ମଧାରୟ, ଦ୍ୱିଗୁ, ଦ୍ୱନ୍ଦ୍ୱ, ବହୁବ୍ରୀହି ଓ ଅବ୍ୟୟୀଭାବ ସମାସ ପ୍ରକ୍ରିୟାରେ ବହୁ ଯୌଗିକ ପଦ ଗଠିତ ହୋଇଅଛି । ସଂସ୍କୃତରେ ସମସ୍ୟମାନ ପଦଗୁଡ଼ିକ ମଧ୍ୟରେ ସନ୍ଧି ନିତ୍ୟ । କିନ୍ତୁ ଓଡ଼ିଆରେ ସେଗୁଡ଼ିକ ମଧ୍ୟରେ ପ୍ରାୟ ସନ୍ଧି ହୁଏ ନାହିଁ । ଯଥା – ନାରାୟଣଙ୍କର ଆତ୍ମା = ନାରାୟଣ ଆତ୍ମା, ହତ ହୋଇଛି ଅଶ୍ୱ (ଆୟୁଷ) ଯାହାର ସେ = ହତଆଶ୍ୱ । ପୁନଶ୍ଚ, ସଂସ୍କୃତରେ ସମସ୍ୟମାନ ପଦଗୁଡ଼ିକ ପରସ୍ପର ସଂଲଗ୍ନ ହୋଇ ଲେଖାହୁଏ । କିନ୍ତୁ ଓଡ଼ିଆରେ ସେଗୁଡ଼ିକ ସଂଲଗ୍ନ ତଥା ଅସଂଲଗ୍ନ, ଉଭୟ ପ୍ରକାରରେ ଲେଖା ହୁଏ । ଯଥା—ବାଘବଧ, ବାଘ ବଧ; ସମୋଦ୍ର ସ୍ନାହାନ, ସମୋଦ୍ର ସ୍ନାହାନ ।

### ତତ୍ପୁରୁଷ

ଷଷ୍ଠୀ ତତ୍ପୁରୁଷ ପଦ ସବୁଠାରୁ ଅଧିକ ଦେଖାଯାଏ ।
ବାଘର ବଧ = ବାଘବଧ ୪୭୨।୧
ଅମ୍ବିକାର ପୁର = ଅମ୍ବିକାପୁର ୮୩୦।୨
ପିତାଙ୍କ ଘର = ପିତାଘର ୧୮୩।୧ †
ରୁଦ୍ରଙ୍କ ଅବତାର = ରୁଦ୍ରଅବତାର ୨୦୦।୨

---

** ପ୍ରତ୍ୟଆହାର ଧ୍ୟାନକ ଧାରଣ । (ଚ: ମ: ୫-୨୮)
ନାନା ତୀର୍ଥବ୍ରତ କରଆହାରୀ । (ଚ: ମ: ୫-୩୭)
ସାବେ ଅନଅନ୍ୟଭାବୀ ସୁବା । (ବୈ: ବ: ୪-୭୯)

† ସମାସରେ ସମସ୍ୟମାନ ପଦ ବିଭକ୍ତିହୀନ ହୋଇ ପ୍ରାତିପଦିକ ଅବସ୍ଥାକୁ ଆସେ । ଯଥା—ପିତୁଃ ଗୃହଂ = ପିତୃଗୃହଂ, ରାଜ୍ଞଃ ପୁରୁଷ = ରାଜପୁରୁଷଃ । ପିତା, ଦୁହିତା, ରାଜା ପ୍ରଭୃତି ପଦ ସଂସ୍କୃତରେ ପ୍ରଥମାନ୍ତ । କିନ୍ତୁ ଓଡ଼ିଆରେ ଏଗୁଡ଼ିକ ପ୍ରାତିପଦିକ ରୂପେ ସ୍ୱୀକୃତ । ତେଣୁ, ପିତାଙ୍କ ଘର = ପିତାଘର, ରାଜାଙ୍କ ଘର = ରାଜାଘର (ରଜାଘର), ଦୋହିତାର ବଚନ = ଦୋହିତାବଚନ, ଏହିପରି ସମାସ-ପଦ ଗଠିତ ହୁଏ ।

ଦୋହ୍ଲତାର ବଚନ=ଦୋହ୍ଲତା ବଚନ ୧୯୨।୧

ଆତ୍ମଜର ନିଧନ=ଆତ୍ମଜନିଧନ ୩୬୫।୧

ନାଗସ୍ତ୍ରୈଣଙ୍କର ଆସ୍ଥା=ନାଗସ୍ତ୍ରୈଣଆସ୍ଥା ୨୫୯।୧

ପୁଅର ମୁଣ୍ଡଗୋଟି=ପୁଅମୁଣ୍ଡଗୋଟି ୩୬୩।୨

ପଞ୍ଚସ୍ତ୍ରେର ଝଗଡା=ପଞ୍ଚସ୍ତ୍ରେ ଝଗଡା ୧୪୭୦।୨

ଅନଙ୍ଗର ଅନୁରୂପ=ଅନଙ୍ଗ ଅନୁରୂପ ୧୦୬୩।୨

ସ୍ୱୟମ୍ବରର ବିଧାନ=ସ୍ୱୟମ୍ବର ବିଧାନ ୫୧୫।୨

ଦ୍ୱିତୀୟା ତତ୍ପୁରୁଷ

ପୂଜ୍ୟଙ୍କ ଲଙ୍ଘିବା=ପୂଜ୍ୟଙ୍କୁ ଲଙ୍ଘିବା ※

(ପୂଜ୍ୟଙ୍କ ଲଙ୍ଘିବାର ଦୋଷ ଯେ ଲଭନ୍ତି । ୭୩୮।୨)

ଶାପ୍ୟକୁ ବଞ୍ଚାଇବା=ଶାପ୍ୟବଞ୍ଚାଇବା

(ଶାପ୍ୟ ବଞ୍ଚାଇବାର ବୁଦ୍ଧି କରନ୍ତି ତପୋଧନ । ୪୮୨।୨)

ତୃତୀୟା ତତ୍ପୁରୁଷ

ମନ୍ତ୍ରକୁଶଦ୍ୱାରା ବନ୍ଧନ=ମନ୍ତ୍ରକୁଶବନ୍ଧନ ୧୩୩୨।୨

ଜାଡରେ ବ୍ରହ୍ମଅସୁଖ=ଜାଡବ୍ରହ୍ମଅସୁଖ ୧୧୯୫।୨

ଚତୁର୍ଥୀ ତତ୍ପୁରୁଷ

ତାପତୀପାଇଁ ସ୍ୱୟମ୍ବର=ତାପତୀସ୍ୱୟମ୍ବର ୧୨୩।୨

ପଞ୍ଚମୀ ତତ୍ପୁରୁଷ

ଗଙ୍ଗାଠାରୁ ଡର=ଗଙ୍ଗାଡର

(ଗଙ୍ଗାଡରେଣ ତାହାକୁ ପାଳିଲେ ସତ୍ୟବତୀ । ୩୫୮।୨)

ସପ୍ତମୀ ତତ୍ପୁରୁଷ

ସମୋଦ୍ରରେ ସ୍ନାହାନ=ସମୋଦ୍ରସ୍ନାହାନ ୩୬୦।୧

ଉପପଦ ତତ୍ପୁରୁଷ

ଧର୍ମକୁ ନାଶ କରେ ଯେ=ଧର୍ମନାଶା ୨୬୧।୨

କାଳକୁ ବଞ୍ଚାଏ (ପ୍ରତାରଣା କରେ) ଯେ=କାଳବଞ୍ଚା ୨୧।୨

ଘରକୁ ଭାଙ୍ଗେ ଯେ=ଘରଭଙ୍ଗା ୩୦୬।୨

ଉବଟନ ହୋଇ ଶୁଏ ଯେ=ଉବଟନସାୟୀ (ଉବଟନଶାୟୀ) ୫୭୭।୧

---

※ 'ପୂଜ୍ୟଙ୍କ ଲଙ୍ଘିବା' 'ଶାପ୍ୟବଞ୍ଚାଇବା' ସଂସ୍କୃତ ନିୟମ ଅନୁସାରେ ଷଷ୍ଠୀ ତତ୍ପୁରୁଷ ମଧ୍ୟ ହୋଇପାରେ । ଯଥା—ପୂଜ୍ୟଙ୍କର ଲଙ୍ଘିବା, ଶାପ୍ୟର ବଞ୍ଚାଇବା । ସଂସ୍କୃତରେ କୃଦନ୍ତ ପଦ ଯୋଗେ ଷଷ୍ଠୀ ହୁଏ । ଯଥା—ଅନ୍ନସ୍ୟ ଭୋଜନଂ=ଅନ୍ନଭୋଜନଂ, ଗୃହସ୍ୟ ତ୍ୟାଗଃ=ଗୃହତ୍ୟାଗ ।

ଅସୁର ଗବଂକୁ ଗଞ୍ଜେ ଯେ=ଅସୁରଗବଂଗଞ୍ଜି (ସ୍ତ୍ରୀଲିଙ୍ଗ) ୫୭।୨୯

ନଞ୍ ତତ୍ପୁରୁଷ

ନ କାଳେ=ଅକାଳେ ୯୩୩।୨

ନ ଗଢ=ଅଗଢ ୧୯୦।୨

ନ କାରଣ=ଅକାରଣ ୨୨୦୯।୨

ନ ଉଦ୍ରୋଧ=ଅଣଉଦ୍ରୋଧ ୭୨୭।୯

କର୍ମଧାରୟ

ବିଶେଷଣ ଓ ବିଶେଷ୍ୟ ବହୁସ୍ଥାନରେ ଏକତ୍ର ବ୍ୟବହୃତ ହୋଇଅଛି । ଯଥା—

| | |
|---|---|
| ସିଧ୍ୟଦେବତାଙ୍କୁ | କେବଳ ଉପାୟ |
| ବଳବନ୍ତ ପୁତ୍ର | ଏମନ୍ତ ପ୍ରକାରେ |
| ଖେଳନ୍ତା ସିଂହ | ସଦଘର |
| ଦୋଷି କନ୍ୟା | ସଚସିତର ପୁଷ୍ପ |

ଏସବୁ ସ୍ଥଳରେ ବିଶେଷଣ ଓ ବିଶେଷ୍ୟକୁ ମିଶାଇ ଗୋଟିଏ ଗୋଟିଏ ଯୌଗିକ ପଦ କଳ୍ପନା କରାଯାଇପାରେ କିମ୍ବା ଦୁଇଟିକୁ ପୃଥକ୍ ପୃଥକ୍ ରଖି ଅସମସ୍ତ ପଦ ବୋଲି ବୁଝାଯାଇପାରେ ।

କିନ୍ତୁ କେତେକ ସ୍ଥଳରେ ବିଶେଷ୍ୟ ପରବର୍ତ୍ତୀ ପଦ ସହିତ ଅନ୍ୱୟ ରଖିଥିବାରୁ ବିଶେଷଣ ବିଶେଷ୍ୟ ସହିତ ଅନ୍ୱୟ ରଖିବାକୁ ବାଧ ହୋଇଛି । ଫଳରେ, ସେଠାରେ ନିଶ୍ଚିତଭାବେ କର୍ମଧାରୟ ସମାସ ହୋଇଛି । ଯଥା—

ବୃଦ୍ଧ-ମାତା-ସଙ୍ଗେ ୩୭।୨

ପରମ-ଗଢ-ଦ୍ୟନ୍ତା ୮।୨

ସମସ୍ତ-ଶାସ୍ତ୍ର-ଭିନ୍ନୁଂ ୫୫।୨

ସକଳ-ସୁରଗଣ-ଅଗ୍ରତେ ୯।୨

ଏକାଧିକ ବିଶେଷଣ ମଧ୍ୟ ବିଶେଷ୍ୟ ସହିତ ଅନ୍ୱିତ ହୋଇଛି ।—

ପଞ୍ଚମମୁଖୀ-ଧବଳାଙ୍ଗୀ-ସରସ୍ୱତୀ-ନଦୀ-ତଟ । ୧୩।୨

ନୀଳ-ସୁନ୍ଦର-ଗିରି ୩୫।୯

ସର୍ବନାମ-ବିଜୁରୂପ (ପ୍ରଥମାରୂପ) ମଧ୍ୟ ବିଶେଷ୍ୟ ସହିତ ଅନ୍ୱିତ ହୋଇଛି ।—

ସେ- କନ୍ୟା-ମୂରତି ୧୧୪।୨

ସେହି-ନଦୀ-ତୀରେ ୩୭।୯

ମଧ୍ୟପଦଲୋପୀ କର୍ମଧାରୟ

ମାଧୁର୍ଯ୍ୟପୂର୍ଣ୍ଣ ବଚନ=ମାଧୁର୍ଯ୍ୟବଚନ ୩୭୮।୨

କୃଷି ଉପଯୋଗୀ ଭୂମି=କୃଷି ଭୂମି ୧୭୨।୨

ପୂଜା କରାଯାଉଥିବା ଲିଙ୍ଗ=ପୂଜାଲିଙ୍ଗ ୭୩୮।୨
ରତ୍ନ ଓ ମଣିରେ ନିର୍ମିତ ମୁକୁଟ=ରତ୍ନମଣିମୁକୁଟ । ୫୭୮।୧

### ଦ୍ୱିଗୁ

ଚତୁ ସମର ସମାହାର=ଚତୁସମ (ଚତୁଃସମ) ୧୦୩୯।୧
ପଞ୍ଚ କଣ୍ଟକର ସମାହାର=ପଞ୍ଚକଣ୍ଟକ ୧୫୦୨।୨

### ଦ୍ୱନ୍ଦ୍ୱ

ଏକାଧିକ ବିଶେଷ୍ୟ ପଦ ଏକତ୍ର ବ୍ୟବହୃତ ହୋଇଛି—
ପିଠା-ଷିଣଯାକ ୧୨୯୫।୧
ଖେଳନ-ଆସ୍ଫୋଟନ ୪୭୨।୨
ନାଢ଼-ପଣନାଢ଼ମାନେ ୧୨୧୯।୨
ଭୂତ-ଭବିଷ୍ୟ-ବର୍ତ୍ତମାନେ ୨୬।୨
ରାଗ-ମୋହ-ଅହଙ୍କାର ୨୭୦।୧
ଯାଗ-ଯଜ୍ଞ-ମନ୍ତ୍ର ବରଣ ୫୮୩।୧
ବସନ-କୁଣ୍ଡଳ-ରତ୍ନମାଳ-ଚନ୍ଦନ ୭୦।୧
ସମାହାର ବା ସଂହତ ଅର୍ଥରେ ମଧ୍ୟ ଦ୍ୱନ୍ଦ୍ୱ ସମାସ ହୋଇଅଛି ।—
ଦେବାଦେବୀ ୧୪୨୫।୧
ମନ ଚଇତନ ୧୯।୨
ଦଧିମାଛ ୫୮୧।୧
ପାପପୁଣ୍ୟ ୯୪୯।୨

### ବହୁବ୍ରୀହି

ସାଧାରଣତଃ ସମାନାଧିକରଣ ବହୁବ୍ରୀହିପଦ ବ୍ୟବହୃତ ହୋଇଅଛି ।
ହେଠ ମାଥ ଯାହାର ସେ=ହେଠମାଥ ୧୦୫୭।୨
ମାହା ସପଦ ,, ,, =ମାହାସପଦ ୪୫୩।୨
ପ୍ରଫୁଲ ଶରୀର ,, ,, =ପ୍ରଫୁଲଶରୀର ୨୦।୨
ପଞ୍ଚ ମଣ୍ଡଳ ,, ,, =ପଞ୍ଚମଣ୍ଡଳ ୧୪୪।୧
ହତ ଅଷ୍ୟ ,, ,, =ହତଅଷ୍ୟ ୯୦୬।୨
ବାଳୁକ ବୟସ ,, ,, =ବାଳୁକବୟସ ୧୯୪।୨
ବିମୋହିତ ଚିତ୍ତ ,, ,, =ବିମୋହିତଚିତ୍ତ ୭୮୬।୨
ସହସ୍ର ଗୁଣ ,, ,, =ସହସ୍ର ଗୁଣା (ସ୍ତ୍ରୀଲିଙ୍ଗ) ୫୫୭।୨
ସ୍ୱପତ ଧାପ ଯହିଁରେ ସେ = ସ୍ୱପତଧାପା (ସ୍ତ୍ରୀଲିଙ୍ଗ) ୭୭।୨

ବଧୂର ଆତ୍ମା ଯାହାର ସେ=ବଧୂର ଆତ୍ମା ୧୨୩୪।୨
ଅଭଙ୍ଗ ରମଣ ଯାହାର ସେ=ଅଭଙ୍ଗରମଣ ୯୫୭।୧

### ମଧ୍ୟପଦଲୋପୀ ବହୁବ୍ରୀହି

ଘଣ୍ଟ ପରି କୁଣ୍ଡଳ ଯାହାର ସେ=ଘଣ୍ଟକୁଣ୍ଡଳ (ସ୍ତ୍ରୀଲିଙ୍ଗ) ୫୭୯।୧
ଅନଙ୍ଗର ମୂରତ ପରି ମୂରତ ଯାହାର ସେ=ଅନଙ୍ଗମୂରତ ୯୯୭।୨
ମାନେକାର ଅବସ୍ଥା ପରି ଅବସ୍ଥା ଯାହାର ସେ=ମାନେକାଅବସ୍ଥା ୭୧୯।୧

### ନଞର୍ଥ ବହୁବ୍ରୀହି

ନାହିଁ ଘଟଣ ଯାହାର ସେ=ଅଘଟଣ ୯୩୫।୧
ନାହିଁ କୁଳମାର୍ଗ ଯାହାର ସେ=ଅକୁଳମାର୍ଗ ୨୨।୨
ନାହିଁ ମୋକ୍ଷଗତ ଯାହାର ସେ=ଅମୋକ୍ଷଗତ ୨୩୪।୧
ନାହିଁ ଦସ୍ତା ଯାହାର ସେ=ଅଣଦସ୍ତା ୭୨୭।୧
ବହୁବ୍ରୀହିର ଦୁଇ ସମସ୍ୟମାନ ପଦମଧ୍ୟରେ 'ସେ' ସ୍ଥାନ ପାଇଛୁ—
ଜମ୍ବୁରୁ ଜମ୍ବୁ ଦେବ ଚନ୍ଦ୍ର ସେ ଶେଖର ୫।୧
ବଡ଼ ଜଞ୍ଜାଳ ଗଙ୍ଗା ଦୁଷ୍ଟ ସେ ତ୍ରକୂଟ ୪୦।୧

### ଅବ୍ୟୟୀଭାବ

ଉଚିତ ଅର୍ଥେ ବା ଅର୍ଥକୁ ଅତିକ୍ରମ ନ କରି=ଯଥାଅର୍ଥେ ୭୪।୧
କାଳ ଥିବା ପର୍ଯ୍ୟନ୍ତ=ଯାବତକାଳ ୮୦୭।୧
ନିତ ନିତ=ନିତପ୍ରତି ୧୨୨୦।୨
ରୂପର ସାଦୃଶ୍ୟ=ସରୂପ ୧୪୮୯।୧
କେତେଗୁଡ଼ିଏ ଦୀର୍ଘ ସମାସ-ପଦର ଉଦାହରଣ—
ସସାରବାରିନିଧିନାଥ ୨୦।୨
ଶିଖଣ୍ଡ ମଣ୍ଡଳ ଶୋଭ ୨୩।୧
ଗତମୁକ୍ତ କାରଣ ୨୫୮।୨
ଗୁରୁ ହରଣ ପାତେକ ୧୧୧୦।୧
ରତି ଶାହାସ୍ତ୍ର କଥା ୨୮୬।୧
ଉରଗଭରହାର ୫୬୮।୨
ଧବଳରୁଚିର ବପୁ ୧୭୪।୨
ହରପାଦୁକ ଭକ୍ଷଣ ୧୦୭୦।୧
ତାପତସପ୍ତେସ୍ମର ଚରିତ ୧୧୭।୨
ଚତୁଷଷ୍ଠିଗୁଣଲକ୍ଷଣ ୧୦୬୩।୨
ମୂଳଜନନ୍ତପଭଙ୍ଗ ୯୬୭।୨

ତୋଷଦଦନଗାଥ' ୧୧୦୦।୨
ତ୍ରିପୁରନଦୀ ଉତ୍ତରତୀରେ ୬୧୭।୨
ସିତ ପୀତଅଖଣ୍ଡିତ ବର୍ଣ୍ଣ ୧୩୭୩।୧
ଅସୁର ତ୍ରିପୁର ଅନେକ ଶିରଚ୍ଛେଦ ୧୦୭୩।୨
ଅନନ୍ତକୋଟି ବ୍ରହ୍ମାଣ୍ଡ ଅନନ୍ତପୁର ଖେଳି ୧୦୭୦।୨
ହାସରସ ପରହାସ ପ୍ରେମ ଲୁଚୋଇଥିଲେ ୧୦୫୦।୨
ଝମକନଶାଣ ମର୍ଦ୍ଦଳ ରୁଣଝୁଣନାଦେ ୫୫୩।୧
ମାନ ସୁନ୍ଦରଗିରି ଉତ୍ତର କଣ୍ଡରେ ୩୫।୧
ଭିତର ନଗର ଅଗଣା ମଧ୍ୟ ଆନେ ୧୩୨୮।୧
ମକର ମାଘ ଶୁକ୍ଳପକ୍ଷ ଏକାଦଶୀ ୨୫୫।୧
ଜମ୍ବୋଦ୍ବୀପ ଦ୍ଵୁ ଅଖଣ୍ଡ ଓଡ଼୍ରରାଷ୍ଟ୍ରମଣ୍ଡଳେ ୩୦।୧

ଇତ୍ୟାଦ ।

ସକଳତ ଉଦ୍ଧୃତାଂଶରେ କୌଣସି ସମାସାନ୍ତ ପ୍ରତ୍ୟୟ ବ୍ୟବହୃତ ହୋଇନାହିଁ ।

# ଚତୁସ୍ତ୍ରିଂଶ ଅଧ୍ୟାୟ

## ସଂସ୍କୃତ ପ୍ରୟୋଗ

ସଂସ୍କୃତ ଭାଷାର କେତେକ ପଦ ଅବକୃତ ଭାବରେ ବା କଥିତ୍ ବକୃତସହ ବ୍ୟବହୃତ ହୋଇଅଛି ।

### ସବଭକ୍ତିକ ବଶେଷ୍ୟ

କରେଣ ଯେନଲେ ଦେଖା ବଳେ କର୍ଣ୍ଣକଟାର ।୪୨୫।୧
(କରେଣ—'କର' ଶବ୍ଦର ୩ୟା ଏକବଚନ)
ଭରହରଖନାଥ ନୃତ୍ୟରଙ୍ଗେଣ ଖେଳା । ୨୩।୨
(ରଙ୍ଗେଣ—'ରଙ୍ଗ' ଶବ୍ଦର ୩ୟା ଏକବଚନ)
ଦବ ଭୁବ ପାତାଳେ ତଇଲୋକ୍ୟେ ବଦତ । ୧୦୭୪।୨
(ଦବ—'ଦବ୍' ଶବ୍ଦର ୭ମୀ ଏକବଚନ)
(ଭୁବ—'ଭୁ' ଶବ୍ଦର ୭ମୀ ଏକବଚନ)
ମମ ଦୂଷିତ କର୍ମଣି ଭୁଲେ କଳଙ୍କ ଲଜ୍ଜ୍ୟା । ୧୦୯୭।୨
(କର୍ମଣି—'କର୍ମନ୍' ଶବ୍ଦର ୭ମୀ ଏକବଚନ)
ବଦସ୍ଯନ୍ତ କରତାର ଶୁଣ ଗୋ ତାପସ । ୧୩୩।୧
('କର୍ତ୍ତୃ' ଶବ୍ଦର ୧ମା ବହୁବଚନ—କର୍ତ୍ତାରଃ > କରତାର)

## ସର୍ବନାମ

ମମ ଦୂଷିତ କର୍ମିଣି କୁଳେ କଳଙ୍କ ଲଜ୍ଜ୍ୟା । ୧୦୯୭।୨

(ମମ—'ଅସ୍ମଦ୍' ଶବ୍ଦର ୬ଷ୍ଠୀ ଏକବଚନ)

ତବ ପଦ୍ମପାଦେ ମୋର ବନସ୍କେ ଭଗତ । '୩।୧

(ତବ—'ଯୁଷ୍ମଦ୍' ଶବ୍ଦର ୬ଷ୍ଠୀ ଏକବଚନ)

## ସମାପିକା କ୍ରିୟା

ଜୟତୁ ଦଧିମଙ୍ଗଳ ବଧୂସବକ । ୨।୧

(ଜୟତୁ—'ଜି' ଧାତୁର ଲୋଟ୍ ୧ମ ପୁରୁଷ ଏକବଚନ)

ବଦନ୍ତି ଅଗସ୍ତି ଶୁଣ ମନ ଯୁଗପତ । ୫୬୭।୧

(ବଦନ୍ତି—'ବଦ୍' ଧାତୁର ଲଟ୍ ୧ମ ପୁରୁଷ ବହୁବଚନ)

ବଦସ୍ୱନ୍ତି କରତାର ଶୁଣ ଗୋ ତାପତ । ୧୩୩।୧

(ବଦସ୍ୱନ୍ତି—'ବଦନ୍ତି'ର ବିକୃତ)

ସମସ୍ତ ଅଗସ୍ତି ସ୍ୱେଦ୍ୱାର ତୋଇଳ ବିନଶ୍ୟତ । ୧୩୩୫।୨

(ବିନଶ୍ୟତ—ବି-ନଶ୍ ଧାତୁର ଲଟ୍ ୧ମ ପୁରୁଷ ଏକବଚନ)

## ଅସମାପିକା କ୍ରିୟା

ସାସ୍ୱେନ୍ଦ୍ରନୁକୁ ପ୍ରତେପତ୍ୟ କସ୍ୱେଲଭ ସବୁଲଭ । ୬୨୭।୧

(ପ୍ରତେପତ୍ୟ—'ପ୍ରଣିପତ୍ୟ'ର ବିକୃତ)

ଆଜ ପରୀକ୍ଷ ଜାଣିମା ସଦାନନ୍ଦ ବୋଇଲେ । ୨୮୪।୨

(ପରୀକ୍ଷ—'ପରୀକ୍ଷ୍ୟ'ର ବିକୃତ)

# ପଞ୍ଚବିଂଶ ଅଧ୍ୟାୟ

## ପ୍ରାକୃତ ପ୍ରୟୋଗ

ସାରଳା ମହାଭାରତରେ କେତେଗୁଡ଼ିଏ ପ୍ରାକୃତ ପ୍ରୟୋଗ ମଧ୍ୟ ପରିଦୃଷ୍ଟ ହୁଏ । କିନ୍ତୁ ଏଥିରେ ଥିବା ସଂସ୍କୃତ ପ୍ରୟୋଗଗୁଡ଼ିକୁ ଭିତ୍ତି କରି ଏହାକୁ ଯେପରି ସଂସ୍କୃତକାଳୀନ ରଚନା ବୋଲି କୁହାଯାଇ ନ ପାରେ, ସେହିପରି ପ୍ରାକୃତ ପ୍ରୟୋଗଗୁଡ଼ିକୁ ଭିତ୍ତି କରି ଏହାକୁ ଅତି ପ୍ରାଚୀନ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର ପୂର୍ବ ରଚନା ବୋଲି କୁହାଯାଇ ନ ପାରେ । ବସ୍ତୁତଃ, କେତେକ ତତ୍ସମ ଶବ୍ଦର ପ୍ରାକୃତ ରୂପ ହିଁ ଏଥିରେ ଅବିକଳ ବା କିଞ୍ଚିତ୍ ପରିବର୍ତ୍ତିତ ଆକାରରେ ବ୍ୟବହୃତ ହୋଇଛି । ଏହି ଶବ୍ଦଗୁଡ଼ିକର ପ୍ରଚଳନ ସେ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଅବ୍ୟାହତ ଥିଲା । ଆଜିପର୍ଯ୍ୟନ୍ତ ମଧ୍ୟ ଏଗୁଡ଼ିକ ମଧ୍ୟରୁ କେତେକର ପ୍ରଚଳନ ରହିଛି । ତଳେ କେତେଗୁଡ଼ିଏ ପ୍ରାକୃତ ଶବ୍ଦ ଏବଂ ସେଗୁଡ଼ିକର ଉତ୍ପତ୍ତିକ୍ରମ ଦିଆଗଲା ।

ଅଗ୍ଗାସ୍ୱ < ଅଗ୍ଗାଅ < ଅଗ୍ଗାତ
ଅମୀସ୍ୱ < ଅମୀଅ < ଅମୃତ
ଅଦ୍ବୋ (ମୁଣ୍ଡୀ)< ଅଧୋ (ମୁଣ୍ଡୀ)
ଆଦ୍ବର < ଆଦର
ଓଦ୍ବୋ < ଉଭୌ
କଣସ୍ୱ < କଣଅ < କନକ
କସ୍ୱେ—କୃତ > କଦ > କଅ > କସ୍ୱ + ପୂର୍ବାଞ୍ଚଳବାଚକ ବହୁବଚନ ପ୍ରତ୍ୟୟ -ଏ=
କସ୍ୱେ·(କଲେ)

କଲେଶ > କ୍ଲେଶ
ଖାଇଜ < ଖାଇଜ୍ଜ < ଖାଦ୍ୟ
ଗଚ୍ଛଇ < ଗମ୍ୟତେ
ଘାସ୍ୱେ < ଘାଏ < ଘାଦେ < ଘାତେ
ଦ୍ୱବ > ଦ୍ୱପ
ଜଦୂ < ଜରୂ
ଣିଅ < ନିଜ
ନଦ୍ବ < ନଖ
ନରବଇ < ନରବଦ୍ଧ < ନରପଣ୍ଡ
ନସ୍ୱଡ଼େ < ନଅଡ଼େ < ନକଟେ
ପସ୍ୱାନ୍ତ < ପଆନ୍ତ < ପଦାନ୍ତ
ପ୍ରଦ୍ବୁ < ପ୍ରଭୁ
ଭରଦ୍ବ < ଭରଅ < ଭରତ
ଭୂଅ < ଭୂଦ < ଭୂତ
ମଜୁର > ମୟୂର
ମେଦ୍ବ < ମେଘ
ଯାଠି < ଜଟ୍‌ଠି < ଯଷ୍ଟି
ରାଣ୍ଡି < ରାଦ୍ବଆ < ରାଧିକା
ହସ୍ୱଲ < ହଅଲ < ହକଲ
ସୋମସ୍ୱା < ସୋମଆ < ସୋମପା
ଫପୋଢ଼ < ଫପୁଟ
ସୋଦ୍ବଡ଼ < ପୁଭଟ

---

## ଷଟ୍‌ତ୍ରିଂଶ ଅଧ୍ୟାୟ

# ସାରଳା-ମହାଭାରତରେ ବ୍ୟବହୃତ ବର୍ଣ୍ଣସମୂହ

### ସ୍ୱରବର୍ଣ୍ଣ

ଅ, ଆ, ଇ, ଈ, ଉ, ଊ, ଋ, ଏ ଐ, ଓ, ଔ ସ୍ୱରଗୁଡ଼ିକ ଶବ୍ଦର ମୂଳ, ମଧ୍ୟ ତଥା ଅନ୍ତରେ ରହିଅଛି ।

ଅ — ଅଗାଧ, କମଣ୍ଡଳ

ଆ — ଆଖଡ଼ା, କଙ୍କାଳ

ଇ — ଇନ୍ଦ୍ର, ଧରଣି

ଈ — ଈଶାନ୍ୟ, କମ୍ବୋଦୀପ, କାତ୍ୟାୟନୀ

ଉ — ଉକାଣି, କୁହୁଡ଼ି, ମୂରୁ

ଊ — ବଧୂ, ଅମ୍ବୁଭୁକ

ଏ — ଏଡ଼େ, ଉଦେକ

ଐ — ଭୈରୁଳା, ବୈକୁଣ୍ଠ

ଓ — ଓଢ଼ୋ, କପୋତ

ଔ — କୌତୁକ, ପୌର୍ଣ୍ଣମୀ

'ଋ'ର ସ୍ୱତନ୍ତ୍ର ଲୋପ ପାଇଥିଲା । ଏହାର ଉଚ୍ଚାରଣ ଥିଲା 'ରୁ' ଏବଂ 'ରି' । କାରଣ, ପୋଥିମାନଙ୍କରେ ଉକ୍ତ ଧ୍ୱନି ଋଷି, ରୁଷି; ଶୃତ, ଶୃତ; ଋତୁ, ଋତୁ; ଋଷଭ, ରୁଷଭ, ଋଷଭ—ଏହିପରି ଲେଖା ହୋଇଅଛି ।

'ଇ' ଓ 'ଈ'ର ଉଚ୍ଚାରଣରେ ହ୍ରସ୍ୱତାଦୀର୍ଘତାଗତ ପାର୍ଥକ୍ୟ ନ ଥିଲା । କାରଣ, ଖେଳି, ଖେଳୀ; ପୃଥି, ପୃଥୀ; ଧୋତି, ଧୋତୀ; ପାଟି, ପାଟୀ; ଚକ୍ରବୃତି, ଚକ୍ରବୃତୀ—ଏହିପରି ଉଭୟ ପ୍ରକାରେ ଲେଖାଯାଇଅଛି ।

ସେହିପରି 'ଉ' ଓ 'ଊ'ର ଉଚ୍ଚାରଣରେ ମଧ୍ୟ ପ୍ରଭେଦ ନ ଥିଲା । କାରଣ, ବଧୂ, ବଧୁ; ଅନୁକୂଳ, ଅନୁକୁଳ; ଚକ୍ଷୁ, ଚକ୍ଷୂ—ଏହିପରି ଉଭୟ ପ୍ରକାର ବନାନର ଲେଖା ରହିଛି ।

କିନ୍ତୁ 'ଈ' ଓ 'ଊ' ଅପେକ୍ଷା 'ଇ' ଓ 'ଉ'ର ବ୍ୟବହାର ଅଧିକ ।

### ଅନୁନାସିକ ସ୍ୱରଧ୍ୱନି

କେବଳ ଅନୁସ୍ୱାର ଯୋଗରେ ସ୍ୱରଧ୍ୱନିଗୁଡ଼ିକୁ ଅନୁନାସିକ କରାଯାଇଅଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଚନ୍ଦ୍ରବିନ୍ଦୁ ( ँ )ର ପ୍ରୟୋଗ ଦେଖାଯାଏ ନାହିଁ ।

ଅଂ — ଝସ୍ଟଂ, ଜୁଅଂନ୍ତ
ଆଂ — ଉଆଂରୀ
ଇଂ — ପାଇଂ, ଗୋସାଇଂ
ଉଂ — ଯନ୍ଦଂ, ଆଉଂଷିଣ
ଏଂ — ଅଏଂଲା, ହେଏଲଂ

ପୋଥିମାନଙ୍କରେ ଅନୁସ୍ୱାର ବହୁଳଭାବେ ବ୍ୟବହୃତ ହୋଇଛି । ଯଥା—ଯାଇଂ, ଢଅଲ୍ଂ, ଆସିଂ, ବସିଂ, ଶୁଣିବେଂ, ଏଥୁଂଣ, ଯାନ୍ତ୍ରେଣଂ, ଦେଖିବୁଂ, ହୋଇଂଣ, କରୁଂଣ, ଉପୁକାଇଂ, ଉଛଳିଲ୍ଂ, ପୂଜିକଇଂ ଇତ୍ୟାଦ ।

କେତେକ ସ୍ଥଳରେ ଅନୁସ୍ୱାର ସ୍ପୃଷ୍ଟ ବର୍ଣ୍ଣ ପୂର୍ବରୁ ମଧ୍ୟ ରହିଛି । ଯଥା—ଖ୍ରିଷ୍ଟଂଲୁ, ସାହଂତି, ସଂଗତେ, ସଂଘାତ, ଉଂଗ୍ର । ଏଗୁଡ଼ିକ ଖ୍ରିଷ୍ଟଙ୍କୁ, ସାହନ୍ତି, ସଙ୍ଗତେ, ସଙ୍ଘାତ, ଉଗ୍ର ପ୍ରଭୃତିର ଭିନ୍ନ ପ୍ରକାର ଲିଖନ ମାତ୍ର ।

ତେଣୁ ଅନୁସ୍ୱାର ସାହାଯ୍ୟରେ ମଧ୍ୟ ଅନୁନାସିକ ଯୁକ୍ତ ବର୍ଣ୍ଣଗୁଡ଼ିକର ଲିଖନ ପଦ୍ଧତି ପ୍ରଚଳିତ ଥିଲା ବୋଲି ଅନୁମିତ ହୁଏ । ଅବଶ୍ୟ ଙ୍କ, ଙ୍ଖ, ଞ୍ଚ, ଞ୍ଜ, ମ୍ପ ଇତ୍ୟାଦିର ତୁଳନାରେ ଂକ, ଂଖ, ଂଚ, ଂଜ, ଂପ ଇତ୍ୟାଦିର ଲିଖନ କମ ଦେଖାଯାଏ । *

ଅନୁସ୍ୱାର ସ୍ଥାନେ ସ୍ଥାନେ ସ୍ପୃଷ୍ଟ ବର୍ଣ୍ଣର ପରେ ମଧ୍ୟ ରହିଛି । ଯଥା—ଖ୍ରିଷ୍ଟକୁଂ (ଖ୍ରିଷ୍ଟଙ୍କୁ), ମଚଂ (ମଞ୍ଚ) ଇତ୍ୟାଦି । ବର୍ତ୍ତମାନ ଏ ପ୍ରକାର ଲିଖନ ପଦ୍ଧତି ଆଉ ନାହିଁ ।

## ସନ୍ନିକୃଷ୍ଟ ସ୍ୱରଧ୍ୱନି

ନିମ୍ନଲିଖିତ ପ୍ରକାରେ ସ୍ୱରଧ୍ୱନିଗୁଡ଼ିକ ପରସ୍ପର ସନ୍ନିକୃଷ୍ଟ ହୋଇ ରହିଅଛି ।

ଅଅ — ଜମଦଅଗ୍ନି, ପଅଂଶ
ଅଇ — ଅଇଚ, ଦଇତ, ନଇଲା, ସଇନ୍ଧୁ
ଅଉ — କଉଡ଼ି, କଉପୁନ, ଗଉତମୀ
ଅଋ — ମହଋଷି
ଅଏ — ଅଏଂଲା
ଆଅ — ଥାଅ, ପାଅ, ବୃନ୍ଦାଅର୍ଚ୍ଚ
ଆଆ — ଥାଆନ୍ତି
ଆଇ — ଆଇସ୍ୱ, ବାଇଶି, ଭାଇ
ଅଈ — ଆଈ, ମାହାମାଈ
ଆଉ — ଆଉ, ଯାଉ, ନାହୁକା, ଦେଶାନ୍ତର

---

* ପ୍ରାକୃତରେ ମଧ୍ୟ ଅନୁନାସିକ ଯୁକ୍ତବର୍ଣ୍ଣ ପରିବର୍ତ୍ତେ ଅନୁସ୍ୱାର + ଏକକ ବର୍ଣ୍ଣ ଲେଖିବାର ପ୍ରବୃତ୍ତି ଥିଲା । ଯଥା—ଅଙ୍କ > ଅଂକ, କାଞ୍ଚନ > କାଂଚଣ, ସଞ୍ଚାର > ସଂଚର, କଣ୍ଠ > କଂଠ, ଦଣ୍ଡ > ଦଂଡ, ମନ୍ଦ > ମଂଦ, କମ୍ପ > କଂପ ଇତ୍ୟାଦି ।

ଆଏ — ଘାଏ, ପଗ୍ଏ

ଇଅ — ଦୁଢଅ, ଅଢଅନ୍ତ

ଇଆ — ଭିଆଣ, ହିଆଳ, ଆଟିଆଣି

ଇଉ — ସିଉକାର

ଅଇ — ଯାଇଲେ

ଅଉ — ଯାଉ

ଉଅ — ହୁଅ, ଛୁଅଂନ୍ତୁ

ଉଆ — ଗୁଆ, ଦୁଆର, କୁଢୁଆ, ଝାଟୁଆ

ଉଇ — ଦୁଇ, ଛୁଇଂଲୁ

ଏଇ — ଦେଇ, ଡେଇଂ

ଏଅ — ଦେଅ

ଏଉ — ଛେଉଣି, ଲେଉଟି

ଓଅ — ହୋଅସି

ଓଇ — ଚୋଇନ୍ତା, ଏକୋଇଶି

ଓଉ — ହୋଉଛୁ

ଇଅଇ — ଦିଅଇ

ଇଆଇ — ଭିଆଇଲେ, ପାରିଆଇଂ

ଅଆଇ — ଯାଆଇବେ

ଉଅଇ — ହୁଅଇ

ଉଆଇ — ଜୁଆଇଂ

ଏଇଅ — ଦେଇଅଛୁ

ଏଉଅ — ଦେଉଅଛୁ

ଓଅଇ — ହୋଅଇ

ଓଇଅ — ହୋଇଅଛୁ

ଓଉଅ — ହୋଉଅଛୁ

## ସପ୍ତତ୍ରିଂଶ ଅଧ୍ୟାୟ

### ବ୍ୟଞ୍ଜନବର୍ଣ୍ଣ

ନିମ୍ନଲିଖିତ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ବ୍ୟବହୃତ ହୋଇଅଛୁ ।

| | | | | |
|---|---|---|---|---|
| କ | ଖ | ଗ | ଘ | |
| ଚ | ଛ | ଜ | ଝ | |
| ଟ | ଠ | ଡ | ଢ | ଣ |

ତ ଥ ଦ ଧ ନ

ପ ଫ ବ ଭ ମ

ଯ ୟ ର ଲ ଳ ଶ ଷ ସ ହ ।

'ଙ' ଏବଂ 'ଞ' ସ୍ୱତନ୍ତ୍ର ବର୍ଣ୍ଣରୂପେ କୁତ୍ରାପି ବ୍ୟବହୃତ ହୋଇନାହିଁ । କେବଳ ଅନୁନାସିକ ଯୁକ୍ତ ବର୍ଣ୍ଣରେ ଏ ଦୁଇଟିର ଲିପି ସତ୍ତ୍ୱା ଦେଖାଯାଏ । ଯଥା—କଙ୍କଣି, ସଙ୍ଘରଣ, ମଞ୍ଚା, ଯଜ୍ଞ ଇତ୍ୟାଦି । 'ଙ୍କ' ଓ 'ଙ୍ଘ'ରେ 'ଂ' ଏହି ଅଂଶଟି 'ଙ' ପ୍ରତୀକ । ସେହିପରି 'ଞ୍ଚ'ରେ 'ଓ' ଏହି ଅଂଶଟି 'ଞ' ପ୍ରତୀକ । 'ଜ୍ଞ' ରେ 'ଞ' ସ୍ପଷ୍ଟରୂପେ ରହିଛି ।

'ଜ' ଓ 'ଯ' ମଧ୍ୟରେ ଉଚ୍ଚାରଣଗତ ପାର୍ଥକ୍ୟ ନ ଥିଲା । କାରଣ, ଯାଜନଗ୍ର, ଯାଯନଗ୍ର; ଯେ, ଜେ; ଗ୍ରଜା, ଗ୍ରଯା; ବଜେ, ବଯେ—ଏହିପରି ଉଭୟ ପ୍ରକାରେ ଲେଖା ରହିଅଛି । କିନ୍ତୁ 'ଯ' ଅପେକ୍ଷା 'ଜ' ଅଧିକ ସ୍ଥାନରେ ବ୍ୟବହୃତ ହୋଇଅଛି ।

ଏକକ ଅନ୍ତଃସ୍ଥ 'ୱ' ନିମନ୍ତେ କୌଣସି ସ୍ୱତନ୍ତ୍ର ଲିପି ବ୍ୟବହୃତ ହୋଇନାହିଁ । ତେଣୁ ଏହି ଧ୍ୱନି ନଥିଲା ବୋଲି ଜଣାଯାଏ ।*

'ଶ' ଓ 'ଷ'ର ଉଚ୍ଚାରଣ 'ସ' ପରି ଥିଲା । କାରଣ, ଅନେକ ସ୍ଥଳରେ 'ଶ' ଓ 'ଷ' ପରିବର୍ତ୍ତେ 'ସ' ବ୍ୟବହୃତ ହୋଇଛି । ଯଥା—ଶାସ୍ୱେନ୍ଦ୍ରନ୍, ସାସ୍ୱେନ୍ଦ୍ରନ୍; ପ୍ରଶୁଗ୍ରମ, ପ୍ରସୁଗ୍ରମ; ଦ୍ରଶନ, ଦ୍ରସନ; ଷାଠି, ସାଠି; ଶଷଭି, ଶସଭି ଇତ୍ୟାଦି । ପକ୍ଷାନ୍ତରେ 'ସ' ସ୍ଥାନରେ ମଧ୍ୟ 'ଶ' ଓ 'ଷ' ବ୍ୟବହୃତ ହୋଇଅଛି । ଯଥା—ସ୍ନାହାନ, ଶ୍ରାହାନ; ଶସ୍ତ୍ର, ଶଶ୍ତ୍ର; ମହାସ୍ୱଗ୍ରୀ, ମହାଷ୍ୱଗ୍ରୀ; ବରସ, ବରଷ ଇତ୍ୟାଦି ।

'ଶ'ର ଉଚ୍ଚାରଣ ବୋଧହୁଏ କେତେକ ଅଞ୍ଚଳରେ 'ଶ୍ୟ'ପରି ଏବଂ କେତେକ ଅଞ୍ଚଳରେ 'ଶ୍ୱ' ପରି ଥିଲା । କାରଣ, ଶାନ୍ତ, ଶରୀର ପ୍ରଭୃତି ଶବ୍ଦ ଶ୍ୟାନ୍ତ, ଶ୍ୟରୀର, ଶ୍ୱରୀର—ଏହିପରି ଲେଖାଯାଇ ଅଛି । ଅବଶ୍ୟ 'ସ' ମଧ୍ୟ କେତେକ ସ୍ଥଳରେ 'ସ୍ୱ' ହୋଇଛି । ଯଥା— ସତ୍ତ୍ୱା, ସ୍ୱତ୍ତ୍ୱା ।

ଦ୍ୱିତ୍ୱବୃତ୍ତି ବ୍ୟଞ୍ଜନଗୁଡ଼ିକ (ନ୍ନ, ଦ୍ଧ, ତ୍ତ, କ୍କ ଇତ୍ୟାଦି) ସମ୍ଭବତଃ ଏକକ ବର୍ଣ୍ଣ ପରି ଉଚ୍ଚାରିତ ହେଉଥିଲା । କାରଣ, ଅନେକ ସ୍ଥଳରେ ପ୍ରସନ୍ନ > ପ୍ରସନ, ଚତ୍ତ୍ୱ > ଚତ, ସିଦ୍ଧି > ସିଧି, ମୂର୍ଚ୍ଛା > ମୂର୍ଚ୍ଚା—ଏହିପରି ଦ୍ୱିତ୍ୱବୃତ୍ତ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ଏକକ ବର୍ଣ୍ଣରୂପେ ଲେଖାଯାଇଅଛି ।

'ଜ୍ଞ'ର ଉଚ୍ଚାରଣ ଥିଲା 'ଗ୍ୟଂ' । କାରଣ, 'ଜ୍ଞ' ହବହ 'ଗ୍ୟଂ' ଆକୃତିରେ ଲେଖା ହୋଇଛି । ଯଥା—

ଅବଜ୍ଞା > ଅବଗ୍ୟାଂ

---

* ଓଡ଼ିଆରେ ଯୁକ୍ତବର୍ଣ୍ଣର ଅନ୍ତର୍ଗତ ଅନ୍ତଃସ୍ଥ 'ବ'ର ସ୍ୱତନ୍ତ୍ର ଉଚ୍ଚାରଣ ରହିଛି । ଯଥା—ଧ୍ୱନି, ଶ୍ୱାନ । କିନ୍ତୁ ଏକକ ବର୍ଣ୍ଣ ହିସାବରେ ଏହାର ଉଚ୍ଚାରଣ ବର୍ଗ୍ୟ 'ବ' ପରି । ଯଥା—ବନ୍ୟା, ବନ, ବଚନ, ବକୁଳ ।

ଅଙ୍କ > ଅଗାଁ
ସଙ୍କ > ସଙ୍ଗାଁ
ଭଙ୍ଗ ବା ଅଭଙ୍ଗ > ଭଗାଁ *

## ବ୍ୟଞ୍ଜନବର୍ଣ୍ଣଗୁଡ଼ିକର ପ୍ରୟୋଗ

ଏଗୁଡ଼ିକ ଶବ୍ଦର ମୂଳ ଓ ମଧ୍ୟରେ ରହିଅଛି ।

କ—କକଡ଼ା, ଗୋଲକ
ଖ—ଖଲିତ, ପଖା
ଗ—ଗରୁ, ଜଗନ୍ନାଥ
ଘ—ଘଣ୍ଟ, ଘର୍ଘର
ଚ—ଚନ୍ଦ୍ର, ନାରାଚ
ଛ—ଛଡ଼, ଭୁଛନା
ଜ—ଜାଲା, ବଜେ
ଝ—ଝର, ମଝା
ଟ—ଟମକ, ଝାଟୁଆ
ଠ—ଥାଠ, ଠାବ
ଡ—ଡଗର, ଛଡ଼
ଢ—ଢଲଢ଼ଲ, ପଢ଼ନ୍ତ
ଣ—ଶୁଣେନ୍ତା, ମଣ୍ଡି
(ଶବ୍ଦର ମୂଳରେ 'ଣ' ନାହିଁ)
ତ—ତାଡ଼, ତଡ଼ତ
ଥ—ଥାଠ, ମୂଥ

---

* ସଂସ୍କୃତରେ 'ଜ୍ଞ୍' ଧ୍ୱନି ଥିଲା 'ଜ୍' ଓ 'ଞ୍'ର ମିଶ୍ରଣ । ଏହି ଧ୍ୱନି ପାଲି, ପ୍ରାକୃତ କାଳରୁ ବିକୃତପ୍ରାପ୍ତ ହେଲାଣି । ପାଲିରେ ଏହାର ଉଚ୍ଚାରଣ ଥିଲା 'ଞ୍' । ଯଥା—ଜ୍ଞାନମ୍ > ଞାନଂ, ଜ୍ଞାତ୍ୱା > ଞାତ୍ୱ । ଶବ୍ଦର ମଧ୍ୟ ବା ଅନ୍ତ୍ୟସ୍ଥଳରେ ଏହା ଦ୍ୱିଗୁଣିତ ହେଉଥିଲା । ଯଥା— ରାଜ୍ଞା> ରଞ୍ଞା, ବିଜ୍ଞପ୍ତି > ବିଞ୍ଞତ୍ତି । ପ୍ରାକୃତରେ 'ଜ୍ଞ୍' ର ଉଚ୍ଚାରଣ ଥିଲା 'ଣ୍' । ଏହି 'ଣ' ଶବ୍ଦର ମଧ୍ୟ ବା ଅନ୍ତ୍ୟସ୍ଥଳରେ ଦ୍ୱିଗୁଣିତ ହେଉଥିଲା । ଯଥା—ଜ୍ଞାନମ୍ > ଣାଣଂ, ବିଜ୍ଞାନମ୍ > ବିଣ୍ଣାଣଂ ।

ବର୍ତ୍ତମାନ ଓଡ଼ିଆରେ 'ଜ୍ଞ'ର ଉଚ୍ଚାରଣ 'ଗ୍ୟଁ' । ଯଥା—ଜ୍ଞ > ଗ୍ୟଁ । ମାତ୍ର ଲେଖାରେ 'ଜ୍ଞ' ପରିବର୍ତ୍ତେ 'ଗ୍ୟଁ' ସ୍ୱୀକୃତ ହୋଇନାହିଁ ।

ଦ — ଦାନ୍ତ, ଅଗାଦ
ଧ — ଧୋଇ, ସିଧ୍
ନ — ନାହା, ନନ୍ଦମ
ପ — ପଖା, ପ୍ରାପତ
ଫ — ଫେରୁ, ବାର୍ଫି
ବ — ବସ୍ତର, ବଲବନ୍ତା
ଭ — ଭଡ଼ା, ବେଭର
ମ — ମହା. ମନୁମଥ
ଯ — ଯାଠି, ଯାଯନଗ୍ର
ୟ — ନୟେଣି, ସ୍ୱୟେ
(ଶବ୍ଦର ମୂଳରେ 'ୟ' ନାହିଁ)
ର — ରାଖ, ଶାକର
ଳ — ଅଚଳ, ବଲବନ୍ତା
(ଶବ୍ଦର ମୂଳରେ 'ଳ' ନାହିଁ)
ଲ — ଲଛୀ, ବେଲ
ଶ — ଶଯ, ଶମଶାନ
ଷ — ଷାଠି, ଶୋଷ
ସ — ସାନ, ସୁଦଞ୍ଚ
ହ — ହଥଲ, ହୁକହୁଲ

# ଅଷ୍ଟାବିଂଶ ଅଧ୍ୟାୟ

## ଧ୍ୱନି ପରିବର୍ତ୍ତନ

ସାଲୋ ମହାଭାରତରେ ସଂସ୍କୃତ ଓ ସଂସ୍କୃତରୁ ବର୍ଦ୍ଧିତ ଶବ୍ଦାବଳୀର ବ୍ୟବହାର ପ୍ରଚୁର । ବହୁ ସଂସ୍କୃତ ଶବ୍ଦର ଦୁଇମାତ୍ର ଧ୍ୱନି ପରିବର୍ତ୍ତନ ଘଟିଅଛି । ଯଥା—ଯୋଗିନୀ > ଯୋଗ୍ନୀ, ମଣ୍ଡପ > ମଣ୍ଡୋପ, ଗଣେଷ୍ଠ > ଗଣେଷ୍ଟ, ଶରୀର > ଶରୀର, ପାତକ > ପାତେକ, ସତ୍ୟ > ସତ, ବୃହସ୍ପତି > ବୃହସ୍ପତି ଇତ୍ୟାଦ । ଏଗୁଡ଼ିକୁ 'ପ୍ରାୟ ତତ୍ସମ' ବା 'ଅର୍ଦ୍ଧ ତତ୍ସମ' କୁହାଯାଇପାରେ । ପୁନଶ୍ଚ, ଅନେକ ଶବ୍ଦର ପରିବର୍ତ୍ତନ ଅପେକ୍ଷାକୃତ ଅଧିକ ହୋଇଛି । ଯଥା—ମଦନ > ମୟାନ, ଶାଖୋଟକ > ସାହାଡ଼ା, ଯଷ୍ଟି > ଯାଠି, ଆମଲକ > ଅଁଳା, ପତ୍ତନକ > ପାଟଣା ଇତ୍ୟାଦ । ଏଗୁଡ଼ିକ ତଦ୍ଭବ ଶ୍ରେଣୀର ଅନ୍ତର୍ଗତ ।

ତଦ୍‌ଭବ ଶବ୍ଦଗୁଡ଼ିକ ମ: ଭା: ଆ: ସ୍ତର ଦେଇ ଓଡ଼ିଆକୁ ଆସିଅଛି । ତେଣୁ ସେଗୁଡ଼ିକ ପ୍ରାୟ ଭଲ ସ୍ତରର ପରିବର୍ତ୍ତନ ପ୍ରକ୍ରିୟା ବହନ କରିଅଛି । କିନ୍ତୁ ଅର୍ଦ୍ଧ-ତତ୍ସମ ଶବ୍ଦଗୁଡ଼ିକ ସିଧାସଳଖ ସଂସ୍କୃତରୁ ଅପଭ୍ରଷ୍ଟ । ତେଣୁ ମ: ଭା: ଆ:ର ପରିବର୍ତ୍ତନପ୍ରକ୍ରିୟା ସେଗୁଡ଼ିକ ବହନ କରନାହିଁ । ଉଦାହରଣ ସ୍ୱରୂପ, 'ଯୋଗିନ' ଓ 'ଯତ୍ନ' ଶବ୍ଦ ଦୁଇଟି ମ: ଭା: ଆ: ସ୍ତର ଦେଇ ଆସିଥିଲେ 'ଜୋଇଣୀ' ଓ 'ଯତ' ବା 'ଯାତ' ହୋଇଥାଆନ୍ତା । ମାତ୍ର ଏ ଦୁଇଟି ସିଧାସଳଖ ସଂସ୍କୃତରୁ ଅପଭ୍ରଷ୍ଟ ହୋଇଥିବାରୁ 'ଯୋଗ୍ନୀ' ଓ 'ଯତନ' ହୋଇଅଛି ।

ପ୍ରକୃତରେ, ଓଡ଼ିଆରେ (ଆଲୋଚ୍ୟ ଗ୍ରନ୍ଥରେ ମଧ୍ୟ) ସଂସ୍କୃତ ଓ ସଂସ୍କୃତରୁ ସିଧାସଳଖ ଅପଭ୍ରଷ୍ଟ ଶବ୍ଦମାନଙ୍କର ସଂଖ୍ୟା ବେଶି । ଓଡ଼ିଆ ଭାଷାର ରକ୍ଷଣଶୀଳତାର ଏହା ଏକ ପ୍ରଧାନ ନିଦର୍ଶନ ।

କେତେକ ତତ୍ସମ ଓ ସେଗୁଡ଼ିକର ଅର୍ଦ୍ଧ-ତତ୍ସମ ଉଭୟର ବ୍ୟବହାର ରହିଛି । ଯଥା—ମାଧବ, ମାଧେବ; ସୁବେଶ, ସୁବେଶ; ନୃପତି, ନୃପତି; କୁବେର, କୋବେର; କାମିନୀ, କାମେନୀ; ସିଦ୍ଧ, ସିଦ୍ଧ; ତତ୍ତ୍ୱ, ତତ୍ତ; ମୂନିବର, ମୁନିମ୍ବର; ଶରୀର, ଶ୍ରୀର, ଶ୍ୟରୀର ଇତ୍ୟାଦି ।

କେତେକ ତତ୍ସମ ଓ ସେଗୁଡ଼ିକର ତଦ୍‌ଭବ, ଉଭୟର ବ୍ୟବହାର ରହିଛି । ଯଥା ଚତୁର୍ଦ୍ଦଶ, ଚଉଦ; ଅଧାନ, ଭିଅଣ; ମହାତ୍ମା, ମାହାତମା; ପୁଷ୍ପ, ପୋସ୍ପୋ; ମଦନ, ମସ୍ତାଣ ଇତ୍ୟାଦି ।

ପୁନଶ୍ଚ କେତେକ ତତ୍ସମ ଶବ୍ଦର ଅର୍ଦ୍ଧ-ତତ୍ସମ ଓ ତଦ୍‌ଭବ, ଉଭୟ ବ୍ୟବହୃତ ହୋଇଛି । ଯଥା—ମତ୍ସ୍ୟ > ମସ୍ତ୍ର, ମାଛ; ଶ୍ରଦ୍ଧା > ଶ୍ରଧା, ଶରଧା ଇତ୍ୟାଦି ।

ଏଠାରେ ପ୍ରାୟ-ତତ୍ସମ ବା ଅର୍ଦ୍ଧ-ତତ୍ସମ ଏବଂ ତଦ୍‌ଭବ, ଉଭୟ ଶ୍ରେଣୀର ଶବ୍ଦଗୁଡ଼ିକର ପରିବର୍ତ୍ତନ ପ୍ରକ୍ରିୟା ପ୍ରଦର୍ଶିତ ହେଲା ।

## ଊନଚତ୍ୱାରିଂଶ ଅଧ୍ୟାୟ

### ସ୍ୱରଧ୍ୱନିର ପରିବର୍ତ୍ତନ

(୧) ସ୍ୱର ସମୀଭବନ

(କ) ପୂର୍ବଗାମୀ ସମୀଭବନ—

| | |
|---|---|
| ସାହସ > ସାହାସ | ପ୍ରତିଜ୍ଞା > ପ୍ରତିଗ୍ୟା' |
| ଆପଦ > ଆପାଦ | କମଣ୍ଡଳୁ > କମଣ୍ଡଳ |
| ବାହନ > ବାହାନ | ଅଭୀଷ୍ଟ > ଅଭିଷ୍ଟି |
| ବଳାତ୍କାର > ବଳତ୍କାର | କୌପୀନ > କଉପୁନ |
| ବୃତ୍ତାନ୍ତ > ବୃତନ୍ତ | (କୌ > କଉ, ପୀ > ପୁ) |

ଉପରି > ଉପର  ପଞ୍ଚାନନ > ପଞ୍ଚାନନୁ
ପୃଷ୍ଠ > ପିଠି
(ପୃ > ପି ହେବାରୁ ପରବର୍ତ୍ତୀ ଅ > ଇ ହୋଇଛି)
ଅନୁରୁଦ୍ଧ > ଅନୁଗୃଦ୍ଧ (ଅନୁଗୁଦ୍ଧ)

(ଖ) ପଶ୍ଚାଦ୍‌ଗାମୀ ସମୀଭବନ—

ସଗ୍ରାମ — ସାଂଗ୍ରାମ  ମହାମୁନି — ମାହାମୁନି
ସଙ୍ଘ — ସାଗ୍ୟାଂ  କୁମାର — କୁମର
ପଦାନ୍ତ — ପ'ଡାନ୍ତ  ଊନ — ଅଣ
ମହାରାଜ — ମାହାରାଜ  ଏକାଦଶୀ — ଏକାଦଶି
ଗାୟତ୍ରୀ — ଗାଇତ୍ରୀ  ଆମଳକ — ଅଏଁଳା

(୨) ବିଷମୀଭବନ

(କ) ଅ > ଏ—

ସନ୍ନିହିତ ଦୁଇଟି ଅକାରାନ୍ତ ଅକ୍ଷର ମଧ୍ୟରୁ ପ୍ରଥମଟି ଏକାରାନ୍ତ ହୋଇଛି—

ମାଧବ > ମାଧେବ  ଅନ୍ଧକ > ଅନ୍ଧେକ
ନାଟକ > ନାଟେକ  ଉଦକ > ଉଦେକ
ପାତକ > ପାତେକ  ଯୁଗାନ୍ତକ > ଯୁଗାନ୍ତେକ
ଚମ୍ପକ > ଚମ୍ପେକ  (ଦକ୍ଷିଣାଟେଣ୍ଡିକ > )
ତାଣ୍ଡବ > ତାଣ୍ଡେବ  ଡାହାଣାବ୍ରତକ > ଡାହାଣାବ୍ରତେକ
ସାଗର > ସାଗେର  ସୁନ୍ଦର > ସୁନ୍ଦେର, ସ୍ତ୍ରୀ-ସୁନ୍ଦେରୀ
ସାଧବ > ସାଧେବ, ସ୍ତ୍ରୀ-ସାଧେବୀ

(ଖ) ପ୍ରାୟ ସର୍ବତ୍ର ୟ > ୟେ (ଏ) ହୋଇଛି—

ଜୟ > ଜୟେ  ରସାୟନ > ରସାୟେନ
ଭୟ > ଭୟେ  ନାରାୟଣ > ନାରାୟେଣ
ଲୟ > ଲୟେ  ସ୍ୱୟମ୍ବର > ସୟେମ୍ବର
ବିନୟ > ବିନୟେ  ଦ୍ରବ୍ୟ > ଦ୍ରବେ

(ଗ) ଅ > ଓ—

ସନ୍ନିହିତ ଦୁଇଟି ଅକାରାନ୍ତ ଅକ୍ଷର ମଧ୍ୟରୁ ପ୍ରଥମଟି ଓକାରାନ୍ତ ମଧ୍ୟ ହୋଇଛି ।—

ମଣ୍ଡପ > ମଣ୍ଡୋପ  ଗୌରବ > ଗଉରେବ

---

ପୃଷ୍ଠ > ପିଟ୍‌ଠ > ପିଠ > ପିଠି, ଗାୟତ୍ରୀ > ଗାୟତ୍ରୀ > ଗାଇତ୍ରୀ > ଗାଇତ୍ରୀ, ଆମଳକ > *ଅମଳକ > ଅଆଁଳା > ଅଏଁଳା ।

ହୃପସ୍ଥ > ହୃପୋସ୍ତ
ଭୈରବ > ଭଇରୋବ
କୌଣପ > କଉଣୋପ
ଆଚମନ > ଆଞ୍ଚୋବନ

(ଘ) ଇ > ଏ—

ସନ୍ନିହିତ ଦୁଇଟି ଇକାରାନ୍ତ ଅକ୍ଷରମଧ୍ୟରୁ ପ୍ରଥମଟି ଏକାରାନ୍ତ ହୋଇଛି—
ମାଳିନୀ > ମାଳେନୀ
ସ୍ୱଢନୀ > ସ୍ୱଢେନୀ
କାମିନୀ > କାମେନୀ
ଭଗିନୀ > ଭଣ୍ଣେଣି, ବହେଣୀ
ରୋହିଣୀ > ରୋହେଣି

(ଙ) ଅ > ଆ—

ସନ୍ନିହିତ ଦୁଇଟି ଅକାରାନ୍ତ ଅକ୍ଷରମଧ୍ୟରୁ ଗୋଟିଏ ଆକାରାନ୍ତ ହୋଇଛି—
ପଞ୍ଚ > ପାଞ୍ଚ
ଅପର > ଆବର
ସଙ୍ଗ > ସାଙ୍ଗ
ମଦନ > ମଦ୍ୱାଣ
ସଙ୍ଗତ > ସଂଘାତ
ଅନୁପମ > ଅନୁପାମ
ବୃଷବଳ > ବୃଷାବଳ

(ଚ) ଆ > ଅ—

ସନ୍ନିହିତ ଦୁଇଟି ଆକାରାନ୍ତ ଅକ୍ଷର ମଧ୍ୟରୁ ଗୋଟି ଅକାରାନ୍ତ ହୋଇଛି—
ମାଳା > ମାଳ
ଆଶା > ଆଶ
ଶାଳା > ଶାଳ
ଭାଷା > ଭାଷ

(ଛ) ଉ > ଅ—

ସନ୍ନିହିତ ଦୁଇଟି ଉକାରାନ୍ତ ଅକ୍ଷର ମଧ୍ୟରୁ ଗୋଟିଏ ଅକାରାନ୍ତ ହୋଇଛି—
ଗୁରୁ > ଗରୁ
ଅନୁରୂପ > ଅନରୂପ
ଅନୁକୂଳ > ଅନକୂଳ
ପୁରୁରବା > ପୁରରବା

(ଜ) ଇ > ଅ—

ସନ୍ନିହିତ ଦୁଇଟି ଇକାରାନ୍ତ ଅକ୍ଷର ମଧ୍ୟରୁ ପ୍ରଥମଟି ଆକାରାନ୍ତ ହୋଇଛି—
ଅଶ୍ୱିନୀ > ଅଶ୍ୱନୀ
ସୀମନ୍ତିନୀ > ସିମନ୍ତନୀ
ଅନମିତ୍ର > ଅନମିତ
ଗୋସ୍ୱାମିନୀ > ଗୋସାମଣୀ

---

ସାଗର > ସାଅର > ସାହର > ସାହେର, ପ୍ରତ୍ୟୟ > ପ୍ରତ୍ୟେୟ > ପ୍ରତଏ > ପ୍ରତେ । ପୋଥିମାନଙ୍କରେ 'ୟେ' ସ୍ଥାନରେ 'ଏ' ମଧ୍ୟ ଲେଖା ହୋଇଛି । ଯଥା—ଜଏ, ଭଏ (ଜୟେ, ଭୟେ), ଇତ୍ୟାଦି ।

(୯) ଅ > ଉ—

ସନ୍ନିହିତ ଦୁଇଟି ଅକାରାନ୍ତ ଅକ୍ଷର ମଧ୍ୟରୁ ପ୍ରଥମଟି ଉକାରାନ୍ତ ହୋଇଛି—

ଅନବରତ > ଅନୁବ୍ରତ    ଘ୍ରମ (ଘର୍ମ) > ଘୂମ (ଘ୍ରୁମ)

ସାର୍ଥକ > ସାର୍ଥୁକ

(ଞ) ବିଷମୀଭବନର କେତେକ ବିକ୍ଷିପ୍ତ ଉଦାହରଣ—

ନିସ୍ୱନ > ସହ୍ନନ    ଜାମାତୃ > ଜୁଆଇଁ

କୁତୂହଳ > କୁତୋହଳ    ଭାଣ୍ଡାଗାର > ଭଣ୍ଡାର

(୩) ଆଦ୍ୟ ଅକ୍ଷରବର୍ତ୍ତୀ ଅ > ଆ—

ଅଧିପତ୍ର > ଆଧିପଠ    ସଦୃଶ > ସାଦ୍ରିଶ

ଅଙ୍କୁର > ଆଙ୍କୋର    ବଂଶୀ > ବାସ୍ୱଂଶି

ଅହ୍ୱୋ > ଆହ୍ୱୋ

(୪) ଆଦ୍ୟ ଅକ୍ଷରବର୍ତ୍ତୀ ଅ > ଏ—

କ୍ଷଣିସ୍ଥ > କ୍ଷେଣି    ଶଯ୍ୟା > ଶେଯ୍ୟା (ପ୍ରା: ସେଜ୍ଜା)

କ୍ଷମା > କ୍ଷେମା    ବ୍ୟବହାର > ବେଭାର

(୫) ମଧ୍ୟ ଅକ୍ଷରବର୍ତ୍ତୀ ଉ > ଇ—

ମନୁଷ୍ୟ > ମନିଷ

ଆୟୁଷ > ଆଇଷ୍ୟ    ବାଲୁକା > ବାଲି

(୬) ଉ > ଓ—

(କ) ଆଦ୍ୟ ଅକ୍ଷରବର୍ତ୍ତୀ ଉ > ଓ—

କୁଷ୍ଠ > କୋଷ୍ଠ    ଦୁହିତା > ଦୋହିତା

କୁନ୍ତୀ > କୋନ୍ତା, କୋଇନ୍ତା    କୁବେର > କୋବେର

(ଖ) ମଧ୍ୟ ଅକ୍ଷରବର୍ତ୍ତୀ ଉ > ଓ—

ସମୁଦ୍ର > ସମୋଦ୍ର    ଜମ୍ବୁଦ୍ୱୀପ > ଜମ୍ବୋଦୀପ

ଶାର୍ଦ୍ଦୂଳ > ଶାର୍ଦ୍ଦୋଳ    ଆକୁଞ୍ଚିତ > ଆକୋଞ୍ଚିତ

ସମ୍ପୂର୍ଣ୍ଣ > ସମ୍ପୋର୍ଣ୍ଣ

---

ଭଗିନୀ > ଭଇଣୀ > ଭଏଣୀ > ଭୱେଣୀ, ବହେଣି

ମଦନ > ମଅଣ > ମୱଣ > ମୱାଣ

ଅପର > ଅବର > ଆବର

ଜାମାତୃ > ଜାମାଇଁ > ଜୁଆଇଁ

ଅନବରତ > ଅନୁବରତ > ଅନୁବ୍ରତ

ଭାଣ୍ଡାଗାର > ଭାଣ୍ଡାଆର > ଭଣ୍ଡାର

(୭) ଓ > ଉ—

ସଙ୍କୋଚ > ସଙ୍କୁଚ    ଯୋଜନ > ଯୋଅଣ > ଯୋଣ > ଯୁଣ

କପୋଷ > କହ୍ନଂସ    ମହୋଦଧି > ମହୁଦଧି

ମହୌଷଧି > ମହୋଷଧି—ମହୁଷୋଧି ।

(୮) (କ) ଋ > ରି—

ଶୃଗାଳ—ଶ୍ରିଗାଳ    ଋଷଭ > ରିଷଭ

ଋରୁ—ଶରୁ    ତୃପ୍ତି > ତ୍ରିପୁତ

ଋରୁପର୍ଣ୍ଣ—ଶରୁପନ    ସଦୃଶ > ସାଦ୍ରିଶ

(ଖ) ଋ > ଇ—

ପୃଷ୍ଠ—ପିଠି    ବୃଶ୍ଚିକ—ବିଚ୍ଛା

ନପ୍ତୃ—ନାତି    ଜାମାତୃ—ଜୁଆଇଁ

ଭ୍ରାତୃ—ଭାଇ

(୯) ସନ୍ଧ୍ୟକ୍ଷର ଦୁଇ ବା ଏକ ସମାନାକ୍ଷରରେ ପରିଣତ—

(କ) ଐ > ଅଇ—

ଚୈତନ୍ୟ—ଚଇତନ    ବୈବସ୍ୱତ—ବଇବସ୍ୱତ

ବୈଶାଖ—ବଇଶାଖ    ଭୈରବ—ଭଇରୋବ

ଶୈଳ—ଶଇଳ    ଦୈନ୍ୟ—ଦଇନ

କୈଳାସ—କଇଳାସ    ମୈତ୍ର—ମଇତ୍ର

(ଖ) ଐ > ଇ—

ଐଶାନ୍ୟ—ଏଶାନ୍ୟ—ଈଶାନ୍ୟ

(ଗ) ଐ > ଅ—

ସୈନ୍ୟ—ସନ୍ୟ    ବୈଶ୍ୟ—ବଶ୍ୟ

ଦୈତ୍ୟ—ଦତ୍ୟ

(ଘ) ଔ > ଅଉ—

କୌସ୍ତୁଭ—କଉସ୍ତୁଭ    ଗୌରବ—ଗଉରୋବ

କୌପୀନ—କଉପୁନ    ଯୌବନ—ଯଉବନ

---

ବଂଶୀ—ବାଂଶୀ— * ବାଅଁଶି—ବାଏଁଶି—ବାଉଁଶି

ବାଲୁକା—ବାଲୁଆ—ବାଲିଆ—ବାଲି ।

ବୃଶ୍ଚିକ—ବିଚ୍ଛିଅ—ବିଚ୍ଛା

ନପ୍ତୃ—ନତ୍ତି—ନାତି

ବୌଦ୍ଧିକ — ବଉଦ୍ଧିକ | ଶୌଚ — ଶଉଚ
ଯୌତୁକ — ଯଉତୁକ | ମୌଳ — ମଉଳ

(ଙ) ଔ > ଆଉ—

ନୌକା — ନାଉକା

(ଚ) ଔ > ଏଉ—

କ୍ଷୌଣୀ — କ୍ଷେଉଣୀ — ଛେଉଣୀ

(୧୦) ସ୍ୱର ପରିବର୍ତ୍ତନର କେତେକ ବିକ୍ଷିପ୍ତ ଉଦାହରଣ

ଦୂର୍ବା—ଦୂବ | ମିଥ୍ୟା—ମିଛ

(କ) ଅନ୍ତ୍ୟ ଅକ୍ଷରବର୍ତ୍ତୀ ଆ = ଅ

ବେଲା — ବେଲ

(ଖ) ଆ > ଉ—

ମଗ୍ଧଲ — ମରୁଲ | ବନା — ବନୁ

(ଗ) ଇ > ଉ—

ଧାର୍ମିକ — ଧାରୁକ୍ୟ | ବର୍ଦ୍ଧିତ — ବର୍ଦ୍ଧୁତ

(ଘ) ଇ > ଏ—

ନାୟିକା — ନାୟେକା | ଶର୍ମିଷ୍ଠା — ଶରମିଷ୍ଠା — ଶରମେଷ୍ଠା

(ଙ) ଏ > ଇ—

ମାହେନ୍ଦ୍ର — ମାହିନ୍ଦ୍ର

(୧୧) ସ୍ୱରଭକ୍ତି

ଯୁକ୍ତବ୍ୟଞ୍ଜନ କୌଣସି ଆଗତ ସ୍ୱରଦ୍ୱାରା ବିଭକ୍ତ ହୋଇଅଛି । ସେହି ଆଗତ ସ୍ୱରର ସ୍ୱରୂପ ନିର୍ଦ୍ଧାରଣ କରିଛି ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ୱର । ଅର୍ଥାତ୍ ପୂର୍ବରେ ବା ପରେ ଅ ଥିଲେ ଆଗତ ସ୍ୱର ଅ ହୋଇଛି । ମୂର୍ବରେ ବା ପରେ ଇ ଥିଲେ ଆଗତ ସ୍ୱର ଇ ହୋଇଅଛି ଇତ୍ୟାଦ ।

(କ) ପୂର୍ବବର୍ତ୍ତୀ ଅ ଅନୁସାରେ ଅ—

ଭକ୍ତ — ଭକତ — ଭଗତ | ଉତ୍ପନ୍ନ — ଉତପନ୍ନ
କର୍ତ୍ତା — କରତା | ଉତ୍କର୍ମ — ଉତକର୍ମ
ବହ୍ନି — ବହନ | ସୁଦର୍ଶନ — ସୁଦରଶନ

---

ଦୂର୍ବା — ପ୍ରା ଦୁବ୍ବା — ଦୂବ
ମିଥ୍ୟା — ପ୍ରା. ମିଚ୍ଛା — ମିଛ

(ଖ) ପରବର୍ତ୍ତୀ ଅ ଅନୁସାରେ ଅ—

ପାତ୍ର — ପାତର
ଶ୍ମଶାନ — ଶମଶାନ
ପ୍ରାପ୍ତ — ପ୍ରାପତ
ସୁଦର୍ଶନ — ସୁଦରଶନ

(ଗ) ଉଭୟବର୍ତ୍ତୀ ଅ ଅନୁସାରେ ଅ—

ସପ୍ତ — ସପତ
ଯତ୍ନ — ଯତନ
ବର୍ଷ — ବରଷ
ଶବ୍ଦ — ଶବଦ

(ଘ) ପୂର୍ବବର୍ତ୍ତୀ ଇ ଅନୁସାରେ ଇ—

ନିର୍ଗୁଣ — ନିରଗୁଣ

(ଙ) ପରବର୍ତ୍ତୀ ଇ (ଈ) ଅନୁସାରେ ଇ—

ଗାୟତ୍ରୀ — ଗାଇତିରୀ
ଶ୍ରୀ —ଶିରୀ

(ଚ) ପୂର୍ବବର୍ତ୍ତୀ ଉ (ଊ) ଅନୁସାରେ ଉ—

ମୂର୍ଖ — ମୂରୁଖ
ମୂର୍ଚ୍ଛା — ମୂରୁଛା

(ଛ) ପୂର୍ବ ଓ ପରବର୍ତ୍ତୀ ଉ ଅନୁସାରେ ଉ—

ବୁଦ୍‌ବୁଦ — ବୁଦୁବୁଦ
ଦୁଷ୍କୃତ — (ଦୁଷ୍‌କୃତ) —ଦୁଷୁକୃତ

(ଜ) ପରବର୍ତ୍ତୀ ଏ ଅନୁସାରେ ଏ—

ସ୍ନେହ — ସେନେହ

କେତେକ ଶବ୍ଦରେ ଏହି ନିୟମର ବ୍ୟତିକ୍ରମ ମଧ୍ୟ ଘଟିଛି । ଅର୍ଥାତ୍ ଯୁକ୍ତବର୍ଣ୍ଣ ମଧ୍ୟରେ ଏଭଳି ସ୍ୱର ସ୍ଥାନ ପାଇଛି ଯାହାର କି ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ୱର ସହିତ ସାମଞ୍ଜସ୍ୟ ନାହିଁ ।

ଯଥା—

(କ) ପୂର୍ବରେ ବା ପରେ ଇ ନଥିଲେ ମଧ୍ୟ ଇ—

ଅମର୍ଷ — ଅମରିଷ
ପର୍ଯ୍ୟନ୍ତ — ପରିଯନ୍ତ
ପ୍ରଣାମ — ପରିଣାମ
ଭାର୍ଯ୍ୟା — ଭାରିଯା

(ଝ) ପୂର୍ବରେ ବା ପରେ ଉ ନଥିଲେ ମଧ୍ୟ ଉ—

ମନ୍‌ମଥ— ମନୁମଥ
ପାର୍ଶ୍ୱ — ପାରୁଶ
ଫାଲ୍‌ଗୁନ — ଫାଲଗୁନ
ତୃପ୍ତି — ତିରୁପତି
ସ୍ମରଣ — ସୁମରଣ

ପୂର୍ବରେ ଓ ପରେ ଆ ଥିବା ସ୍ଥଳରେ ଯୁକ୍ତବର୍ଣ୍ଣର ବିଭକ୍ତାଂଶ ସ୍ୱର ରୂପେ ଉ ସ୍ଥାନ ପାଇଛି ।

ବାର୍ତ୍ତା — ବାରତା　　　ଆର୍ଦ୍ରା — ଆରଦ୍ରା *

(ମହାତ୍ମା—) ମାହାତ୍ମା — ମାହାତମା

(୧୨) ସଙ୍କୋଚନ

କେତେକ ଶବ୍ଦର ର୍ ଏବଂ ନ୍‌ର ପୂର୍ବବର୍ତ୍ତୀ ସ୍ୱର ଲୋପ ପାଇବା ଫଳରେ ଅକ୍ଷର-ଗୁଡ଼ିକ ସଙ୍କୁଚିତ ହୋଇଯାଇଛି ।

(କ) ଶବ୍ଦର ଆଦ୍ୟ ଅକ୍ଷରରେ ସଙ୍କୋଚନ—

ପରମ — ପ୍ରମ　　　ପୁରୋହିତ — ପ୍ରୋହିତ

ଭରଥ — ଭ୍ରଥ　　　ପରାକ୍ରମ — ପ୍ରାକ୍ରମ

ସରାଗ — ସ୍ରାଗ　　　ପରଶୁଧର — ପ୍ରସୁଧର

(ଖ) ଶବ୍ଦର ମଧ୍ୟ ଅକ୍ଷରରେ ସଙ୍କୋଚନ—

ମକର — ମକ୍ର　　　ଉପରୋଧ — ଉପ୍ରୋଧ

ନଗର — ନଗ୍ର　　　ଅପରାଧ — ଅପ୍ରାଧ

ସହୋଦର — ସହୋଦ୍ର　　　ଯୋଗିନୀ — ଯୋଗ୍ନୀ

ବୈତରଣୀ — ବଇତ୍ରଣୀ

ର୍ ପରବର୍ତ୍ତୀ ସ୍ୱର ମଧ୍ୟ ଲୋପ ପାଇଛି ।—

ନରକ — ନର୍କ　　　ମରକତ — ମର୍କତ

(୧୩) ଅର୍ > ର—

ଦର୍ଶନ — ଦ୍ରଶନ　　　ବର୍ତ୍ତମାନ — ବ୍ରତମାନ

*ବର୍ତ୍ତିକ୍ର — ବ୍ରତକ୍ର　　　ଆକର୍ଷଣ—ଆକ୍ରଷଣ

(୧୪) ଉର୍ (ଊର୍) > ରୁ (ରୂ)—

ଦୁର୍ଜନ — ଦ୍ରୁଜନ　　　ମୂର୍ଚ୍ଛା — ମ୍ରୁଚ୍ଛା

ଦୁର୍ବାର — ଦ୍ରୁବାର　　　ଚତୁର୍ଦ୍ଦଶୀ — ଚତ୍ରୁଦଶୀ

ମୂର୍ଖ — ମ୍ରୁଖ　　　ଚତୁର୍ମାସ୍ୟ — ଚତ୍ରୁମାସ୍ୟ

ମୂର୍ତ୍ତି — ମ୍ରୁତି　　　ଚତୁର୍ଦ୍ଧମ (—ଚତୁଃଧମ)—ଚତ୍ରୁଧମ

(୧୫) ର > ଅର୍—

ଶ୍ରବଣ — ଶର୍ବଣ　　　ଉପଦ୍ରବ — ଉପଦର୍ବ

ଭ୍ରୁଣଶ୍ରବା — ଭ୍ରୁଣସର୍ବା　　　ବୃନ୍ଦାରକ —ବୃନ୍ଦାଅର୍କ

---

* ଉଚ୍ଚାରଣ ଲଘୁତା କାରଣରୁ ସ୍ୱରଭକ୍ତି ପ୍ରକ୍ରିୟାର ଉଦ୍ଭବ । ଆ ଏକ ଦୀର୍ଘୋଚ୍ଚାରଣ ସ୍ୱର ହୋଇଥିବାରୁ ସ୍ୱରଭକ୍ତିକୁ ସ୍ୱତନ୍ତ୍ର ସ୍ଥାନ ନ ପାଇବା ସ୍ୱାଭାବିକ ।

(୧୬) ଋ—ଉର୍—

ମୃଗ—ମୁର୍ଗ
ମୃଦଙ୍ଗ—ମୁର୍ଦ୍ଦଙ୍ଗ
ନୃପତ୍ର—ନୁର୍ପତ
ଶୃବ (—ଶ୍ରୁବ)—ଶୁର୍ବ

(୧୭) ସ୍ୱର ସଂଶ୍ଳେଷ

ମଧ୍ୟ ଭାରତୀୟ ଆର୍ଯ୍ୟରେ ସାଧାରଣତଃ ଶବ୍ଦମଧ୍ୟବର୍ତ୍ତୀ ଅଳ୍ପପ୍ରାଣ ଏକକ ବ୍ୟଞ୍ଜନର ବିଲୋପ ଘଟିଛି । ବ୍ୟଞ୍ଜନର ବିଲୋପ ପରେ ଯେଉଁ ସ୍ୱରମାନ ଅବଶିଷ୍ଟ ରହୁଛି, ଓଡ଼ିଆରେ ତାହା ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ୱର ସହିତ ସଂଶ୍ଳିଷ୍ଟ ହୋଇଯାଇଛି । *

(କ) ଅ + ଅ = ଅ—

ଅଳସ—ଆଳଅ — ଆଳ

(ଖ) ଅ + ଅ = ଆ—

ଦୋଳକ — ଡ଼ୋଳଅ — ଡ଼ୋଲା
ଅଙ୍ଗନକ — ଅଙ୍ଗଣଅ — ଅଗଣା
ପଞ୍ଚନକ — ପଞ୍ଚଣଅ — ପାଞ୍ଚଣା
ଏକକ — ଏକ୍କଅ — ଏକା
ମଧ୍ୟକ — ମଜ୍ଝଅ — ମଝା
ପୀଠକ — ପୀଢ଼ଅ — ପୀଢ଼ା
କର୍କଟକ — କକ୍କଡ଼ଅ — କକଡ଼ା

(ଗ) ଅ + ଇ = ଇ—

ପଞ୍ଚବଂଶ — *ପଚଇଶ — ପଚିଶ †
ଉଦ୍ର ଦେଶୀୟ — *ଓଡ଼ଇଶ — ଓଡ଼ିଶା

(ଘ) ଅ + ଏ = ଏ—

ପ୍ରତ୍ୟୟ — ପ୍ରତଏ — ପ୍ରତେ

---

* କେତେକ ଶବ୍ଦରେ ମଧ୍ୟ ସ୍ୱରସଂଶ୍ଳେଷ ଘଟିନାହିଁ । ଯଥା—କୋକିଳ — କୋଇଲି, ନଗର — ନଅର, ପିତର — ପିଅର, ଚତୁର୍ଥୀ — ଚଉଠି, ଦେବୀ — ଦେଈ, କପିତ୍ଥ — କଇଥ ଇତ୍ୟାଦି । ଅଧିକ ଉଦାହରଣ ପାଇଁ 'ସନ୍ଧିକୃଷ୍ଟ ସ୍ୱରଧ୍ୱନି' ଦ୍ରଷ୍ଟବ୍ୟ ।

ଅ + ଅ = ଆ, ସୂପକାର — ସୁଅଆର — ସୁଆର, କୁମ୍ଭକାର — କୁମ୍ଭଆର — କୁମ୍ଭାର ।

† ମଧ୍ୟବର୍ତ୍ତୀ ପଶବର୍ତ୍ତିନ ସୂତ୍ରାନୁସାରେ ହୋଇଯାଇଛି ।

(ଙ) ଆ + ଆ = ଆ —

କଷାୟ — କଷାଅ — କଷା

ଗ୍ରଜନ୍ — ଗ୍ରଅଣ — ଗ୍ରଣ

ଅପର — ଆବର — ଆଅର — ଆର

(ଚ) ଆ + ଆ = ଆ —

ଭାଣ୍ଡାଗାର — ଭଣ୍ଡାଆର — ଭଣ୍ଡାର

(ଛ) ଇ + ଅ = ଇ —

ପାନୀୟ — ପାଣୀଅ — ପାଣି

ଇନ୍ଦ୍ରିୟ — ଇନ୍ଦ୍ରିଅ — ଇନ୍ଦ୍ରି

ଶୋଣିତ — ଶ୍ରୋଣିଅ — ଶ୍ରୋଣି (ରକାରାଗମ)

ଦ୍ୱିତୀୟ — ଦୁଇଅ — ଦୁଇ

ଅବବାହିତ — ଅବବାଇଅ — ଅବବାଇ

(ଜ) ଇ + ଆ = ଇ —

କପର୍ଦ୍ଦିକା — କଓଡ଼ିଆ — କଉଡ଼ି

କୁନ୍ଦଟିକା — କୁନ୍ଦଡ଼ିଆ — କୁହୁଡ଼ି

(ଝ) ଇ + ଇ = ଇ —

ଅଶିତି — ଅଶିଇ — ଅଶି

(ଞ) ଉ + ଅ = ଉ —

ସମ୍ମୁଖ — ଛମ୍ମୁହ — ଗ୍ରମୁଅ — ଗ୍ରମୁ

(ଟ) ଓ + ଅ = ଓ > ଉ —

ଯୋଜନ — ଯୋଅଣ — ଯୋଣ — ଯୁଣ

(୧୮) ଅପିନିହିତ

(କ୍ରମ) କୋନ୍ତା — କୋଇନ୍ତା

ଅର — ଅଇର

ବାହ୍ୟ — ବାହ୍ଜ୍ୟ

(୧୯) ଆଦ୍ୟସ୍ୱରାଗମ

ଘୋର — ଅଘୋର

---

କପର୍ଦ୍ଦିକା — କଓଡ଼ଡ଼ିଆ — କଓଡ଼ିଆ — କଉଡ଼ି

କୁନ୍ଦଟିକା — କୁହୁଡ଼ିଅ — କୁହୁଡ଼ିଆ — କୁହୁଡ଼ି

'ହ୍ୟ' ପ୍ରାକୃତରେ 'ଜ୍ଝ' ହୁଏ । ଯଥା — ବାହ୍ୟ — ବାଜ୍ଝ, ସହ୍ୟ — ସଜ୍ଝ ।

(୨୦) ଆଦ୍ୟସ୍ୱରଲୋପ

ଅଭ୍ୟନ୍ତର — ଭିତର

(୨୧) ସ୍ୱରବ୍ୟତ୍ୟାସ

ବାଳ — ବଳା

କାଳ — କଳା

(ମସ୍ତକ—) ମଥା — ମାଥ

ବଲ୍‌ଗା—ପ୍ରା: ବଗ୍‌ଗା—ବାଗ

ଅଣ୍ଟ — ଅରଣ୍ଟି

ମାନତ — ମାନଥ

## ଚତ୍ୱାରିଂଶ ଅଧ୍ୟାୟ

### ବ୍ୟଞ୍ଜନ ଧ୍ୱନିର ପରିବର୍ତ୍ତନ

(୧) ପ୍ରା. ଭା: ଆ. ବ୍ୟଞ୍ଜନାନ୍ତ ଶବ୍ଦଗୁଡ଼ିକର ଅନ୍ତ୍ୟ ବ୍ୟଞ୍ଜନ ମ: ଭା: ଆ:ରେ ସ୍ୱର-ଯୁକ୍ତ କିମ୍ବା ଲୁପ୍ତ ହୋଇଯାଇଥିଲା । ତଦନୁସାରେ ଓଡ଼ିଆରେ ବ୍ୟଞ୍ଜନାନ୍ତ ଶବ୍ଦଗୁଡ଼ିକର ଅନ୍ତ୍ୟ ବ୍ୟଞ୍ଜନ ସ୍ୱରଯୁକ୍ତ କିମ୍ବା ଲୁପ୍ତ ହୋଇଅଛି । ଫଳିତ ଉଚ୍ଚାରଣରୁ ଉଦାହରଣ—

(କ) ସ୍ୱରଯୁକ୍ତ

ଦିଗ୍ — ଦିଗ

ମହତ୍ — ମହତ

କିମ୍ବିତ୍ — କିମ୍ବିତ

ଯାବତ୍ — ଯାବତ

ଆପଦ୍ — ଆପାଦ

ଅପଦ୍ — ଅପଦ

ବିଦ୍ୟୁତ୍ — ବିଦ୍ୟୁତ

ସ୍ରଜନ୍ — ସ୍ରଜନ

ଅନ୍ତର୍ — ଅନ୍ତର

ଚତୁର୍ଥ — ଚଉଥ

ତତ୍‌କ୍ଷଣାତ୍ — ତତକ୍ଷଣାନ୍ତ

(ଖ) ଲୁପ୍ତ

ଭବିଷ୍ୟତ୍ — ଭବିଷ୍ୟ

ପଞ୍ଚାଶତ୍ — ପଞ୍ଚାଶ

ମନସ୍ — ମନ

ତପସ୍ — ତପ

ଶିରସ୍ — ଶିର

ରଜସ୍ — ରଜ

ହବିଷ୍ — ହବି ଇତ୍ୟାଦି ।

(୨) ଅଳ୍ପପ୍ରାଣ ବ୍ୟଞ୍ଜନଲୋପ ଓ ଶ୍ରୁତି ଧ୍ୱନି

ପ୍ରାକୃତ (ମଧ୍ୟ ଭାରତୀୟ ଆର୍ଯ୍ୟ ସ୍ତର)ରେ ଶବ୍ଦମଧ୍ୟବର୍ତ୍ତୀ ଅଳ୍ପପ୍ରାଣ ବ୍ୟଞ୍ଜନ ଲୋପ ପାଇବା ପରେ ବିଭିନ୍ନ ଶ୍ରୁତି ଧ୍ୱନିର ଆଗମ ହୋଇଛି । ଫଳରେ ସ୍ୱରସଂଶ୍ଳେଷ ଘଟିପାରି ନାହିଁ ।

(କ) ଯ୍‌ ଶ୍ରୁତି—

ବଦର — ବଅର — ବୟର

ରଜନୀ — ରଅଣୀ — ରୟଣି — ରୟେଣି

ମନ୍ଥନ — ମଅଣ — ମୱୁଣ — ମୱାଣ
ଭଗିନୀ — ଭଇଣୀ — ଭଏଣୀ — ଭଉୱଣୀ
ପାଦେ — ପାଏ — ପାୟେ

(ଖ) ବ୍ ଶ୍ରୁତି —

ନଗର — ନଅର — ନବର

(ଗ) ହ୍ ଶ୍ରୁତି —

ସାଗର — ସାଅର — ସାହର — ସାହେର
ଶକଟ — ଶଅଡ଼ — ଶହଡ଼
ଶବସନଶାସ୍ତ୍ରୀ — ଶବସନସାଇ — ଶବସନସାନ୍ତ୍ର

## (୩) ସ୍ୱର ପ୍ରସାରଣ ଓ ଶ୍ରୁତି ଧ୍ୱନି

(କ) ହ୍ ଶ୍ରୁତି —

ଶାସ୍ତ୍ର — ଶସ୍ତ୍ର — ଶଅସ୍ତ୍ର — ଶହସ୍ତ୍ର
ଶାସ୍ତ୍ର — ଶାସ୍ତ୍ର — ଶାଆସ୍ତ୍ର — ଶାହାସ୍ତ୍ର
ସ୍ନାନ — ସ୍ନାଆନ — ସ୍ନାହାନ
ସ୍ନାନ — ଶ୍ରାଆନ — ଶ୍ରାହାନ

(ଖ) ୟ୍ ଶ୍ରୁତି —

ଶାନ୍ତନୁ — ଶାଅନ୍ତନୁ — ଶାଏନ୍ତନୁ — ସାୟେନ୍ତନୁ
ନେତା — ନେତଅ — ନେତୟା
ବଂଶୀ — ବାଂଶୀ — ବାଅଂଶି — ବାଏଂଶି — ବାୟେଂଶି *

## (୪) ମ୍ ଲୋପ ଓ ସ୍ୱରର ଅନୁନାସିକତା

ଶବ୍ଦମଧ୍ୟବର୍ତ୍ତୀ ମ୍ ଲୋପ ହେବା ପରେ ଅବଶିଷ୍ଟ ରହିଥିବା ସ୍ୱର ଅନୁନାସିକ ହୋଇଅଛି ।—

ଆମଳକ — ଅଏଁଲା　　ଅମାବାସ୍ୟା — ଉଆଁସ
ନାମେ — ନାଏଁ — ନାୟେଁ　　ଜାମାତୃ — ଜୁଆଁଇଁ — ଜୁଆଇଁ

---

* ନେତା — ନେତାଆ, ବାଂଶୀ — ବାଆଂଶି, ଶାନ୍ତନୁ—ଶାଆନ୍ତନୁ ହେବାର କଥା । କିନ୍ତୁ ଆ ଏକ ଗୁରୁଚ୍ଚାରଣ ଧ୍ୱନି ହୋଇଥିବାରୁ ସେପରି ହୋଇନାହିଁ । ସାଧାରଣତଃ ଲୋକଙ୍କ ଉଚ୍ଚାରଣରେ ପ୍ରଯତ୍ନଲାଘବ ପ୍ରକ୍ରିୟା କାର୍ଯ୍ୟ କରିଥାଏ ।

## (୨) ବର୍ଣ୍ଣାଗମ ବା ଶ୍ରୁତ ଧ୍ୱନି

### (କ) ୟ୍ ଆଗମ—

#### (i) ସ୍ୱର ସହିତ ସଂଶ୍ଳିଷ୍ଟ ୟ୍

ଏସନେ — ୟେସନେ
ଏକ — ୟେକ
ରଜାଏ — ରଜାୟେ
ସଭାଏଣ — ସଭାୟେଣ
ନଅନ୍ତ — ନୟନ୍ତ

#### (ii) ବ୍ୟଞ୍ଜନ ସହିତ ସଂଶ୍ଳିଷ୍ଟ ୟ୍—

ଶାନ୍ତ — ଶ୍ୟାନ୍ତ
ତ୍ରିଦଶ — ତ୍ରିଦଶ୍ୟ
ମନଷା — ମନଷ୍ୟା
ସିଦ୍ଧ — ସିଧ୍ୟ
ଶାପ — ଶାପ୍ୟ
ନତାନ୍ତ — ନତ୍ୟାନ୍ତ
ଅନାସ୍ବର — ଅନ୍ୟାସ୍ବର
ସାତ୍ତ୍ୱିକ — ସାତ୍ତ୍ୱକ୍ୟ
ଦୁର୍ବାସା — ଦୁର୍ବସ୍ୟା
ଲଜ୍ଜା — ଲଜ୍ୟା
ସନ୍ନିଧାନ — ସନଧ୍ୟାନ

### (ଖ) ବ୍ ଆଗମ—

ପରମେଶ୍ୱର — ପରମ୍ୱେଶ୍ୱର
ଆନୂପ — ଅଇଷ୍ୱ
ସତ୍ତା — ସ୍ୱତ୍ତା
ଶଙ୍କର — ଶ୍ୱଙ୍କର

### (ଗ) ର୍ ଆଗମ—

ଅନ୍ନ — ଅର୍ନ୍ନ, ଅର୍ଣ୍ଣ
କନ୍ନର — କର୍ନ୍ନର
ଶୋଣିତ — ଶ୍ରୋଣିତ
ଏସନେକ — ୟେହେର୍ଣ୍ଣେକ
ତୃଷ୍ଣ — ତୃଷ୍ଣ (ତ୍ରୁଷ୍ଣ)
ଦୃଷିତ — ଦୃଷିତ (ଦ୍ରୁଷିତ)
କାଣ୍ତି — କରଣ୍ତି

### (ଘ) ନ୍ ଆଗମ—

ଅମାତ୍ୟ — ଅମନାତ୍ୟ

### (ଙ) ଷ୍ ଆଗମ—

କଠୋର — କଷ୍ଠୋର

---

ନୂଅଂଇଂ — ନୂଆଇଂ—ଦୁଇଟି ଅନୁସ୍ୱାର ଏକତ୍ର ରହିବାରୁ ଲେଖାରେ ଗୋଟିଏ ଲୋପ ପାଇଛି । ଯେପରି ମୁଂହଂ — ମୁହଂ ।

(୬) ସଘୋଷୀଭବନ

ଭକ୍ତ (ଭକତ) — ଭଗତ
ଯୁକ୍ତ — ଯୁକତ — ଯୁଗତ
କାଗଚ — କାଗଜ
ଘଟୀ — ଘଡ଼ି
କପୋଟ — ଗୁପୋଡ଼
ଶକଟ — ଶଗଡ଼

କର୍କଟକ — କକଡ଼ା
ଶାଖୋଟକ — ସାହାଡ଼ା
ଷଟ୍ (ଷଟ) — ଛଅ
ପୀଠକ — ପୀଢ଼ା
ଅପର — ଆବର
କପାଟ — କବାଟ

(୭) ଅଘୋଷୀଭବନ

ପ୍ରତିପଦା — ପ୍ରତିପତା

କବର — କପର
ଉପଦ୍ରବ — ଉପଦର୍ପ

(୮) ମହାପ୍ରାଣୀଭବନ

ସଗାଡ — ସଘାଡ
ଭରତ — ଭରଥ
ଭରତା ( <ଭର୍ତ୍ତା) — ଭରଥା
ଶରତ — ଶରଥ
ସୀମନ୍ତନୀ — ସିମନ୍ଥନୀ
ସ୍ତନ — ଥନ *

ସ୍ତମ୍ଭନ — ଥମ୍ଭନ
ବାପୀ — ବାମ୍ଫି
ଦୁର୍ବାସା — ଦୁର୍ଭାସା
ଦୁର୍ବାର — ଦୁର୍ଭାର
ବିଧାନ — ଭିଆଣ
ଅବିବାହିତ — ଅଭିଆଇତ
ବ୍ୟବହାର — ବେଭାର

(୯) ଅଳ୍ପପ୍ରାଣୀଭବନ

ଗରିଷ୍ଠ — ଗରିଷ୍ଟ
ଧନିଷ୍ଠା — ଧନିଷ୍ଟା
ବଶିଷ୍ଠ — ବଶିଷ୍ଟ
(ପାପିଷ୍ଠା) ପାପିଷ୍ଠୀ — ପାପିଷ୍ଟୀ
କାକୁସ୍ଥ — କାକୁସ୍ତ
ସୁସ୍ଥ — ସୁସ୍ତ
ଉପସ୍ଥ — ଉପୋସ୍ତ

ଆସ୍ଥାନ — ଆସ୍ତାନ
ଅବସ୍ଥା — ଅବସ୍ତା
ଶପଥ — ଶପତ
ବୌଦ୍ଧ — ବଉଦ
ସମାଧି — ସମାଦି
ଅଗାଧ — ଅଗାଦ
ଅଭିଷେକ — ଅବିଷେକ

---

* ଶବ୍ଦର ମୂଳରେ କଠିନ ଯୁକ୍ତବର୍ଣ୍ଣ ଥିଲେ ସାଧାରଣ ଲୋକଙ୍କ ଉଚ୍ଚାରଣରେ ସେହି ଯୁକ୍ତବର୍ଣ୍ଣରୁ ପ୍ରଥମଟି ଲୋପ ପାଇଥାଏ, କିମ୍ବା ପୂର୍ବରେ ଗୋଟିଏ ସ୍ୱରର ସାହାଯ୍ୟ ନେଇ ଯୁକ୍ତବର୍ଣ୍ଣ ଉଚ୍ଚାରିତ ହୋଇଥାଏ। ଯଥା—ସ୍ପଷ୍ଟ > ପଷ୍ଟ, ସ୍କୁଲ > ଇସ୍କୁଲ।

ସେହିପରି ସ୍ତନ > ତନ, ସ୍ତମ୍ଭନ > ତମ୍ଭନ ହେବାର କଥା। ମାତ୍ର ମହାପ୍ରାଣୀଭବନ ଫଳରେ 'ଥନ' ଓ 'ଥମ୍ଭନ' ହୋଇଅଛି।

## (୧୦) ଅନୂଷ୍ମୀଭବନ ଓ ମହାପ୍ରାଣୀଭବନ

ମଧ୍ୟ ଅକ୍ଷରବର୍ତ୍ତୀ ଉଷ୍ମଧ୍ୱନି ହ୍ ଲୋପ ପାଇବା ଫଳରେ ତାହାର କ୍ଷତିପୂରଣ ସ୍ୱରୂପ ପୂର୍ବ ବା ପରବର୍ତ୍ତୀ ଅଳ୍ପପ୍ରାଣ ବ୍ୟଞ୍ଜନ ମହାପ୍ରାଣ ହୋଇଛି । ଶବ୍ଦରେ ଯଦି ଆଗରୁ କୌଣସି ମହାପ୍ରାଣ ବ୍ୟଞ୍ଜନବର୍ଣ୍ଣ ଅଛି, ତେବେ ଆଉ ଅଳ୍ପପ୍ରାଣ ବ୍ୟଞ୍ଜନ ମହାପ୍ରାଣ ହୋଇନାହିଁ ।

ଅବ୍ବାହିତ — ଅଭ୍ଭାଇତ
ବ୍ୟବହାର — ବେଭାର
ଜାହ୍ନବୀ — ଜାନ୍ଭି
ମହୋଦଧି — ମଉଦଧି
ମହୌଷଧି—ମଉଷୋଧି—ମଉଖୋଧି

## (୧୧) ଅନୁନାସିକୀଭବନ

ଉରଗ — ଉଡଙ୍ଗ
ଉଚକ — ଉଞ୍ଚା
ପଦାତ — ପାଦାନ୍ତ
ଜଘନ — ଜଙ୍ଘନ
ରଚନା — ରଞ୍ଚନା
କାତ୍ୟାୟନୀ — କାନ୍ତାଣୀ
ତତ୍କ୍ଷଣାତ୍ — ତତକ୍ଷଣାନ୍ତ
ମୁକବର — ମୁକମ୍ବର
କପାଇଂ — କମ୍ପାଇଂ
ନହୁଷ — ନହୁଂସ

## (୧୨) ନିରନୁନାସିକୀଭବନ

ଅଙ୍ଗନକ — ଅଗଣା
କଞ୍ଚିତ୍ — କଛୁ
ପଞ୍ଚବିଂଶ — ପଚିଶ
*ତ୍ରିଂଶତ — ତିରିଶି

## (୧୩) ମୂର୍ଦ୍ଧନ୍ୟୀଭବନ

(କ) ତ୍ > ଟ୍ —
କୂଳାନ୍ତର — କୂଳାଣ୍ଟର

(ଖ) ଥ୍ > ଠ୍ —
ଚତୁର୍ଥୀ — ଚଉଠି

(ଗ) ଦ୍ > ଡ୍ —
ଦର — ଡର
ଦୋଳକ — ଡୋଳା
ଦଂଶିକ୍ଳ — ଡଂସିକ୍ଳ
ଦକ୍ଷିଣ — ଡାହାଣ

---

ଯ୍ > ଇ, ବ > ଉ ଏହାକୁ ସଂସ୍କୃତ ବ୍ୟାକରଣରେ ସମ୍ପ୍ରସାରଣ କୁହାଯାଏ । ଯଥା—ଯଜ୍ + ଯ(ଆ = ଇଜ୍ୟା, ବସ୍ + ତ = ଉଷିତ । ନିତ୍ୟ > ନିତିଅ, ଶାଲ୍ୟ > ଶାଲିଅ ଏହିପରି ଉଚ୍ଚାରଣ ଶିଥିଳତାବଶତଃ କ୍ରମଶଃ ନିତି, ଶାଳି ପ୍ରଭୃତି ହୋଇଅଛି ।

(ଗ) ନ୍ > ଣ୍—

ଯୋଜନ — ଯୁଣ
ପାନୀୟ — ପାଣି
ପୁନଃ — ପୁଣ
ଊନକ — ଊଣା
ରଜନୀ — ରୟେଣି
(ସ୍ୱଜନ୍) ସ୍ୱଜନ — ସ୍ୱଣ
(କର୍ମନ୍) କର୍ମନ — କର୍ମଣ
ଭଗିନୀ — ଭୟେଣି
(ଆତ୍ମନ୍) ଆତ୍ମନ — ଆପଣ
ପତ୍ତନକ — ପାଟଣା

(୧୪) ଯୁକ୍ତବର୍ଣ୍ଣର ଅନ୍ତସ୍ଥିତ ଯ > ଇ—

ବାକ୍ୟ — ବାକ
ସାଧ୍ୟ — ସାଧି
ନୃତ୍ୟ — ନଚ
ଦୈନ୍ୟ — ଦଇନ
ଶିଷ୍ୟ — ଶିଷି
ସୈନ୍ୟ—ସଇନ

(୧୫) ଯୁକ୍ତବର୍ଣ୍ଣସ୍ଥିତ ବ > ଉ—

ବୈବସ୍ୱତ — ବଇବସୁତ
ଶାଲ୍ୱ—ଶାଲୁ
ଧ୍ୱନ — ଧୂନ
ସ୍ୱୀକାର — ସୁଇକାର
ଦ୍ୱାର — ଦୁଆର

(୧୬) ଯୁକ୍ତବର୍ଣ୍ଣର ଏକକୀଭବନ

ପ୍ରା: ଭା: ଆ: ରେ ର ମଧ୍ୟବର୍ତ୍ତୀ ଯୁକ୍ତବର୍ଣ୍ଣଗୁଡ଼ିକ ସମୀଭବନ ହେତୁ (କ୍ତ, କ୍ର, ର୍କ, ଷ୍ଟ, ଷ୍ଠ ଇତ୍ୟାଦି) ମ: ଭା. ଆ:ରେ ଦ୍ୱିତ୍ୱବୃତ୍ତ ବ୍ୟଞ୍ଜନରେ ପରିଣତ ହେଲା । ମ.ଭା:ଆ:ର ଉକ୍ତ ଦ୍ୱିତ୍ୱବୃତ୍ତ ବ୍ୟଞ୍ଜନ ଓଡ଼ିଆରେ ଏକକ ବ୍ୟଞ୍ଜନରେ ପରିଣତ ହୋଇଛି ।

ମ.ଭା:ଆ:ର ସମୀଭବନ ପ୍ରକ୍ରିୟାରେ ପୂର୍ବବର୍ତ୍ତୀ ଦୀର୍ଘସ୍ୱର ସର୍ବଦା ହ୍ରସ୍ୱ ହୋଇଥିଲା । ଯଥା—ମାର୍ଗ — ମଗ୍ଗ, କାବ୍ୟ — କବ୍ବ, ପୂର୍ବ — ପୁବ୍ବ ଇତ୍ୟାଦି । ଓଡ଼ିଆରେ ଏକକୀଭବନ ପ୍ରକ୍ରିୟାରେ ମ: ଭା: ଆ:ର ସେହି ହ୍ରସ୍ୱସ୍ୱର ଦୀର୍ଘସ୍ୱର ହୋଇଅଛି, କେତେକ ସ୍ଥଳରେ ହୋଇନାହିଁ ।

(କ) ଏକକୀଭବନ ଓ ପୂର୍ବବର୍ତ୍ତୀ ହ୍ରସ୍ୱ ସ୍ୱରର ଦୀର୍ଘତା—

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ଯଷ୍ଟି | ଜଟ୍ଠି (ଲଟ୍ଠି) | ଯାଠ (ଲଠି) |
| ଅଷ୍ଟ | ଅଟ୍ଠ | ଆଠ |
| ସପ୍ତ | ସତ୍ତ | ସାତ |
| ଅଗ୍ର | ଅଗ୍ଗ | ଆଗ |
| ମତ୍ସ୍ୟ | ମଚ୍ଛ | ମାଛ |

| | | |
|---|---|---|
| ଅଦ୍ୟ | ଅଜ୍ଜ | ଆଜ |
| ଅକ୍ଷି | ଅକ୍‌ଖି | ଆଖି |
| ନପ୍ତୃ | ଣତ୍ତି | ନାତି |
| ଗ୍ରନ୍ଥି | ଗଣ୍ଠି | ଗଣ୍ଠ |
| ପକ୍ଷ | ପକ୍‌ଖ | ପାଖ |
| ବିଲ୍ୱ | ବିଲ୍ଲ | ବେଲ |
| ଉଷ୍ଟ୍ର | ଉଟ୍‌ଟ | ଓଟ |
| ପଟ୍ଟ | ପଟ୍ଟ | ପାଟ |
| ପତ୍ତନକ | ପଟ୍ଟଣଅ | ପାଟଣା |
| କାଷ୍ଠ | କଟ୍‌ଠ | କାଠ |
| ସୂତ୍ରକ | ସୁତ୍ତଅ | ସୂତା |

(ଖ) ଏକୀଭବନ ଓ ପୂର୍ବବର୍ତ୍ତୀ ହ୍ରସ୍ୱ ସ୍ୱରର ସ୍ଥିତାବସ୍ଥା—

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ଚକ୍ର | ଚକ୍‌କ | ଚକ |
| ଅଲକ୍ତକ | ଅଲତ୍ତଅ | ଅଲତା |
| ସର୍ବ | ସବ୍‌ବ | ସବୁ |
| ପୃଷ୍ଠ | ପିଟ୍‌ଠ | ପିଠି |
| ମାର୍ଗଶିର | ମଗ୍‌ଗସିର | ମଗୁଶିର |
| ତାମ୍ର | ତମ୍ବ | ତମ୍ବା |
| ରକ୍ଷତି | ରକ୍‌ଖଇ | ରଖଇ |
| ପର୍ଯ୍ୟଙ୍କ | ପଲ୍ଲଙ୍କ | ପଲଙ୍କ |

(୧୭) ଯୁକ୍ତବର୍ଣ୍ଣର ଏକାଂଶ ଲୋପ

ଯୁକ୍ତବର୍ଣ୍ଣ ମଧ୍ୟରୁ ବିଶେଷତଃ ଶବ୍ଦର ଆଦ୍ୟ ଅକ୍ଷରବର୍ତ୍ତୀ ଯୁକ୍ତବର୍ଣ୍ଣ ମଧ୍ୟରୁ ଗୋଟିଏ ଲୋପ ପାଇଛି ।

(କ) ବ୍ ଲୋପ—

ଧ୍ୱଂସନ—ଧଂସନ
ଶ୍ୱେତ — ଶେତ
ଜ୍ୱାଳା — ଜାଳା
ପୃଥ୍ୱୀ — ପୁଥୀ — ପୁଥି
ଊର୍ଦ୍ଧ୍ୱ — ଊର୍ଦ୍ଧ

(ଖ) ଯ୍ ଲୋପ—

ବ୍ୟାଘ୍ର — ବାଘ୍ର
ସତ୍ୟ — ସତ
ମନୁଷ୍ୟ — ମନୁଷ
ମୃତ୍ୟୁ—ମୃତୁ

(ଗ) ର୍ ଲୋପ—

କ୍ରୋଡ଼ — କୋଡ଼　　ଗ୍ରଣ୍ଠି — ଗଣ୍ଠି

ପ୍ରହର — ପହଡ଼　　ତ୍ରୈଲୋକ୍ୟ — ତଇଲୋକ୍ୟ

(ଘ) ସ୍ ଲୋପ—

ସ୍ଥାନ — ଥାନ　　ସ୍ତନ — ଥନ

ସ୍ଥିର — ଥିର　　ସ୍ତମ୍ଭନ — ଥମ୍ଭନ

ସ୍ଖଳିତ — ଖଳିତ

(୮) ବ୍ୟଞ୍ଜନ ବିଷମୀଭବନ

ସମ୍ମତ — ସନମତ　　ଯମଜ — ଯମଦ

(୯) ସମାକ୍ଷର ଲୋପ

ମାତୁଳ ଶ୍ୱଶୁର —ମଳାଶୁର　　ବୁଭୁକ୍ଷା — ଭୋକ

ଜ୍ୟେଷ୍ଠ ଶ୍ୱଶୁର — ଜ୍ୟେଷ୍ଠାଶୁର　　ସଦୃଶ — ପ୍ରା: ସରିସ > ସରି

(୧୦) ସମାକ୍ଷର ଆଗମ

( ଇନ୍ଦ୍ରପ୍ରସ୍ଥ ) ଇନ୍ଦ୍ରପ୍ରସ୍ତ — ଇନ୍ଦ୍ରପ୍ରସସ୍ତ

( ଯମପ୍ରସ୍ଥ ) ଯମପ୍ରସ୍ତ — ଯମପ୍ରସସ୍ତ

(୧୧) ବ୍ୟଞ୍ଜନ ବିପର୍ଯ୍ୟାସ

ବାରାଣସୀ — ବାଣାରସି　　ସ୍ଥୂଢ — ରୂଷ୍ଟି

(୧) ଏକକ ବ୍ୟଞ୍ଜନଗୁଡ଼ିକର ପରିବର୍ତ୍ତନ

(କ) ନ୍ > ଲ୍—

ପଦ୍ମନାଭ — ପଦ୍ମଲାଭ

(ଖ) ଲ୍ > ନ୍—

ଲଗ୍ନ — ନଗ୍ନ

(ଗ) ବ୍ > ମ୍—

ଶୁଣିବା — ଶୁଣିମା　　ଧାବନ୍ତ — ଧାମନ୍ତି

(ଘ) ମ୍ > ବ୍

ଝଟମନ — ଆଷ୍ଟୋବନ

(ଙ) ର୍ > ଡ଼୍—

ହରଚ — ହଡ଼ଙ୍ଗ　　ଷଦ୍ଧରନ୍ତ୍ର — ଷଦ୍ଧଡ଼ନ୍ତ୍ର

(ଚ) ଷ୍, ସ୍ — ଛ୍—

ଷଟ୍ (—ଷଟ) — ଛଅ　　ସମ୍ମୁଖ — ଛମ୍ମୁହ — ଛାମୁ

ଷଣ୍ଢ — ଛଣ୍ଢ

(ଛ) ସ୍ > ହ୍—

ଏପନେକ — ସେ୍ହେନ୍ତ୍ରିକ

(ଜ) ମହାପ୍ରାଣଧ୍ୱନ > ହ୍—

(ଲଖିତ) ଲଖିଲେ — ଲହ୍ୱଲେ

ଦମ୍ଭ୍ଖ — ଛମ୍ଭୁହ — ଗ୍ରମୁ

ଅମୋଘ — ଅମୋହ୍ର

କୁକୁଟିକା — କୁହୁଡ଼

ନାଥ — ନାହା

କଥନ — କହଣ

ମଧୁ — ମହୁ

•ଶୋଭଢ — ଶୋହଜ

(ଝ) ହ୍ ମହାପ୍ରାଣଧ୍ୱନ—

ବହ୍ୱଳ — ପ୍ରା: ବେହ୍ଭଲ — ବେଭଲ

ସିଂହ — ସିଙ୍ଘ

ସହ୍ରରଣ — ସଙ୍ଘରଣ

(ଞ) ମହାପ୍ରାଣଧ୍ୱନ > ମହାପ୍ରାଣଧ୍ୱନ—

(ଝଃଢକାର—) ଝାଢକାର — ଧାଢକାର

(୨୩) ଯୁକ୍ତବର୍ଣ୍ଣଗୁଡକର ପରବର୍ତ୍ତନ

(କ) ଷ୍ > ପ୍ରାକୃତ କ୍ଖ୍ > ଓଡ଼ିଆ ଖ୍—

ସାକ୍ଷୀ — ସକଖୀ — ସାଖି

ଅକ୍ଷି — ଅକଖି — ଆଖି

ପକ୍ଷ — ପକ୍ଖ — ପାଖ

ପ୍ରୋକ୍ଷଣୀ — ପ୍ରୋକ୍ଖଣୀ – ପ୍ରୋଖଣୀ

କ୍ଷିପ୍ର — ଖିର *

(ଖ) କ୍ଷ > ପ୍ରା. ଛ୍ > ଓ. ଛ୍—

ଦକ୍ଷ — ଦଚ୍ଛ — ଦଛ

( କ୍ଷୌଣୀ ) କ୍ଷେଉଣୀ—ଛେଉଣୀ — ଛେଉଣି **

ଚକ୍ଷୁ — ଚଚ୍ଛୁ — ଚଚ୍ଛୁ

ସମକକ୍ଷ — ସମକଚ୍ଛ — ସମକଚ୍ଛୁ ***

---

* କଣ୍ଠେ ପ୍ରଲମ୍ବ ଅଛରୁ ବାକ୍ୟ ସ୍ରବ । (ର: ମ: ୧-୫୭)
(ଅଛରୁ < ଅକ୍ଷରୁ)

ଗୋପକନ୍ୟାମାନେ ଯେବେ ତାଙ୍କ ସାଉଛ (ର: ମ: ୭-୩)
(ସାଉଛ) < ସଦୃକ୍ଷ)

ତୁମ୍ଭେ ମୋ ମୁଖ ଚଚ୍ଛୁ ସବ ଶକ୍ତ (ର: ମ: ୮-୨୫)
(ଚଚ୍ଛୁ < ଚକ୍ଷୁ)

କଳ୍ପନା ଅଙ୍ଗରୁ ଛର ମଣ୍ଡିଏକୁ ଗଲୁ (ର: ମ: ୨୩-୩୭)
(ଛର < କ୍ଷର)

(ଗ) ଖ୍ୟ > ଛ୍—

ଅପଖ୍ୟାତ — ଅପଚ୍ଛ୍ର

କ୍ଷ > ଚ୍ଛ ଏବଂ ଖ୍ୟ > ଛ୍ ହୋଇଥିବାରୁ 'କ୍ଷ'ର ଉଚ୍ଚାରଣ 'ଖ୍ୟ' ମଧ୍ୟ ଥିଲା ବୋଲି ଜଣାପଡ଼େ ।

(ଘ) କ୍ଷ୍ମ, ଷ୍ଟ, ତ୍ସ, ତ୍ସ୍ର, ତ୍ସ୍ୟ > ପ୍ରା. ଛ୍ > ଓ. ଛ୍—

| | |
|---|---|
| ଲକ୍ଷ୍ମୀ — ଲଚ୍ଛୀ — ଲଛା | ବତ୍ସର — ବଚ୍ଛର — ବଛର |
| ପଶ୍ଚିମ — ପଚ୍ଛିମ — ପଛୁମ | ଭତ୍ସ୍ନା — ଭୁଛନା |
| ବୃଶ୍ଚିକ — ବିଚ୍ଛୁଅ — ବିଛା | ଉତ୍ସବ — ଉଚ୍ଛବ — ଉଛବ |
| ବତ୍ସ — ବଚ୍ଛ — ବଛ | ମତ୍ସ୍ୟ — ମଚ୍ଛ — ମାଛ |

(ଙ) ତ୍ୟ > ପ୍ରା. ଚ୍ଚ > ଓ. ଚ୍—

ସତ୍ୟ — ସଚ୍ଚ — ସାଚ୍ଚ

(ଚ) ଥ୍ୟ > ପ୍ରା. ଚ୍ଛ > ଓ. ଛ୍—

ମିଥ୍ୟା — ମିଚ୍ଛା — ମିଛ

(ଛ) ଦ୍ୟ > ପ୍ରା ଜ୍ଜ > ଓ. ଜ୍—

| | |
|---|---|
| ଅଦ୍ୟ — ଅଜ୍ଜ — ଆଜ | *ବାଦ୍ୟତ — ବଜ୍ଜଇ — ବାଜଇ |

(ଜ) ଧ୍ୟ > ପ୍ରା. ଜ୍ଝ > ଓ. ଝ—

| | |
|---|---|
| ମଧ୍ୟକ—ମଜ୍ଝଅ — ମଝା | ଶୁଧ୍ୟତି — ସୁଜ୍ଝଇ — ଶୁଝଇ |

(ଝ) ର୍ଯ୍ୟ (ର୍ଯ) > ପ୍ରା. ଲ୍ଲ > ଓ. ଲ୍—

ପର୍ଯ୍ୟଙ୍କ — ପଲ୍ଲଙ୍କ — ପଲଙ୍କ

ପର୍ଯ୍ୟାଣ — ପଲ୍ଲାଣ — ପଲାଣ

(ଞ) ପ୍ସ୍ > କ୍ଷ—

(ଅପ୍ସରା) ଅପ୍ସରା — ଅପଛରା

---

* ପ୍ରାକୃତରେ ଶବ୍ଦର ଆଦ୍ୟ ଅକ୍ଷରବର୍ତ୍ତୀ କ୍ଷ୍ > ଖ୍ ହୁଏ । କିନ୍ତୁ ମଧ୍ୟ ଅକ୍ଷରବର୍ତ୍ତୀ କ୍ଷ୍ > କ୍ଖ୍ ହୁଏ । ଯଥା—କ୍ଷମା > ଖମା, ଭିକ୍ଷା > ଭିକ୍ଖା ।

†† ସେହିପରି ପ୍ରାକୃତରେ କେତେକ ଶବ୍ଦର ଆଦ୍ୟ ଅକ୍ଷରବର୍ତ୍ତୀ କ୍ଷ୍ > ଛ୍ ହୁଏ । କିନ୍ତୁ ମଧ୍ୟ ଅକ୍ଷରବର୍ତ୍ତୀ କ୍ଷ୍ > ଚ୍ଛ୍ ହୁଏ । ଯଥା—କ୍ଷାରଂ > ଛାରଂ, ମକ୍ଷିକା > ମଚ୍ଛିଆ ।

††† ଅପଭ୍ରଂଶରେ ୧ମା ଏକବଚନରେ -ଉ (ବିଭକ୍ତି ଚିହ୍ନ) ଲାଗେ । ଯଥା—ଜନଃ > ଜଣୁ, ଫଳଂ > ଫଳୁ ।

ପ୍ରାକୃତରେ ପ୍‌ସ୍ > ଛ୍ ହୁଏ । ଓଡ଼ିଆରେ ଯେତେବେଳେ 'ଷ' ଓ 'ଛ'ର ଉଚ୍ଚାରଣ ସମାନ ଥିବାରୁ 'ପ୍‌ସ୍' ମଧ୍ୟ 'ଷ୍' ରୂପେ ଲେଖା ହୋଇଛି । ତେଣୁ 'ଅପଷଣ୍ଡ'ର ଉଚ୍ଚାରଣ 'ଅପଛଣ୍ଡ' ଥିବାର ଅନୁମିତ ହୁଏ ।

(୨) ମ୍ର୍ > ପ୍ରା. ମ୍ବ୍ > ଓ. ମ୍ବ୍—

ତାମ୍ର — ତମ୍ବ — ତମ୍ବା
ଆମ୍ର — ଅମ୍ବ — ଆମ୍ବ †

(୩) ଷ୍ଣ୍ > ପ୍ରା. ଣ୍ହ୍ > ଓ. ନ୍—

ତୃଷ୍ଣୀ — ତୁଣ୍‌ହ — ତୁନ

(୪) ସ୍ତ୍ > ଖ୍—

ସ୍ତମ୍ଭ — ଖମ୍ଭ ††

(୫) ସ୍ତ୍ର୍ > ସ୍ର୍—

ଶସ୍ତ୍ର — ଶାତ୍ର
ଶାସ୍ତ୍ର — ଶାସ୍ର
ବସ୍ତ୍ର — ବସ୍ତ୍ର

(୬) ସ୍ପ୍ > ସ୍‌ପ—

ବୃହସ୍ପତି — ବୃହସ୍ପତି

---

† ଗ୍ରନ୍ଥର ଆଲୋଚିତ ଅଂଶରେ 'ଆମ୍ବ' ନାହିଁ, 'ଆମ୍ବିଲ' ଅଛି । 'ଆମ୍ବିଲ' ବୋଧହୁଏ ଗୋଟିଏ ତଦ୍ଧିତ ଶବ୍ଦ (ଆମ୍ବ+ଇଲ) କିମ୍ବା 'ଅମ୍ଳ' ଶବ୍ଦଜ ।

†† ପ୍ରାକୃତରେ କେବଳ 'ସ୍ତମ୍ଭ' ଶବ୍ଦର ସ୍ତ୍ > ଖ୍ ହୁଏ । ମୂଳ ଶବ୍ଦ ସ୍ତମ୍ଭ ନଥିଲା, 'ସ୍କମ୍ଭ' ଥିଲା ବୋଲି ଅନୁମାନ । କାରଣ ପ୍ରାକୃତରେ 'ଷ୍କ୍' କ୍‌ଖ୍ ହୁଏ । ଯଥା— ପୁଷ୍କର > ପୋକ୍‌ଖର, ଶୁଷ୍କ > ସୁକ୍‌ଖ ।

# ଅ

| | |
|---|---|
| ଅଇରାବତ | ବି, ସ—ଐରାବତ, ୧୨୧।୧ |
| ଅଇର | ବି, ସ—ଅର, ୭୭୬।୨, ଶତ୍ରୁ |
| ଅଁଳା | ବି, ସ—ଆମଲକ, ୨୦୬।୧ ଫଳବିଶେଷ |
| ଅଖଳତ | ବିଂ, ସ—ଅସ୍ଖଳିତ, -କନ୍ୟା ୧୪୨୩।୧, ରଜୋବତୀ ହୋଇ ନ ଥିବା କନ୍ୟା। |
| ଅଗଣା | ବି, ସଂ—ଅଙ୍ଗନକ, ୧୨୬। । |
| ଅଗାଢ | ବିଂ, ସଂ—ଅଗାଧ, ୯୧୧।୧, ଗମ୍ଭୀର |
| ଅଗ୍ରତେ | ପାରସର୍ଗିକ ପଦ, ଅଧିକରଣ ଦ୍ୟୋତକ, ୯।୨, ଆଗରେ। |
| ଅଘଟଣ | ବିଂ, ସ—ଅଘଟନ, ନାହିଁ ଘଟଣ ଯାହାର (ବହୁବ୍ରୀହି) ୯୩୫।୧ ଯାହା ନିର୍ମାଣ କରାଯାଇନାହିଁ। |
| ଅଘୋର | ବିଂ, ସଂ—ଘୋର, ୫୬୩।୧ ଭୟଙ୍କର। |
| ଅଚଳ | ବିଂ, ସଂ—ଅଚଳିତ, ୧୫୪୩।୧, ଅମାପ, ପ୍ରଭୂତ। |
| ଅଛ୍- | ଅପୂର୍ଣ୍ଣରୂପ କ୍ରିୟା, ଅକ, ସଂ—ଆ-କ୍ଷି ବା *ଅକ୍ଷ୍, ୧୮୩।୧ |
| ଅଜପା | ବିଂ, ୧୯।୨, ନ ଜପା (ନଞ୍ ତତ୍ପୁରୁଷ), ଜପହୀନ। |
| ଅଜା | ବିଂ, ସଂ—ଆର୍ଯ୍ୟକ, ପ୍ରା: ଅଜ୍ଜଅ, ୨୨୧।୨ |
| ଅଟ୍- | ଅପୂର୍ଣ୍ଣରୂପ କ୍ରିୟା, ଅକ, ସଂ ବୃତ୍ (ବର୍ତ୍ତିତେ), ପ୍ରା: ବଟ୍ଟ୍ (ବଟ୍ଟଇ) ୪୦।୧ |
| ଅଠାଶି | ସଂଖ୍ୟା ୮୮, ସଂ ଅଷ୍ଟାଶିତି, ପ୍ରା: ଅଟ୍ଠାସିଇ, ୧୯୪।୧ |
| ଅଣ- | ଉପସର୍ଗ, ସଂ ଅନ୍+(ଯଥା—ନ ଅବଦ୍ଧତ=ଅନବଦ୍ଧତ, ନ ଆଦର=ଅନାଦର) -ଖଣ୍ଡ ୫୪୨।୧, ଊନା ଖଣ୍ଡରେ ବା ଖଣ୍ଡ ଊନା; -ଗୁରୁ ୫୪୩।୨ ଊନା ଗୁରୁରେ ବା ଗୁରୁ ଊନା; -ଉପ୍ରୋଧ ୭୨୦।୧ ଯେ ଉପ୍ରୋଧ ନୁହନ୍ତି; -ଦୟା ୭୨୬।୧ ନିର୍ଦୟ (ବହୁବ୍ରୀହି)। |
| ଅଣଚାଶ | ସଂଖ୍ୟା ୪୯, ସଂ ଊନପଞ୍ଚାଶତ୍, ୧୨୩।୧ |
| ଅତଅନ୍ତ | ବିଂ ବିଂ, ସଂ ଅତ୍ୟନ୍ତ, ୧୬୩।୧ |
| ଅତୁଳାସ୍ଥିତ | ବିଂ, 'ଅତୁଳିତ' ଅର୍ଥରେ, ୧୩୫୦।୨, ଯାହାର ତୁଳନା ନାହିଁ। |
| ଅଦ୍ୟାପି | କ୍ରି: ବିଂ, ସଂ ଅଦ୍ୟ+ଅପି, ୮୨୭।୨, ଆଜପର୍ଯ୍ୟନ୍ତ। |
| ଅନକୂଳ | ବିଂ, ସଂ ଅନୁକୂଳ ୧୦।୧ |
| ଅନମିତ | ବିଂ, ସଂ ଅନମିତ୍ତ, ୭୪୮।୨, ଯାହାର ନିମିତ୍ତ ଅର୍ଥାତ୍ ପ୍ରୟୋଜନ ନାହିଁ। |
| ଅନରୂପ | ବିଂ, ସଂ ଅନୁରୂପ ୧୦୬୩।୨, ସମାନ, ତୁଲ୍ୟ। |

| | |
|---|---|
| ଅନର୍ଗଳା | ବି°, ସଂ ଅନର୍ଗଳ + ଓ: ସ୍ୱାର୍ଥିକ -ଆ, ୭୫୧।୨, ଯାହାର ଅର୍ଗଳ ଅର୍ଥାତ୍ ପ୍ରତିବନ୍ଧକ ନାହିଁ । |
| ଅନର୍ଯାପି | ସମ୍ଭବତଃ ସଂ 'ଅପର୍ଯାପ୍ତ' ଶବ୍ଦରୁ ଉତ୍ପନ୍ନ । ୪୯୬।୧, 'ପର୍ଯାପ୍ତ'ର ଅର୍ଥ ପ୍ରଚୁର, ଯଥେଷ୍ଟ । କିନ୍ତୁ ଲୋକେ ଏହି ଅର୍ଥରେ 'ଅପର୍ଯ୍ୟାପ୍ତ' ଓ 'ଅନର୍ଯାପ' ଶବ୍ଦ ବ୍ୟବହାର କରନ୍ତି । ଯଥା—'ସେ ଅପର୍ଯାପ୍ତ ବା ଅନର୍ଯାପ ପଇସା ରଖିଛି ।' |
| ଅନୁଗୃହ | ବି, ସଂ ଅନୁଗ୍ରହ ୧୨୦୭।୧ |
| ଅନୁପମ | ବି, ନାମବାଚକ ୯୬।୨, ସଂ ମହାଭାରତରେ 'ଅନୁଗ୍ରହ୍ଲାଦ' । |
| ଅନୁ-ବ୍ରତ୍- | କ୍ରି, ଅକ, ସଂ ଅନୁ-ବୃତ୍, ୭୮୦।୧ |
| ଅନୁବ୍ରତେ | କ୍ରି ବି°, ସ ଅନବରତ > ଅନୁବ୍ରତ + ଓସ୍ଥା-ଏ, ୨୪୧।୨ ସର୍ବଦା । |
| ଅନୁ-ସର୍- | କ୍ରି, ସକ, ସ ଅନୁ-ସୃ ୯୯।୧ |
| ଅନ୍ତକାଳବନ୍ଧା | ବି°, ଅନ୍ତକାଳ-ବନ୍ଧ୍ + କର୍ତ୍ତୃବାଚ୍ୟ-ଆ, ଅନ୍ତକାଳରେ ବନ୍ଧାଏ ଅର୍ଥାତ୍ ରକ୍ଷା କରେ ଯେ, ୨୪।୨ |
| ଅନ୍ତର | ବି° ସ ଅନ୍ତର୍ (ଅବ୍ୟୟ), ୭୮୧।୨ ପୃଥକ୍ । |
| ଅନ୍ତରେ | କ୍ରି ବି°, ୧୯୬।୧, ପରେ |
| ଅନ୍ତର୍ଧାନେ | ବି, 'ଅନ୍ତର୍ଧାନ'ର ପଦ୍ୟ-ପ୍ରୟୋଗ, ୧୪୧।୨ |
| ଅନ୍ତେଶ୍ୱରପୁରୀ | ବି, ୨୮୬।୨, ରାଜାଙ୍କ ଅନ୍ତଃପୁର, ରାଣୀହଂସପୁର । |
| ଅନ୍ତୋଡ଼ | ବି, ୪୨୩।୧, ପ୍ରସୂତି ଗୃହ ବା ପ୍ରସୂତି ଗୃହରେ ଜଳିବା ଅଗ୍ନି । ବର୍ତ୍ତମାନ 'ଅନ୍ତୁଡ଼ି' ମରାଠୀ—ଅନ୍ତୁଡ଼ୀ । |
| ଅନ୍ଧା | ବି°, ସ ଅନ୍ଧ + ସ୍ୱାର୍ଥେ -ଆ, ୧୦୦୦।୨ |
| ଅନ୍ଧେକ | ବି, ନାମବାଚକ, ଅନ୍ଧକ, ୧୦୭୩।୨, ଏକ ଅସୁରର ନାମ । |
| ଅନ୍ୟାକାର | ବି°, ସ ଅନାକାର, ୮୦୭।୧, ଯାହାର ଆକାର ନାହିଁ (ଅଣାକାର) |
| ଅନ୍ୟାସୁର | ବି, ସ ଅନାସୁର, ୮୯୫।୨, ଯାହା ଆସୁର ନୁହେଁ । |
| ଅପଛରା | ବି, ସ ଅପ୍ସରା > ଓ: ଅପସରା, ଅପଛରା, ୫୫୦।୧ |
| ଅପଗ୍ରାତ | ବି, ସ ଅପଖ୍ୟାତି, ୮୮୪।୨, ବଦ୍ନାମ, ନିନ୍ଦା । |
| ଅପ୍ରମିତା | ବି°, ସ ଅପ୍ରମିତ + ଓ: ସ୍ୱାର୍ଥେ -ଆ ୮୯୫।୨, ଅସଂଖ୍ୟ, ଅକଳନ୍ତ । |
| ଅପ୍ରାଧ | ବି, ସ ଅପରାଧ ୨୪୦।୨ |
| ଅଫୁଟ | ବି°, ସ ଅସ୍ଫୁଟ, ୧୦୪୬।୧, ଫୁଟି ନ ଥିବା । |
| ଅବ-ତର୍- | କ୍ରି, ଅକ, ସ ଅବ-ତୃ, ୩୩୦।୨ |
| ଅବ-ଧାର୍- | କ୍ରି, ସକ, ସ ଅବ-ଧୃ + ଣିଚ୍ ୮୩୯।୨ |
| ଅବଲା | ବି, ତତ୍ସମ ୧୩୮।୧, 'ସ୍ତ୍ରୀ' ଅର୍ଥରେ ବ୍ୟବହୃତ । |

ଅବା — ଅ, ସଂ ଅଥବା, ପ୍ରା: ଅହବା ୫୧୯।୧

ଅବଗଇ — ବି°, ସଂ ଅବିବାହିତା। ଅବିବାହା, ସ୍ତ୍ରୀଲିଙ୍ଗ, ୧୪୧।୧, ବିବାହ ହୋଇ ନ ଥିବା (କନ୍ୟା)।

ଅବିବେକ — ବି, ସଂ ଅବିବେକ, ୫୦୧।୧

ଅଭାବୀ — ବି°, ଅଭାବ + ଅସ୍ତ୍ୟର୍ଥକ -ଈ ୧୪୨୭।୨ ଗ୍ରୀବସ୍ଥାନ।

ଅଭିଷ୍ଟି — ବି, ସଂ ଅଭୀଷ୍ଟ + ଓ: ସ୍ୱାର୍ଥିକ -ଇ, ୪୨୭।୧, ଅଭିଳାଷ।

ଅମନାତ୍ୟ — ବି°, ସଂ ଅମାତ୍ୟ, ୧୧୧।୨

ଅମରାଧି — ବି, ସଂ ଅମରାଧିପ, ୧୨୧।୧, ଦେବତାମାନଙ୍କର ରାଜା ବା ଶ୍ରେଷ୍ଠ ଦେବତା।

ଅମରଷ — ବି, ସଂ ଅମର୍ଷ, ୧୪୯୭।୨, ବିଦ୍ୱେଷ, ଅସହନଶୀଳତା।

ଅମାବଇ — ବି, ସଂ ଅମାବସୀ (ରାତ୍ରି) ୧୧୨୭।୧, ଅମାବାସ୍ୟା ରାତ୍ରି।

ଅମୋହ — ବି°, ସଂ ଅମୋଘ, ୧୯୮।୨, ଅବ୍ୟର୍ଥ।

ଅରଜ୍- — କ୍ରି, ସକ, ସଂ ଅର୍ଜ୍, ୭୦୨।୧

ଅରିଷ୍ଟି — ବି, ସଂ ଅରିଷ୍ଟ, ୧୭୭।୨, ମନ୍ଦ ଗ୍ରହ ବା ମନ୍ଦ ଭାଗ୍ୟ।

ଅର୍ଜ୍- — କ୍ରି, ସକ, ତତ୍ସମ, ୮୧୮।୨

ଅର୍ଥେ — ପା: ପ:, ଅର୍ଥୀ ଦ୍ୟୋତକ, ୨୭୭।୨, ନିମନ୍ତେ, ପାଇଁ।

ଅର୍ଧଉଦଆ — ବି, ସଂ ଅର୍ଧୋଦୟ, ୧୩୭୨।୧, ପର୍ବବିଶେଷ, ମାଘ ମାସର ରବିବାରେ ସୂର୍ଯ୍ୟଙ୍କର ଅର୍ଦ୍ଧଉଦୟ ହେଲେ ଗଙ୍ଗା ଆଦି ତୀର୍ଥରେ ସ୍ନାନ କରିବାର ଯୋଗ।

ଅର୍ନ୍ନ
ଅର୍ଣ୍ଣ } — ବି, ସଂ ଅନ୍ନ, ୨୮୨।୧

ଅଲତା — ବି, ସଂ ଅଲକ୍ତକ, ୫୮୦।୧

ଅଳି — ବି, ଦେଶଜ, ୩୨୩।୨, ଜିଦ୍, ହଠ, ଅଭିଳଷିତ ପଦାର୍ଥ ବା କାର୍ଯ୍ୟ ନିମନ୍ତେ ଅନ୍ୟ ନିକଟରେ ବାରମ୍ବାର ସନିର୍ବନ୍ଧ ପ୍ରାର୍ଥନା ବା ଅନୁରୋଧ, To have enough—S. D.

ଆଲେକତ — ବି°, ସଂ ୧୧୨୦।୧, ସଂସ୍କୃତରେ ଏହାର ଅର୍ଥ—ନ ଲେକ୍ଷିତ ଅର୍ଥାତ୍ ଦେଖା ହୋଇ ନଥିବା, କିନ୍ତୁ ଆଲୋଚିତ ଗ୍ରନ୍ଥରେ 'ଗୁରୁତର' ବା 'ସାଂଘାତିକ' ଅର୍ଥରେ ବ୍ୟବହୃତ।

ଅଶି — ସଂଖ୍ୟା ୮୦. ସଂ ଅଶୀତି, ପ୍ରା. ଅସିଇ, ୧୦୩।୨

ଅଶ୍ୱିନ — ବି, ସଂ ଅଶ୍ୱିନୀ, ୧୨୩୪।୧, ନକ୍ଷତ୍ର ବିଶେଷ।

ଅସବ୍ୟ — ବି, ସଂ ଅସଭ୍ୟ, ୮୧୪।୧

ଅସମ୍ଭାଳି — ସଂ ଅସମ୍ଭାଳିତ ୯୦୪।୧

ଅସାଷ୍ଟମ — ବିଂ, ସଂ ଅସାଷ୍ଟାଙ୍ଗ > ? ୧୦୩୩।୧ ଅଚେତନ, ମୂର୍ଚ୍ଛିତ ।

ଅହର୍ନିଶି — କ୍ରି ବିଂ, ସଂ ଆହର୍ନିଶ, ୬୨।୨ ଦିନରାତି ।

## ଆ

ଆ- — କ୍ରି, ଅକ, ସଂ ଆ-ଯା > ପ୍ରା: ଆଆ, ୫୪୮।୨, ୫୧୫।୨

ଆଉଷ — ବି, ସଂ ଆୟୁଷ୍, ୧୨୬।୨

ଆଈ — ବି, ସଂ ଆର୍ଯିକା, ୬୧୩।୧ ଝିଅକୁ ସ୍ନେହରେ 'ମା' କହିଲାଭଳି 'ଆଈ' କୁହାଯାଇଛି ।

ଆଉ — ଅ, ସଂ ଅପର > ? (ଅପର > ଅବର > ଆବର > ଆଉର > ଆଉ ? ), ୬୮୩।୨; ଆଉ-ଦେଶୀ P. D.

ଆଉଂଶ୍- — କ୍ରି, ସକ, ସଂ ଆ-ମୃଶ୍, ପ୍ରା. ଆଉଂସ୍; ୩୨୩।୧

ଆକଟ — ବି, ଦେଶଜ, ତାଗିଦ୍, ଅଧସ୍ତନମାନଙ୍କ ପ୍ରତି ଗୁରୁଜନଙ୍କ ଶାସନ, ୯୫୦।୨; ଅକଟ—S. D.

ଆକାମାବଇ — ବି; ଆଷାଢ଼, କାର୍ତ୍ତିକ, ମାଘ, ବୈଶାଖ—ଏ ଚାରିଟି ଧର୍ମମାସ । ଏଥିରେ ତୀର୍ଥସ୍ନାନ, ଦାନାଦି କାର୍ଯ୍ୟ କଲେ ପ୍ରଭୂତ ପୁଣ୍ୟ ଲାଭ ହୁଏ । ଏହି ଚାରିଟି ମାସର ମୂଳ ସ୍ୱର ଅକ୍ଷର ନେଇ 'ଆ କା ମା ବୈ' ଶବ୍ଦଟି ଗଠିତ; ବୈ > ବଇ, ୧୪୮୪।୨ ।

ଆକୋଞ୍ଚିତ — ବିଂ, ସଂ ଆକୁଞ୍ଚିତ, ୧୪୪୩।୧

ଆ-କଷ୍- — କ୍ରି, ସକ, ସଂ ଆ-କୃଷ୍, ୧୦୫୨।୨

ଆଖଡ଼ା, ଆଖେଡ଼ା — ବି, ସଂ ଆକ୍ରୀଡକ, (ଆଖେଟକ > ?) ୧୧୩୯।୧, ବ୍ୟାୟାମ ଓ ଯୁଦ୍ଧବିଦ୍ୟା ପ୍ରଭୃତି ଶିକ୍ଷା କରିବାର ସ୍ଥାନ ।

ଆଖି — ବି, ସଂ ଅକ୍ଷି, ପ୍ରା: ଅକ୍ଖି, ୫୬୩।୨

ଆଗରେ, ଆଗେ — ଅ: ଅ:, ଅଧିକରଣଦ୍ୟୋତକ, ସଂ ଅଗ୍ର > ପ୍ରା. ଅଗ୍ଗ > ଓ: ଆଗ + ୭ମୀ -ରେ, -ଏ । ୬୧୨।୨, ୫୪୦।୧

ଆଗହୁଁ — ୫୧୩।୨, ଆଗ ୫ମୀ ହୁଁ ।

ଅଗିଅଣି — ବିଂ, ସଂ ଅଗ୍ରଣୀ ୧୫୨୨।୨ ଯେ ଆଗରେ ଚାଲେ ।

ଆଗୋ — ଅ, ସମ୍ବୋଧନବାଚକ, ସଂ ଅଙ୍ଗ > ? ୬୮୫।୧

ଆଙ୍କୋର — ସଂ ଅଙ୍କୁର. ନାମଧା: କ୍ରି—ଆଙ୍କୋରୁ ୩୫।୧

ଆଜ — କ୍ରି ବିଂ, ସ ଅଦ୍ୟ > ପ୍ରା: ଅଜ୍ଜ, ୧୨୮୫।୨

ଆଜୁଁ — ଆଜ + ୫ମୀ ହୁଁ, ୨୩୯।୧

ଆଞ୍ଚୋବନ — ବି, କ୍ରିୟାବାଚକ, ସଂ ଆଚମନ ୪୬୨।୨

ଆଠ — ସଂଖ୍ୟା ୮, ସଂ ଅଷ୍ଟ > ପ୍ରା: ଅଟ୍ଠ, ୧୨୩୫।୧

ଆଡ଼ମ୍ବ — ବି ଦେଶଜ, ୧୧୨୬।୨ ଏକପ୍ରକାର ଯୁଦ୍ଧ ।

ଆଡ଼େ — ଦେଶଜ, ପା: ପ:, ଅଧିକରଣ ଦ୍ୟୋତକ, ୩୫।୨ ବୃତ୍ତୀ—ଓର୍ ।

ଆଣ୍- — କ୍ରି, ସକ, ସଂ ଆ-ନୀ, ପ୍ରା: ଆଣ୍; ୧୮୫।୨

ଆଧିପତି — ବି, ସଂ ଅଧିପତି ୬୩।୨, ମାଲିକ; ପ୍ରଭୁ ।

ଆନ — ସ, ସଂ ଅନ୍ୟ, ୧୮।୨, ୩୩୧।୧

ଆପଣ — ସ, ଆତ୍ମବାଚକ, ସ ଆତ୍ମନ୍ > ପ୍ରା: ଅପ୍ପଣ, ୧୫୩୯।୨, ଆପଣେ (ଆପଣ + ୧ମା-ଏ) ୯୯।୧

ଆପଣା — ସ ଆତ୍ମନା > ପ୍ରା: ଅପ୍ପଣା ୧୩୯।୨

ଆପେ — ସଂ ଆତ୍ମ > ପ୍ରା: ଅପ୍ପ > ଓ: ଆପ + ୧ମା -ଏ, ୨୭୬।୧

ଆପାଦ — ବି, ସଂ ଆପଦ୍, ୫୭୨।'

ଆବର — ସ, ସଂ ଅପର, ୧୧୫।୨

ଆବୋର୍- — କ୍ରିୟା, ସକ, ସଂ ଆ-ବୃ, ୨୭୬।୧

ଆମନ୍ୟାସ୍ତ — ବି, ସ ଆମ୍ନାୟ, ୧୦୮୮।୧ ବେଦ ।

ଆମୋଦ- — ବି, ତତ୍ସମ, ଆମୋଦଇ ୧୩୧୯।୨ ନାମଧାତୁକ୍ରିୟା ।

ଆମ୍ବିଳ — ବି, ସଂ ଅମ୍ଳ > ଅଥବା ଆମ୍ବ + ଇଲ; ଆମ୍ବଖଟା ବା ଯେ କୌଣସି ପ୍ରକାର ଖଟା, ୧୩୭୩।୧ ।

ଆମ୍ଭେ — ୧ମ ପୁ: ବ: ସଂ ଅହାଭିଃ > ପ୍ରା: ଅମ୍ହେହି ଅଥବା ବୈ: ଅସ୍ମେ > ପ୍ରା: ଅମ୍ହେ, ୨୧୭।୧

ଆମ୍ଭ- — ୧ମ ପୁ: ବ:, ବହୁବଚନ ଉର୍ଯ୍ୟକ୍ରୂପ, ସଂ ଅସ୍ମାକଂ > ପ୍ରା: ଅମ୍ହଂ, ୬୨୯।୧, ୩୦୮।୧ ।

ଆର — ସ ବି°, ସଂ ଅପର >, ୫୨୮।୨

'ଯାବତ ନ ପୁରେ ହୃଦର
ତାବତ ଜ୍ଞାନ କାହିଁ ଆର ।' (ଭାଗବତ ୧୧ ସ୍କନ୍ଧ, ୧୦ ଅଧ୍ୟାୟ)

ଆରତ — ବି°, ସଂ ଆର୍ତ୍ତି, ୨୩୫।୨

ଆର୍ଦ୍ରା — ବି, ସଂ ଆର୍ଦ୍ରା, ୧୨୫୧।୧ ନକ୍ଷତ୍ର ବିଶେଷ ।

ଆରମ୍ଭ — ବି, କ୍ରିୟାବାଚକ, ତତ୍ସମ ୫୦୫।୨, ଆଟୋପ, ଦମ୍ଭ ।

ଆରେକ — ସ ବି°, ଆର + ଏକ, ୫୫।୨

ଆରୋହ- — କ୍ରି, ସକ, ସଂ ଆ-ରୁହ୍, ୧୨୧।୨

ଆର୍ଦୋଳ — ବି. ଦେଶଜ, ୧୭୯।୨, ଅଳି, ଜଞ୍ଜାଳ ।

ଆଳସ — ବି, ସଂ ଆଳସ୍ୟ, ୪୦୩।୨

ଆଳ — ବି, ସଂ ଆଳୟ, ୫୫୪।୧

ଆଶ — ବି, ସଂ ଆଶା, ୬୩୦।୦

ଆଶ୍ୱାସ — ବି, କ୍ରିୟାବାଚକ, ନାମଧାତୁକ୍ରିୟା—ଆଶ୍ୱାସିଲେ ୬୮୩।୨

ଆୟୁ — ବି, ସଂ ଆୟୁଷ୍, ୩୧୩।୧

ଆସ୍- — କ୍ରି, ଅକ, ସଂ ଆ-ବସ୍, ପ୍ରା: ଆଇସ୍ ୧୬୫।୨

ଆହ୍ୱୋ — ଅ, ସମ୍ବୋଧନବାଚକ, ସଂ ଅହ୍ୱୋ, ୧୦୯।୧

## ଇ

ଇ — ଅ, ସଂ ହି, ୭୨୫।୧

-ଇ — ୭ମୀ ଚିହ୍ନ, ସ୍ୱେଥି (ସ୍ୱେଥ+ଇ) ୧୨୪୯।୨, ନଅଡ଼ (କାହ୍ନୁ ପ୍ରା, ଚର୍ଯ୍ୟା ୭), ନଗଟ > ନଅଡ଼+୭ମୀ -ଇ ।

-ଇଂ — ୭ମୀ ଚିହ୍ନ, ସନ୍ଧ୍ୟସ୍ଥଇଂ ୮।୧

ଇଚ୍ଛ୍- — କ୍ରି, ସକ, ସଂ ଇଷ୍, ପ୍ରା ଇଚ୍ଛ୍, ୫୭୭।୨

ଇନ୍ଦ୍ରପ୍ରସ୍ଥ — ବି, ସଂ ଇନ୍ଦ୍ରପ୍ରସ୍ଥ, ୭୭୫।୧ ପ୍ରାଚୀନ ନଗର ବିଶେଷ ।

ଇନ୍ଧ୍ର — ବି, ସଂ ଇନ୍ଧ୍ରଧ୍ୱ, ୧୦୨୨।୨ 'ଇନ୍ଧ୍ର ଧରଇ ପୁଣି କଲେ' ଭାଗବତ ୧୧-୧୦ ।

## ଈ

ଈଶାନ୍ୟ — ବି, ସଂ ଐଶାନ୍ୟ, ୩୫।୨ ।

## ଉ

-ଉ — ୫ମୀ ଚିହ୍ନ, କୂଳୁ (କୂଳ+ଉ) ୮୧।୧

-ଉଂ — ୫ମୀ ଚିହ୍ନ, ଶଶଧରୁଂ (ଶଶଧର+ଉଂ) ୭୧।୧, ଦ୍ୱେହାଉଂ ୫୨୮।୨ । ଉଶ୍ୱର ଆଙ୍କଉଁ (ବୁ. ସୁ ୫୦)

ଉଆଂସୀ — ବି, ସଂ ଅମାବସ୍ୟ ବା ଅମାବାସ୍ୟା > ଉଆଂସ+ଜାତାର୍ଥେ -ଈ; ଉଆଁସରେ ଜାତ କନ୍ୟା, ୧୨୯୭।୧ ।

ଉଚ୍ଚର୍- — କ୍ରି, ସକ, ସଂ ଉତ୍-ଚର୍+ଣିଚ୍, ୨୧୬।୨

ଉତ୍ସବ — ବି, ସଂ ଉତ୍ସବ, ୪୬୩।୨

ଉଚ୍ଛୁଡ୍- — କ୍ରି, ସକ, ସଂ ଉତ୍+ଛଦ୍, ପ୍ରା ଉଚ୍ଛଡ୍ଡ୍, ୪୨୯।୨

ଉଚ୍ଛୁଳ୍- — କ୍ରି, ଅକ, ସ ଉତ୍-ଶଲ୍, ପ୍ରା ଉଚ୍ଛଲ୍, ୫୫୩।୨

ଉଜାଣି — ବି, ସଂ ଉଦ୍ୟାନ > ପ୍ରା ଉଜ୍ଜାଣ > ଓ ଉଜାଣ+ସ୍ୱାର୍ଥେ -ଇ, ୧୪୩୮।୧ ସ୍ରୋତର ଉପରକୁ ଉଠିବା ।

ଉଞ୍ଚା — ବି, ସଂ ଉଚ୍ଚ > ଉଚ୍ଚ+ସ୍ୱାର୍ଥେ -ଆ, ୨୧।୧

ଉଠ୍- — କି, ଅକ, ସଂ ଉତ୍-ସ୍ଥା > ପ୍ରା ଉଟ୍ଠ୍, ୪୩୫।୧

ଉଡ୍- — କି, ଅକ, ସ ଉତ୍-ଡୀ, ପ୍ରା ଉଡ୍ଡ୍, ୭୯।୨

ଉତକର୍ମ — ବି, ସଂ ଉତ୍କର୍ମ, ୨୭୭।୧, କଠିନ କର୍ମ ।

ଉତପନ — ବିଂ, ସଂ ଉତ୍ପନ୍ନ, ୬୪।୨

ଉତପଠ — ବି, ସଂ ଉତ୍ପତ୍ତି, ୬୭।୨

ଉତ୍ତମା — ବିଂ, ସଂ ଉତ୍ତମ+ଓ ସ୍ୱାର୍ଥିକ -ଆ, ୨୪।୨

ଉଦଣ୍ଡ — ବିଂ, ସଂ ଉଦଣ୍ଡ (ଉତ୍+ଦଣ୍ଡ), ୪୬୫।୧ ,ଯାହାର ଦଣ୍ଡ ଉପରକୁ ଥାଏ, ସିଧା, ଉନ୍ନତ (ପ୍ରଥମ ଅର୍ଥରେ ବ୍ୟବହୃତ ହୋଇଛୁ) ।

ଉଦାସି — ବିଂ, ସଂ ଉଦାସୀନ, ୧୦୧୭।୨, 'ବିଫଳ' ଅର୍ଥରେ ବ୍ୟବହୃତ ।

ଉଦେ — ବି, କି ସ୍ୱାବାଚକ, ସଂ ଉଦୟ ୯୦୨।୨

ଉଦେକ — ବି, ସଂ ଉଦକ, ୧୨୦୪।୨

ଉଧର୍ — କି, ସକ, ସଂ ଉତ୍+ଧୃ, ଉଦ୍ଧର୍, ୯୩୯।୨

ଉଧାର୍- — କି, ସକ, ସଂ ଉତ୍+ଧୃ+ଣିଚ୍ ଉଦ୍ଧାର୍, ୮୦୮।୨

ଉଣା — ବିଂ, ସଂ ଊନ > ଓ ଉଣ+ସ୍ୱାର୍ଥେ-ଆ, ୪୯୩।୧

ଉପଦର୍ପ — ବି, ସଂ ଉପଦ୍ରବ, ୧୨୨୪।୧

ଉପରେ — ଯା ପ, ଅଧିକରଣ ଦ୍ୟୋତକ, ସଂ ଉପରି > ପ୍ରା ଉପ୍ପରି, ୭୬୧।୧

ଉପଲମ୍ବ — ବି, ସଂ ଉପଲମ୍ଭ ବା ଉପାଲମ୍ଭ, ୧୧୬୫।୨, ଉପହାସ ।

ଉପୁର୍- — କି, ଅକ, ସଂ ଉତ୍+ପତ୍+କର୍ମଣି ଯ > ପ୍ରା ଉପ୍ପଚ୍ଛ୍, ଉଠପଡ ହେବା ୧୪୬୨।୧ ।

ଉପୁଜ୍- — କି, ଅକ, ସଂ ଉତ୍+ପଦ୍+କର୍ମଣି ଯ, ପ୍ରା ଉପ୍ପଜ୍ଜ୍, ୪୧୭।୧

ଉପେକ୍ଷ୍- — କି, ସକ, ସଂ ଉପ-ଈକ୍ଷ୍, ପ୍ରା ଉପେକ୍ଖ୍, ୭୪୨।୨

ଉପୋସ୍ଥ — ବି. ସଂ ଉପସ୍ଥ, ୧୪୩୫।୧, ପୁରୁଷର କାମେନ୍ଦ୍ରିୟ ।

ଉଭ — ବିଂ, ସଂ ଉଦ୍ଭବ> ପ୍ରା ଉବ୍ଭଅ, ୭୭୦।୨, ଠିଆ, ଦଣ୍ଡାୟମାନ, ମରାଠୀ— ଉଭ erect M. E. D.

ଉଭାର୍- — କି,ସକ,ସଂ ଉତ୍-ଭୂ+ଣିଚ୍, ପ୍ରା ଉବ୍ଭାର୍, ଠିଆ କରିବା ୫୨।୨

ଉରଗଭରହାସ — ବିଂ ସ୍ତ୍ରୀଲିଙ୍ଗ, ୫୭୮।୨ ସର୍ପମସ୍ତ ହାର ଯାହାଙ୍କର ।

ଉର୍ଦ୍ଧ — ବି, ସଂ ଊର୍ଦ୍ଧ୍ୱ, ୧୦୭୨।୧

ଉଲଟ — ବିଂ, ସଂ ଅବ-ଲୁଠ୍ > ପ୍ରା, ଓଲ୍ଲୋଟ୍ଟ୍>ଓ ଓଲଟ୍, ଉଲଟ୍+ କର୍ତ୍ତୃବାଚ୍ୟରେ -ଅ, ୧୦୪୭।୨ ଯାହା ଓଲଟି ଥାଏ; 'ଉଲ୍ଲଟ— ଦେଶୀ, P D.

ଉଶ୍ବାସ- ବି, ସଂ ଅବଶ୍ବାସ, ନାମଧାତୁକି ସ୍ତ୍ରୀ—ଉଶ୍ବାସିଲ ୯୬।୨

ଉସତ ବିଂ, ଦେଶଜ,୪୩୦।୧, ଆନନ୍ଦିତ, ଅହ୍ଲାଦିତ। 'ମଞ୍ଚରେ ନରନାରୀ ଉସତେ ବୃନ୍ଦାବୃନ୍ଦ' ଦା: ଗ୍ର:—ଦୁରଧନୁଭଙ୍ଗ। ମରାଠୀ—'ଉସନ୍ତ' a pause from labour, M. E. D.

ଉଦ୍ବାନ୍ତ ବି, ଉଦ୍ବାର > ? (ଉଦ୍ବାର ଦ୍ରଷ୍ଟବ୍ୟ) ୯୦୪।୨, ଅନ୍ତରାଳ।

## ଋ

ଋଷଭ ବି, ସଂ ବୃଷ ରାଶି, ୬୪୬।୧ ଜ୍ୟେଷ୍ଠ ମାସ।

## ଏ

ଏ- (-ୟେ) ଏକବଚନ ପ୍ରତ୍ୟୟ, ୭୪।୨, ୮୬।୨, ୧ମା ବହୁବଚନ-ବିଭକ୍ତିଚିହ୍ନ—୧୭୨।୨, ୫୦୬।୨, ୨ୟା ଏକବଚନ-ବିଭକ୍ତିଚିହ୍ନ—୧୩୧୨।୨, ୨ୟା ବହୁବଚନ-ବିଭକ୍ତିଚିହ୍ନ—୧୧୩୧।୧, ୧୧୫୪।୨; ୩ୟା ବିଭକ୍ତିଚିହ୍ନ—୪।୧, ୧୩୧୭।୧; ୭ମୀ ବିଭକ୍ତିଚିହ୍ନ—୫୫୨।୨, ୮୭୦।୧, ୭ମ'-ୟେ, -ଏ :—ତଥାପି କୃପାୟେ ପୁରୁଷୋତ୍ତମ (ଜ. ଭ ୧-୧୭); ଲଙ୍କାୟେ ଚଳିତ ହୋଇ ଚନ୍ଦ୍ରାୟେ ଦୁର୍ବଳଦେଖି (ର. ମ. ୧୩-୫); ଜନମ ଉଠିବା ବସିବାଏ + ନକର ବକର ହାଡ଼ମାନଙ୍କର ତାପ ସହିବାଏ, ଜଠରାଗ୍ନି ଜଳିବାଏ + ବାତପିତ୍ତଶ୍ଳେଷ୍ମବ୍ୟାଧି ପୀଡ଼ିବାଏ + ରୁଧିରମାନଙ୍କର ଗଢ଼ିବାଏ + ଦୁଷ୍ଟ ଆହାରଙ୍କ ପଡ଼ିବାଏ, ନର୍କର ଜାପଜସ୍ବ ସହିବାଏ + ଜନମ ଉଠିବା ବସିବାଏ (ରୁ. ସୁ ପୃ. ୧୩), ବର୍ତ୍ତମାନ ମଧ୍ୟ ଆକାରାନ୍ତ ଶବ୍ଦରୁ ୭ମୀ -ଏ ପ୍ରଚଳିତ। ଯଥା—ରାସ୍ତାଏ ରାସ୍ତାଏ ଯିବୁ।

ଏଁ- ୩ୟା ଚିହ୍ନ—୮୮୧।୧, ଅଳିଏଁ କାଳିଏଁ ବାଟ ବୁଝେଇ (କାହ୍ନୁପା ଚର୍ଯ୍ୟା ୭)।

ଏଣ (-ୟେଣ) ୩ୟା ଚିହ୍ନ—୪୨୫।୧, ୧୮୯।୨; ୭ମୀ ଚିହ୍ନ—୫୭୭।୧, ୧୧୨।୨

ଏ ସର୍ବନାମ। 'ୟେ' ଦ୍ରଷ୍ଟବ୍ୟ

ଏକା ବିଂ, ସଂ ଏକକ > ପ୍ରା ଏକ୍କଅ, ୧୦୨୫।୨

ଏକାଦଶମ ବିଂ, ପୂରଣବାଚକ, 'ନବମ' 'ଦଶମ' ପ୍ରଭୃତିର ସାଦୃଶ୍ୟରେ ଗଠିତ, ୪୦୯।୨

ଏକାଦଶି ବି, ସଂ ଏକାଦଶୀ, ୨୫୫।୧

ଏକୋଇଶ ସଂଖ୍ୟା ୨୧, ସଂ ଏକବିଂଶ > ପ୍ରା ଏକ୍କବିସ, ୧୯୦।୨

ଏଡ଼େ ବିଂ, ସର୍ବନାମଜ, ୩୨୮।୨

ଏଣୁ କ୍ରି, ବିଂ, ସର୍ବନାମଜ, ୫୭।୧

ଏତେ ବି°, ସର୍ବନାମଜ, ୩୬୮|୧

{ଏଥ-(ସ୍ୱେଥ) 'ଏ' ସର୍ବନାମର ଅଧିକରଣାତ୍ମକ ଉପର୍ଯ୍ୟକ୍‌ରୂପ, ୩୯୮|୨, ୯୩୫|୨
{ଏଥି-(ସ୍ୱେଥି) ୬୨୫|୧ ମୋତେ ଯୋଇଲ୍ଲ ଏଥ (ମ. ମ. ୨-୪୪); ସଂ ଅତ୍ର > ପ୍ରା ଏତ୍ଥ |

ଏବେ କ୍ରି ବି°, ସର୍ବନାମଜ, ୧୬|୨

ଏମନ୍ତ ବି°, ସର୍ବନାମଜ, ୧୫୦|୧

ଏହନ ବି°, ସର୍ବନାମଜ, ୨୧୯|୧ |

## ଓ

ଓଡ ବି, ସଂ ଉଡ୍ର > ପ୍ରା ଓଡ୍ଡ, ଓଡ଼ିଶାର ପ୍ରାଚୀନ ଜାତିବିଶେଷ ୯୩|୧

ଓଡଣୀ ବି, 'ଓଡ'ର ସ୍ତ୍ରୀଲିଙ୍ଗ, ୯୨|୨ ଓଡ଼ିଆଣୀ |

ଓଡ଼ିସା ବି, ସଂ ଉଡ୍ରବିଷୟ, ଉଡ୍ରମାନଙ୍କର ବିଷୟ ଅର୍ଥାତ୍ ରାଜ୍ୟ, ୯୩|୨

ଓହ୍ୱୋ ସର୍ବନାମ, ସଂ ଉଭୌ, ୧୩୩୧|୧, ଉଭୟ |

ଓହ୍ଲା- କ୍ରି, ଅକ, ସଂ ଅବ-ରୁହ୍ > ପ୍ରା ଓଲହ୍, ୮୭୫|୨ |

## କ

-କ ଏକବଚନ ପ୍ରତ୍ୟୟ, ଧନକ ୬୨୩|୧, ଚନ୍ଦ୍ରକ ୫୮୯|୨

-କ ସ୍ୱାର୍ଥିକ ପ୍ରତ୍ୟୟ, କଲେକ ୮|୨, ସନ୍ଧ୍ୱାକ ୨୯୬|୨, ଏସନେକ ୬୫୯|୧, କେସନେକେ—କେସନକ + ଆସ୍ଥା -ଏ ୩୩୧|୨ |

-କ ୬ଷ୍ଠୀ ବିଭକ୍ତିଚିହ୍ନ—ଜନଙ୍କ (ଜନ° + କ) ୩୧୦|୧ '-କ' ୬ଷ୍ଠୀ ଏକବଚନରେ ମଧ୍ୟ ବ୍ୟବହୃତ ଥିଲା | ଯଥା—ଛନ୍ଦକ ବନ୍ଧ (ଲୁଇପା ଚର୍ଯ୍ୟା ୧) (ଛନ୍ଦକ—ଛନ୍ଦର) |

-କଇ ୨ୟା ଚିହ୍ନ—୯୨୦|୨, ୪ର୍ଥୀ ଚିହ୍ନ—୫୯|୨

-କଇଁ ୨ୟା ଚିହ୍ନ—୧୬୨|୧

କଇବର୍ତ୍ତି ବି, ସଂ କୈବର୍ତ୍ତୀ, ୮୯୩|୨, କେଉଟୁଣୀ

କଉଡ଼ି ବି, ସଂ କପର୍ଦ୍ଦିକା > ପ୍ରା କବଡ୍ଡିଆ, ୮୬୭|୧

କଉଣୋପ ବି, ସଂ କୌଣପ, ୧୨୩୧|୧, ଅସୁର

କଉପୁନ ବି, ସଂ କୌପୀନ, ୧୬୩|୨

କଉଂଣିପି ବି°, ସର୍ବନାମଜ, ୮୮|୨, କେହୁଣସି ସୁଖକୁ......(ର. ମ. ୨-୫); କେହୁଣି ପ୍ରକାରେ......(ର. ମ. ୨୪-୧୦)

କକଡା ବି, ସଂ କର୍କଟକ > ପ୍ରା କକ୍କଡଅ, ୧୧୨୯|୧

କଙ୍କଣି ବି, ସଂ କଙ୍କଣ + ଓ କ୍ଷୁଦ୍ରାର୍ଥେ -ଇ |

କଛ — ବି, ସଂ କକ୍ଷ, 'ପାର୍ଶ୍ୱ' ଅର୍ଥରେ ବ୍ୟବହୃତ, ୫୫।୧, କଚ୍ଛତେ (କଛ+ ଅତେ) ୩୫।୧

କଟାର — ବି, ସଂ କଟ୍ଟାରିକା, ହାଣିବା ନିମନ୍ତେ ଲୁହାର ହତିଆର ବିଶେଷ, ୪୨୯।୧

କଟାଳ — ବି, ଦେଶଜ, ତାମିଲ—କୋଟ୍ଟାଲଇ, distress, torment, (D.E.D.,) ସନିର୍ବନ୍ଧ ଅନୁରୋଧ, ଜିଦ୍, ଅଳି; ନାମଧାତୁକ୍ରିୟା— କଟାଳନ୍ତି ୨୫୧।୨

କଡ଼ି — ବି, ସଂ କଳି ବା କଳିକା, ୧୪୪୬।୨

କଢ — ଧା. ପ ଅଧିକରଣ ଦ୍ୟୋତକ, ଦେଶଜ, ୧୩୫।୨, ପାଖ।

କପଚ — ବି, ସଂ କବଚ, ୧୪୪୧।୨

କପୂର — ବି, ସଂ କର୍ପୂର > ପ୍ରା କପ୍ପୂର, ୯୦୦।୨

କପୋଇ — ବି, ସଂ କର୍ପର > ପ୍ରା କପ୍ପର > ଓ କପୋର+ସ୍ୱାର୍ଥେ -ଆ, ମାଟିର ପାତ୍ର ବିଶେଷ ୧୩୨୩।୧

କବାଟ — ବି, ସଂ କପାଟ ୧୩୧୧।୧

କମଣ୍ଡଳ — ବି, ସଂ କମଣ୍ଡଳୁ, ୨୮୧।୨

କମ୍ପ୍- — କ୍ରି, ଅକ, ତତ୍ସମ, ୯୫୬।୨

କର୍- — କ୍ରି, ସକ, ସଂ କୃ, ପ୍ରା କର୍, ୧୬୬।୧

-କର — ଷଷ୍ଠୀ ଚିହ୍ନ ୬୮୭।୨

କରତାର — ବି, ସଂ କର୍ତ୍ତାରଃ ('କର୍ତ୍ତୃ' ଶବ୍ଦର ୧ମା ବହୁବଚନ ରୂପ), ୯୦୨।୨ ସୂର୍ଯ୍ୟ।

କଉଣ୍ଡି — ବି, ସଂ କାଣ୍ଡ+ଓ କ୍ଷୁଦ୍ରାର୍ଥେ -ଇ=କାଣ୍ଡି > କଉଣ୍ଡି ? ୩୨୬।୨ ପୋଥି ବା ପୋଥିର ଏକ ଭାଗ।

-କର — ଷଷ୍ଠୀ ଚିହ୍ନ—୭୬୮।୨

କର୍ଣ୍ଣାଞ୍ଚଳ — ବି, କର୍ଣ୍ଣ+ଅଞ୍ଚଳ, ଆକ୍ଷରିକ ଅର୍ଥ କର୍ଣ୍ଣସ୍ଥାନ, ୫୭୯।୧ କର୍ଣ୍ଣରେ ପରିଧେୟ ଅଳଙ୍କାର-ବିଶେଷ।

କର୍ପଟି — ବି, ସଂ କର୍ପଟ+ଓ; କ୍ଷୁଦ୍ରାର୍ଥେ -ଇ, ୨୮୮।୧, କୌପୀନ, କାଛୁଆ।

କର୍ମଣ — ବି, ସଂ କର୍ମନ୍ ୬୭।୧, କର୍ମ

କର୍ମଣି — ବି, ସଂ 'କର୍ମନ୍' ଶବ୍ଦର ୭ମୀ ଏକବଚନ ରୂପ, ୧୦୯୭।୨ କର୍ମରେ।

କଷା — ବି, ସଂ କଷାୟ, ୧୬୩।୨, ଗେରୁ ଆଦ ଦ୍ୱାରା ରଞ୍ଜିତ ବସ୍ତ୍ର।

କଷୋର — ବି, ସଂ କଠୋର, ୭୫୦।୧

କହ୍- — କ୍ରି, ସକ, ସଂ କଥ୍ > ପ୍ରା କହ୍, ୧୬।୧

| | |
|---|---|
| କହକହମୁଖି | ବି°, କଥନରତ ମୁଖ ଯାହାର, ସ୍ତ୍ରୀଲିଙ୍ଗ, ୫୭୩।୧ |
| କଂସାଳ | ବି, ସଂ କାଂସ୍ୟତାଳ, ୫୫୭।୧ କଂସାରେ ତିଆରି ଝାଞ୍ଜ । |
| କାଛଟି | ବି, ସଂ କଚ୍ଛୋଟି, କଚ୍ଛୋଟିକା, କଚ୍ଛଟି, କଚ୍ଛଟିକା, ୧୩୭୬।୨, କ୍ଷୁଦ୍ର ବସ୍ତ୍ର, କଉପୀ । |
| କାଟ୍ | କ୍ରି, ସକ, ସଂ କୃନ୍ତ୍ (କର୍ତ୍ତିତ) ପ୍ରା କଟ୍ଟ୍, ୭୭୧।୨, |
| କାଠି | ବି, ସଂ କାଷ୍ଠ > ପ୍ରା କଟ୍ଠ > ଓ କାଠ + କ୍ଷୁଦ୍ରାର୍ଥେ -ଇ, ୫୦।୧ |
| କାଢ଼୍ | କ୍ରି, ସକ, ସଂ କୃଷ୍ଟ > ପ୍ରା କଡ୍ଢ଼, ୫୯୮।୨ |
| କାତ୍ୟାଣୀ<br>କାତ୍ୟାନ | ବି, ସଂ କାତ୍ୟାୟନୀ, ୪୩୭।୨, ଦୁର୍ଗା, ଭୈରବୀ । |
| କାନ୍ଦ୍- | କ୍ରି, ଅକ, ସଂ କ୍ରନ୍ଦ୍, ୭୯୭।୧ |
| କାମଧେଣୀ | ବି°, ସଂ କାମଧେନୁ > ? ୫୭୮।୧ କାମନାପୂରଣକାରିଣୀ । |
| କାମେଣୀ | ବି, ସଂ କାମିନୀ, ୩୯୫।୧ |
| କାରେଣି | ବି, ୯୪୮।୨ ଦାସୀ । |
| କାଳବନ୍ଧା | ବି°, କାଳ-ବନ୍ଧ୍ + କର୍ତ୍ତୃବାଚ୍ୟରେ -ଆ, ୨୧।୨ କାଳକୁ ବନ୍ଧାଏ ଅର୍ଥାତ୍ ପ୍ରତାରିତ କରେ ଯେ କିମ୍ବା କାଳଠାରୁ ବଞ୍ଚାଏ ଅର୍ଥାତ୍ ରକ୍ଷା କରେ ଯେ । |
| କାହିଁ | କ୍ରି. ବି°, ସର୍ବନାମଜ, ସ୍ଥାନବାଚକ, ୨୨୧।୧ |
| କାହିଁ | 'କେ' ସର୍ବନାମର ଷଷ୍ଠ୍ୟର୍ଥକ ରୂପ, ୧୦୦୮।୧; କାହିଁର ମହାତ୍ମା ।<br>(ରୂ. ସୂ. ୭୪) |
| କାହିଁକି | କ୍ରି, ବି°, ସର୍ବନାମଜ, କାରଣବାଚକ, ୭୯୩।୧ |
| କାହୁଁ | କ୍ରି, ବି°, ସର୍ବନାମଜ, ସ୍ଥାନବାଚକ, ୩୦୮।୨ |
| -କି | ୨ୟା ଚନ୍ଦ୍ର—୯୧।୧; ୪ର୍ଥୀ ଚନ୍ଦ୍ର—୧୨୦୬।୧ |
| କି | ଅ, ସଂ କିମ୍, ୪୦୬।୧ |
| କିଛୁ | ସ, ସଂ କିଞ୍ଚିତ୍, ୯୮।୧ |
| କିନା | ଅ, ସଂ କିଂ + ନାମ, ୨୭୩।୧ |
| କିମ୍ପା<br>କିମ୍ପାଇଁ | କ୍ରି ବି°, କାରଣବାଚକ, କି + ପାଇଁ, ୨୨୩।୨, ୩୮୪।୨ |
| କିନ୍ନର | ବି, ସଂ କିନ୍ନର, ୧୨୩।୧, ଦେବଜାତିବିଶେଷ । |
| କିଳଣି | କ୍ରି ବି, କିଳ୍ + ଅଣି, ୧୩୦୦।୨ |
| କିସ | ସର୍ବନାମଜ ବି°, ସଂ କୀଦୃଶ, ୨୧୭।୨ |
| -କୁ | ୨ୟା ଚନ୍ଦ୍ର—୪୯୯।୧, ୪ର୍ଥୀ ଚନ୍ଦ୍ର—୭୩୮।୨ |

-କୁଇ ୨ସ୍ୱା ଚନ୍ଦ୍ର—୪୩।୧, '-କୁଇ'ର ସାନୁନାସିକ ରୂପ '-କୁଇଂ' ।
କୁଣ୍ଡୁଆ ବି, ସଂ କୁଣ୍ଡକା, ୧୨୯୧।୧ ମାଟିପାତ୍ର ।
କୁଢ଼ା- କ୍ରି, ସକ, ସଂ କୋଷ୍ଠକ > ? ୧୩୯୫।୧
କୁତୋହଳ ବି, ସଂ କୁତୂହଳ, ୯୩୨।୧
କୁତୋହଳୀ ବିଂ, କୁତୋହଳ + ଅସ୍ତ୍ୟର୍ଥରେ- ଇ, ସ୍ତ୍ରୀଲିଙ୍ଗ, ୪୧।୨
କୁମର ବି, ସଂ କୁମାର, ୪୬୭।୨
କୁଳାଣ୍ଟ ବି, ସଂ କୂଳାନ୍ତ, ୯୧୦।୨ କୂଳର ସୀମା
କୁହୁଡ଼ି ବି, ସଂ କୁଜ୍‌ଝଟୀ, କୁଜ୍‌ଝଟିକା, ପ୍ରା କୁଜ୍‌ଝଡ଼ିଆ, ୯୦୯।୨
କେ ସର୍ବନାମ ୫୨୪।୨, କର୍ତ୍ତା (ସଂ କଃ > ମାଃ ପ୍ରାଃ କେ, ସେହିପରି ଯଃ > ଜେ, ସଃ > ଶେ) କେହ୍ନ ୧୪୮।୨; (ସଂ କୋଽପି > ମା. ପ୍ରାଃ କେ ବ, ସେହିପରି ଶେବ, ଜେବ); କେହ୍ନୁ ୬୬୯।୧ (ସଂ କଃ ଖଳୁ > ମାଃ ପ୍ରାଃ କେକ୍‌ଖୁ, ସେହିପରି ଶେକ୍‌ଖୁ, ଜେକ୍‌ଖୁ) ।
କାହା- 'କେ'ର ଷଷ୍ଠ୍ୟନ୍ତ ତଦର୍ଥକ୍‌ରୂପ, ସଂ କସ୍ୟ > ପ୍ରା କସ୍‌ସ > ଅପଃ କାହ ୨୮୯।୨
କାହିଂ- 'କେ'ର ସପ୍ତମ୍ୟନ୍ତ ତଦର୍ଥକ୍‌ରୂପ, ସଂ କସ୍ମିନ୍ > ପ୍ରା କମ୍‌ହି ୧୦୦୮।୧
କେତେ ସର୍ବନାମଜ ବିଂ, ୪୨୬।୨
କେବଣ ସର୍ବନାମଜ ବିଂ, ୧୯୯।୧
'କେଉଣ ଦର୍ପେ' (ଡା. ସ୍ୱ.—ହରଧନୁଭଙ୍ଗ)
କେମନ୍ତ ସର୍ବନାମଜ ବିଂ, ୨୮୬।୨
କେମନ୍ତେ କ୍ରି. ବିଂ, ସର୍ବନାମଜ, ପ୍ରକାରବାଚକ, ୪୮।୧, ୨୩୮।୨
କେସନେ କ୍ରି. ବିଂ ସର୍ବନାମଜ, ପ୍ରକାରବାଚକ, ୭୨୩।୨
କୋଇନ୍ତା ବି. ସଂ କୁନ୍ତୀ, ୧୩୭୦।୧; କୋନ୍ତା ୧୩୫୧।୨
କୋଡ଼ ବି, ସଂ କ୍ରୋଡ଼ ୪୭୮।୨
କୋବେର ବି, ସଂ କୁବେର ୧୨୦।୧
କୋଳ ବି, ସଂ କ୍ରୋଡ଼ ୨୧୦।୨
କୋଷ୍ଠ ବି, ସଂ କୁଷ୍ଠ ୧୭୦।୨
କ୍ରୋଧ ବି, ସଂସ୍କୃତରେ ଏହାର ଅର୍ଥ—କୋପ । କିନ୍ତୁ ଆଲୋଚିତ ଗ୍ରନ୍ଥରେ—ଦୁଃଖ, ୧୮୪।୨, ୫୮୭।୧; କ୍ରୋଧେ (କୋହେ) ଗଦଗଦ ବାମା ବଚନ ପ୍ରକାଶି (ର: ମ: ୨-୨)
କ୍ଷେତ୍ରି ବି, ସଂ କ୍ଷତ୍ରିୟ ୧୬୨।୨
କ୍ଷେପଣୀ ବିଂ, କ୍ଷିପ୍ + କର୍ତ୍ତୃବାଚ୍ୟରେ-ଅଣୀ, ୫୬୦।୨, କ୍ଷେପଣକାରିଣୀ ।

## ଖ

ଖଟ୍- କ୍ରି, ଅକ, ଦେଶଜ, ୪୪୧।୨

ଖଣ୍ଡ- କ୍ରି, ସକ, ତତ୍ସମ ୪।୨

ଖଣ୍ଡ ପ: ନ:, ସଂ ଖଣ୍ଡ୍ +ଓ କ୍ଷୁଦ୍ରାର୍ଥେ -ଇ, ୩୫।୨

{ ଖଣ୍ଡିଏ ଏକବଚନ ଜ୍ଞାପକ ପଦ, ଖଣ୍ଡି-ଏ, ୧୩୫୨।୨

{ ଖଣ୍ଡେ ଖଣ୍ଡ + ଏ, ୩୪୮।୨

ଖମ୍ବ ବି, ସଂ ସ୍ତମ୍ଭ (ସ୍କମ୍ଭ ?) > ପ୍ରା ଖମ୍ଭ, ୧୦୪।୧

ଖଙ କୋଟି, ପରାର୍ଦ୍ଧ, ପଦ୍ମ ପ୍ରଭୃତି ପରି ସଂଖ୍ୟା, ୫୫୧।୧, ଦେଶଜ

ଖା- କ୍ରି, ସକ, ସଂ ଖାଦ୍, ୧୩୧।୨

ଖିରି ବି, ସଂ କ୍ଷୀରକ (୧ମା ଏକବଚନ—କ୍ଷୀର), ୧୨୯୦।୨ କ୍ଷୀରରେ ପ୍ରସ୍ତୁତ ଖାଦ୍ୟବିଶେଷ ।

ଖୁରୁସାଣି ବିଂ, ଖୁରାସାନ୍—ପାର୍ଶି ଶବ୍ଦ, ବର୍ତ୍ତମାନ ଇରାନ୍‌ର ପୂର୍ବ ଉତ୍ତରସ୍ଥ ପ୍ରଦେଶ-ବିଶେଷ (ବୃ: ଦ୍ଵ: କୋ), ଖୁରସାଣ—ଦେଶବିଶେଷ (P. D.), ତଦ୍ଭବଜ—ଖୁରୁସାଣି, ଖୁରୁସାଣି ତୁରଙ୍ଗ ୫୫୧।୨, ଉତ୍କୃଷ୍ଟ ଘୋଡ଼ା ।

ଖେଳ- କ୍ରି, ଅକ, ତତ୍ସମ, ୧୮୩।୨ ।

## ଗ

ଗଉତମୀ ବି, ସଂ ଗୌତମୀ ୧୪୭୯।୧, ଗୋଦାବରୀ ନଦୀରେ ସ୍ନାନଯୋଗ ।

ଗଉରବ ବି, ସଂ ଗୌରବ, ୭୪୮।୨

ଗଉରବିତ ବିଂ, ଗଉରବ + ଅସ୍ତ୍ୟର୍ଥକ -ଇତ, ୮୭୦।୨, ଗୌରବାନ୍ୱିତ ।

ଗଗନାଧ ବି, ସଂ ଗଗନାଧିପ, ୧୨୯।୨

ଗଡ଼ ବି, ସଂ ଗଡ଼ୁକ, ୧୩୭୩।୧

ଗଢ଼- କ୍ରି, ସକ, ସଂ ଘଟ୍ (ଘଟସ୍ଥିତ) > ପ୍ରା ଘଡ୍, ୧୪୫୯।୨

ଗଞ୍ଜ୍- କ୍ରି, ସକ, ତତ୍ସମ, ୫୭୨।୧

ଗମ୍- କ୍ରି, ସକ, ତତ୍ସମ, ୨୦୨।୧

ଗରୁ ବିଂ, ସଂ ଗୁରୁ, ୮୬୪।୧

ଗର୍ଭବାସୀ ବିଂ, ସ୍ତ୍ରୀଲିଙ୍ଗ, ୩୯୪।୧, ଗର୍ଭବାସ + ଅସ୍ତ୍ୟର୍ଥକ -ଈ, ଗର୍ଭବତୀ ।

ଗଳ- କ୍ରି, ଅକ, ତତ୍ସମ, ୮୯୭।୨

ଗହଳ ବିଂ, ସଂ ଗହନ > ? ୫୫୩।୨, ଘଞ୍ଚ, ନିବିଡ଼

ଗାଙ୍ଗୀ ବି, ସଂ ଗଙ୍ଗା, ୭୯୧।୧

{ ଗାଙ୍ଗେଚ / ଗାଙ୍ଗେବ — ଵି, ସଂ ଗାଙ୍ଗେୟ, ୪୯୬।୧, ୫୧୭।୨, 'କୌରବ' 'ପାଣ୍ଡବ' ପ୍ରଭୃତି ଶବ୍ଦର ସାଦୃଶ୍ୟରେ ଗଠିତ ।

ଗାୟିତସ୍ୱ — ବି, ସଂ, ଗାୟତ୍ରୀ, ୭୫।୧

ଗାୟେଣି — ବି, କ୍ରିୟାବାଚକ, ୫୫୭।୨ ଗାନ

ଗାଲ — ବି, ସଂ ୨୦୧।୧, ଗଣ୍ଡସ୍ଥଳ

ଗୁଆ — ବିଂ, ୪୨୧।୧, ସଂ ଗୋ > ଗୁ ସମ୍ବନ୍ଧାର୍ଥେ -ଆ (ଗୋସମ୍ବନ୍ଧୀୟ), ଯେପରି ମଇଁଷି -ଆ ।

ଗୁଆଣି — ବି, ସଂ ଗବାଲୟ > ଓ: ଗୁହାଳ + ସ୍ତ୍ରୀ ଅର୍ଥେ -ଇ = ଗୁହାଳ> ୧୨୯୪।୨, ଗୋରୁ ରହିବା ସ୍ଥାନ ।

{ ଗୁଡାସ୍ତେ / ଗୁଡ଼ସ୍ତେ — ବହୁବଚନଜ୍ଞାପକ ପଦ, ଦେ: ୧୩୭୪।୧, ୧୩୭୭।୨ (୧ମ ଅନାଦରସୂଚକ, ୨ୟ ଆଦରସୂଚକ)

ଗୁଣ୍ଡି — ବି, ସଂ ଗୁଣ୍ଠୀ ବା ଗୁଣ୍ଟିକା, ୮୨୯୮।୨, ଖାଇଲାବେଳେ ପ୍ରତିଥର ହାତରେ ଯେତିକି ପରିମାଣର ଅନ୍ନ ପାଟିକୁ ନିଆଯାଏ (ଅନାଦର-ସୂଚକ -ଗୁଣ୍ଡା)

ଗୁହାରି — ବି, ଦେ: ୭୭୭।୨, ଦୁଃଖ ବା ଆପତ୍ତି ଜଣାଇବା, ଗୁହର୍—a shout for help. (S.D)

ଗୋ — ଅ, ସମ୍ବୋଧନବାଚକ, ଦେ: ୧୩୩।୧, କେବଳ ସ୍ତ୍ରୀମାନଙ୍କୁ ସମ୍ବୋଧନ କରିବାରେ ବ୍ୟବହୃତ; ମରାଠୀ—ଗୋ, (M. E. D.)

ଗୋଟାସ୍ତେ — ଏକବଚନ ପଦ, ୨୦୩।୨ (ଅନାଦରସୂଚକ)

ଗୋଟି — ପ. ନ. ୩୯୯।୧

ଗୋଟିସ୍ତେ — ଏକବଚନ ପଦ, ୪୦୧।୨ (ଆଦରସୂଚକ)

ଗୋଡା- — ନାମଧାତୁ କ୍ରି, ଦକ, 'ଗୋଡ଼'ରୁ ଗଠିତ, ଗୋଡ଼—ଦେ: ଗୋଡ଼୍ଡ୍ (P. D.) ୭୧୮।୨

ଗୋପ୍ୟାନ — ବି, ସଂ ଗୋପନ, ୫୦୪।୨

ଗୋଲକ — ବି, ସଂ ଗୋଲୋକ (ସ୍ୱର୍ଗପୁର), -ବୃକ୍ଷ ୮୨୭୩।୧ ସ୍ୱର୍ଗପୁରର ଗଛ, ଶାଖାଡ଼ାଳ ଗଛ; ସଂ ଗୋଲକ—ଜାରଜ ବିଧବା ପୁତ୍ର ।

ଗୋସାଇଂ — ବି, ସଂ ଗୋସ୍ୱାମୀ, ଗୋ—ପୃଥିବୀ, ଜଳ, ଗୋରୁ, ଇନ୍ଦ୍ରିୟ, ସ୍ୱର୍ଗ; ସ୍ୱାମୀ— ମାଲିକ, ୭୬୩।୨

ଗୋସାମଣି — ବି, ସଂ ଗୋସ୍ୱାମିନୀ, ସ୍ତ୍ରୀଲିଙ୍ଗ, ୨୧୯।୨; ମାଲିକାଣୀ ।

## ଘ

ଘଟ୍- — କ୍ରି ଅକ, ତତ୍ସମ, ୪୭୨।୨,

ଘଡ଼ି — ବି, ସଂ ଘଟିକା, ୩୪୦।୧

ଘଣ୍ଟକୁଣ୍ଡଳ — ବି, ଘଣ୍ଟପର କୁଣ୍ଡଳ ଯାହାର, ସ୍ତ୍ରୀଲିଙ୍ଗ, ୫୭୯।୧

ଘରଭଙ୍ଗା — ବିଂ, ଯେ ଘର ଭାଙ୍ଗେ, ଘର-ଭାଙ୍ଗ୍+ଆ, କର୍ତ୍ତୃବାଚ୍ୟରେ, ୩୨୭।୨

ଘର୍ଘରି — ବି, ଘର୍ଘର+ଅସ୍ତ୍ୟର୍ଥକ -ଇ, ୫୭୯।୧, ଘର୍ଘର ଶବ୍ଦ କରିବା ବାଦ୍ୟ ବିଶେଷ।

ଘା — ବି, ସଂ ଘାତ > ପ୍ରା ଘାଅ, ୧୦୪୭।୧

ଘାଟୋଇ — ବି, ଦେ: ୩୭।୧, ଘାଟିଆ ବା ଘାଟୁଆ

ଘାନ୍ତ — ବି, ସଂ ଘାତ > ? (ଘାତ—ଜ୍ୟୋତିଷ ଶାସ୍ତ୍ର ମତେ ଅଶୁଭ ଦିବସ) ୧୩୮୩।୧, କ୍ଷଣ, ବାର, ଥର
'ଧରି ନ ପାରି ଲଙ୍କା ପାଇଲେ ଦୁଇ ଘାନ୍ତ' (ଡା: ସ:—ହରଧନୁଭଙ୍ଗ)

ଘୁଞ୍ଚ୍- — କ୍ରି, ଅକ, ଦେ: ୧୪୪।୧ ଆ -ଗୁର୍, ହି -ଘୁସ୍।

ଘୁମୁରା — ବି, ଘୁମୁର୍+ଆ, ୫୭୯।୧, ଘୁମୁରିବା ବାଦ୍ୟ ବିଶେଷ।

ଘୃମ — ବି, ସଂ ଘର୍ମ, ୮୭୯।୧, ଗରମ ବା ଝାଳ।

ଘେନ୍- — କ୍ରି, ସକ, ସଂ ଗୃହ୍ଣ ('ଗ୍ରହ୍'ର ସବଳକରଣ ରୂପ) > ପ୍ରା ଘେଣ୍ହ୍; ୮୪୮।୧

ଘୋଟ୍- — କ୍ରି, ଅକ, ସଂ ଘୁଟ୍ > ? ୯୦୯।୨।



ଚଇତନ — ବି, ସଂ ଚୈତନ୍ୟ, ୧୯।୨, ଚେତନା ବା ପ୍ରାଣ

ଚଉଠୀ — ବି, ସଂ ଚତୁର୍ଥୀ > ପ୍ରା ଚଉଟ୍ଠୀ, ୪୬୨।୧

ଚଉଦ — ସଂଖ୍ୟା ୧୪, ସଂ ଚତୁର୍ଦ୍ଦଶ > ପ୍ରା ଚଉଦ୍ଦହ, ୧୧୯।୧

ଚଉବିଂଶ — ସଂଖ୍ୟା ୨୪, ସଂ ଚତୁର୍ବିଂଶ, ୧୪୧୯।୨, ଚଉବିଂଶ ନଗ୍ର ୭୫୪।୧ (ପ୍ରାଚୀନ ନଗର ବିଶେଷ ?)

ଚଉଷଠି — ସଂଖ୍ୟା ୬୪, ସଂ ଚତୁଃଷଷ୍ଟି > ପ୍ରା ଚଉସଟ୍ଠୀ, ୧୨୨।୧

ଚକ — ବି, ସଂ ଚକ୍ର > ପ୍ରା ଚକ୍କ ୬୭୦।୧

ଚକିତ — ବିଂ, ସଂ ୧୩୩୪।୧

ଚକ୍ରବ୍ରତୀ / ଚକ୍ରବ୍ରତ୍ତୀ — ବି, ସଂ ଚକ୍ରବର୍ତ୍ତୀ, ୯୭।୨, ୫୪୭।୨, ଏକଛତ୍ର ସମ୍ରାଟ୍।

ଚକ୍ଷୁ — ବି, ସଂ ଚକ୍ଷୁ, ୯୮।୨

ଚଞ୍ଚପୁଟ — ବି, ଦେ: ୫୭୦।୧, ନୃତ୍ୟବିଶେଷ

ଚଢ୍- — କ୍ରି, ସକ, ଦେ. (ପ୍ରା ଚଡ୍), ୧୫୦।୨

ଚତୃଦଶ — ସଂଖ୍ୟା ୧୪, ସଂ ଚତୁର୍ଦ୍ଦଶ, ୧୨୮୫।୧

ଚତୃଦଶୀ — ବି, ସଂ ଚତୁର୍ଦ୍ଦଶୀ, ୧୧୦୪।୧

ଚତୁର୍ମାସ୍ୟ — ବି, ସଂ ଚତୁର୍ମାସ୍ୟ, ୧୩୫୪।୨, ଆଷାଢ଼ଠାରୁ ଆଶ୍ୱିନ ପର୍ଯ୍ୟନ୍ତ ଚାରିମାସ ।

ଚତୁଃସମ — ବି, ସଂ ଚତୁଃସମ, ୧୦୩୪।୯, ଚନ୍ଦନ, ଅଗୁରୁ (ବା କର୍ପୂର), କସ୍ତୁରୀ ଓ କୁଙ୍କୁମ—ଏହି ଚାରି ଦ୍ରବ୍ୟର ସମାହାର ।

ଚନ୍ଦ୍ରଘଣ୍ଟା — ବି, ସ ୫୭୯।୯, ଦୁର୍ଗାଙ୍କ ତୃତୀୟ ନାମ (ତୃତୀୟଂ ଚନ୍ଦ୍ରଘଣ୍ଟେତି—ଦେବୀକବଚ)

ଚଳ୍ — କ୍ରି, ଅକ, ତଦ୍ଭବ, ୨୦୦।୯

ଚର୍ପ୍- — କ୍ରି, ସକ, ସଂ *ଚର୍ପ > ? ୯୫୪୨।୨

ଚାଞ୍ଚପୁଟ — ବି, ଦେ: ୫୭୦।୨, ନୃତ୍ୟବିଶେଷ

ଚାପ- — ନାମଧା କ୍ରି, ସକ, ସଂ 'ଚାପ'ରୁ ଗଠିତ, ୧୪୪୯।୯।

ଚାପୋଡ଼ — ବି, ସଂ ଚପେଟ, ୪୨୪।୯

ଚାରି — ସଂଖ୍ୟା ୪, ସଂ ଚତ୍ୱାର > ପ୍ରା ଚତ୍ତାର, ୩୩।୨

ଚାଲ୍- — କ୍ରି, ସକ, ସଂ ଚଲ୍+ଣିଚ୍, ୬୫୩।୨

ଚାଲ୍- — କ୍ରି, ଅକ, ସଂ ଚଲ୍ > ପ୍ରା *ଚଲ୍ଲ, ୧୩୨୭।୯

ଚାହଁ- — କ୍ରି, ସକ, ଦେ: (ପ୍ରା ଚାହ), ୬୬୯।୨

ଚିତ୍ରୋତ୍ପଳା — ବି, ସଂ ଚିତ୍ରୋତ୍ପଳା, ୩୦।୨ ନଦୀବିଶେଷ ।

ଚିନା — ବି, ସଂ ଚୀନକ, ଏକଜାତୀୟ ଗୋଲାକୃତି କ୍ଷୁଦ୍ର ଶସ୍ୟ, ଚିନାଏ ୧୭୯।୨ ଗୋଟିଏ ଶସ୍ୟ ମାତ୍ର, ଅତ୍ୟନ୍ତ ଅଳ୍ପ । ତେ:-ଚିନ୍ନା (କ୍ଷୁଦ୍ର)

ଚିର୍ — କ୍ରି, ସକ, ସଂ 'ଚୀର' ଶବ୍ଦରୁ ଉତ୍ପନ୍ନ, ୩୨୬।୯

ଚିହ୍ନ- — ବି, ସଂ, ନାମଧା କ୍ରି, ୮୧୮।୨

ଚୂଲ୍ଲି — ବି, ସଂ ଚୁଲ୍ଲୀ, ରନ୍ଧନ ନିମନ୍ତେ ଯେଉଁ ଗର୍ତ୍ତ ବା କୁଣ୍ଡରେ ନିଆଁ ଜଳାଯାଏ, ୨୮୭।୨

ଚୈତାର — ବି, ସଂ ଚୈତ୍ର (*ଚୈତ୍ରର) ୫୫୯।୨, ଦକ୍ଷ, ନିପୁଣ; ଅଧିକ ବ୍ୟୋଗବ ଚୈଖ ଚନ୍ଦ୍ରା ଅଙ୍କୁର (ର.ମ: ୭-୬); ନାକତଳେ ଜଣ ମୋଞ୍ଛ ଦେଇ-ଅଛୁ ଏ ତ ଛତ୍ରିଙ୍କ ଉପରେ ଚୈଖ ଗୋ ସଜନ (ର: ମ. ୨୦-୪୨)

## ଛ

{ ଛଉଡ଼ / ଛଉର } — ବି,ଦେ, ୧୪୪୨।୯, ସାଞ୍ଜୁ, କବଚ, ବର୍ମ ।

ଛଅ — ସଂଖ୍ୟା ୬, ସଂ ଷଟ୍, ୩୪୩।୯

ଛତା — ବି, ଦେ, ୧୩୭୯।୨ ଗର୍ଭଧାରଣୋପଯୁକ୍ତା କିନ୍ତୁ ଅପ୍ରସୂତା ଗାଈ, ସଂ ଉପସର୍ଯ୍ୟା > ?

ଛତିଶ — ସଂଖ୍ୟା ୩୬, ସଂ ଷଟ୍‌ତ୍ରିଂଶ, ୧୬୩୭।୧ (ଷଟ୍>ଛ, ତ୍ରିଂଶ>ତିଶ)

ଛଜ — ବି, ସଂ ଧ୍ୱଜ ୬୫୭।୨

ଛତ୍ରି — ବି, ସଂ କ୍ଷତ୍ରିୟ, ୧୬୧୯।୧

ଛୟାଶୋଇ — ସଂଖ୍ୟା ୯୬, ସଂ ଷଣ୍ଣବତି > ପ୍ରା ଛଣ୍ଣବଇ, ୧୯୫।୧

ଛାଡ଼୍- — କ୍ରି; ସକ, ସଂ ଛର୍ଦ୍ଦ୍ > ପ୍ରା ଛଡ୍ଡ୍, ୬୮୧।୧

ଛାମୁ — ବି, ସଂ ସମ୍ମୁଖ > ପ୍ରା ଛମ୍ମୁହ, ୩୮୪।୧

ଛାର — ବି°, ସଂ କ୍ଷାର ବା ଅସାର, ୭୩୬।୨ ତୁଚ୍ଛ, ହୀନ

ଛୁଂ- — କ୍ରି, ସକ, ସଂ ଛୁପ୍, ୭୩୮।୧

ଛେହଣୀ — ସଂ ଅକ୍ଷୌହିଣୀ>ପ୍ରା ଅଚ୍ଛୋହିଣୀ, ଯେଉଁ ସୈନ୍ୟ ଦଳରେ ୨୧୮୭୦ ରଥ, ୨୧୮୭୦ ହସ୍ତୀ, ୬୫୬୧୦ ଅଶ୍ୱ ଏବଂ ୧୦୯୩୫୦ ପଦାତି ଥାଆନ୍ତି, ୪୫୩।୧।

ଛେଦ୍- — କ୍ରି, ସକ, ସଂ ଛିଦ୍, ୭।୨।

## ଜ

ଜଇନ୍ତା — ବି, ୩୮।୧, ରାଜ୍ୟବିଶେଷ; କୁରୁକ୍ଷେତ୍ରର ଅନ୍ୟ ନାମ ଥିଲା 'ସମନ୍ତ-ପଞ୍ଚକ'। ଏହି 'ପଞ୍ଚକ'ର ସ୍ମରଣରେ ବୋଧହୁଏ ସାରଳାଦାସ କୌରବ-ପାଣ୍ଡବଙ୍କର ପାଞ୍ଚଟି ରାଜ୍ୟର କଳ୍ପନା କରିଛନ୍ତି। ଯଥା— ଇନ୍ଦ୍ରପ୍ରସ୍ଥ, ଯମପ୍ରସ୍ଥ, ହସ୍ତିନା, ଜଇନ୍ତା, ବାରୁଣୀ। ସଂସ୍କୃତ ମହାଭାରତରେ 'ହାସ୍ତିନପୁର' ଓ 'ବାରଣାବତ' ନାମର ଉଲ୍ଲେଖ ଅଛି।

ଜଗଜଣା — ବି°, ଜଗ-ଜଣ୍+ଆ, ୧୦୮୩।୧, ଜଗତ୍ (ଜଗ)କୁ ଜାଣିଛି ଯେ।

ଜଗତଜଣା — ବି°, ଜଗତ-ଜଣ୍+ସ୍ୱାର୍ଥେ -ଆ, ୪୧୩।୨, ଜଗତକୁ ଜାଣିଛି ଯେ। ସଂସ୍କୃତରେ 'ଯେ ଜାଣିଛି'=ଜିତ୍ (ଜି+କ୍ୱିପ୍)

ଜଘନ — ବି, ସଂ ଜଘନ, ୮୭୭।୧

ଜଞ୍ଜାଳୀ }
ଜଞ୍ଜାଳ } — ବି°, ଦେ, ଜଞ୍ଜାଳ+ନିପୁଣ ଅର୍ଥରେ -ଈ, ସ୍ତ୍ରୀଲିଙ୍ଗ, ଜଞ୍ଜାଳ ସୃଷ୍ଟି କରିବାରେ ନିପୁଣ; ପା -ଜଞ୍ଜାଲ୍, ମ -ଜଞ୍ଜାଳ।

ଜଣେ — ବି°, ସଂ ଜନଃ > ମା ପ୍ରା ଜଣେ, ୮୭୩।୧

ଜନ୍ମ- — ନାମଧା କ୍ରି, ୧୧୫୫।୨

ଜପ୍- — କ୍ରି, ସକ, ତତ୍ସମ, ୫୫୪।୨

ଜମଦଅଗ୍ନି — ବି, ସଂ ଯମଦଗ୍ନି, ପର୍ଶୁରାମଙ୍କ ପିତାଙ୍କ ନାମ, ୭୫୧।୧

ଜମ୍ବୋଦୀପ — ବି, ସଂ ଜମ୍ବୁଦ୍ୱୀପ, ୩୦।୧, ନବଦ୍ୱୀପ ମଧ୍ୟରୁ ଅନ୍ୟତମ।

ଜମ୍ଭୋଭେଦ — ବି, ସଂ ଜମ୍ଭଭେଦୀ, ୧୨।୨, ଇନ୍ଦ୍ରଙ୍କ ନାମ, ଜମ୍ଭନାମକ ଅସୁରକୁ ବଧ କରିଥିଲେ।

ଜୟତୁ — ସ କ୍ରି, 'ଜି' ଧାତୁର ଲୋଟ୍ ଅନ୍ୟ ପୁରୁଷ ଏକବଚନ

ଜଳ୍- — କ୍ରି, ଅକ, ସ ଜ୍ୱଲ୍, ୨୨୪।୨

ଜାଳା — ବି, ସ ଜ୍ୱାଳା, ୧୩୭।୧

ଜାଣ୍ — କ୍ରି, ସକ, ସ ଜ୍ଞା > ପ୍ରା ଜାଣ୍, ୨୪।୧

ଜାତେକ — ବି, ସଂ ଜାତକ (ଜାତ + ସ୍ୱାର୍ଥେ -କ) ୩୪୪।୨, ନବଜାତ ସନ୍ତାନ।

ଜାହ୍ନବୀ — ବି, ସଂ ଜାହ୍ନବୀ, ୧୯୨।୨

ଜାଳଣି — ବି, କ୍ରିୟାବାଚକ, ଜାଳ୍ + ଅଣି, ୨୮୭।୨

ଜିଣ୍- — କ୍ରି, ସକ, ସଂ ଜି > ପ୍ରା ଜିଣ୍, ୧୪୫୦।୨

ଜିସ — ବିଂ, ସର୍ବନାମଜ, ୭୦୦।୧, ସଂ ଯାଦୃଶ > ପ୍ରା *ଜାଇସ

ଜୀ- — କ୍ରି, ଅକ, ସଂ ଜୀବ୍, ୪୧୯।୧

ଜୁଆଇଁ — ବି, ସଂ ଜାମାତୃକ > ପ୍ରା ଜାମାଇଅ, ୫୨୮।୧

## ଝ

ଝଡ଼୍- — କ୍ରି, ଅକ, ଦେ (ପ୍ରା ଝଡ଼୍), ୧୨୮୨।୨

ଝରୁ — ବି, ଝର୍ + ଅପାଦାନ ବାଚ୍ୟରେ -ଉ, ୧୨୯୨।୧, ଝରେ ପର୍ବତରୁ, ଜଳପାତ ବିଶେଷ।

ଝଲକ — ବି, ସଂ ଝଲ୍ଲିକ, ଦୀପ୍ତି, ତେଜ; ମ -ଝଲକ, glitter, lustre (M. E. D.), ନାମଧା କ୍ରି, ଝଲକଇ ୫୭୭।୨।

ଝାଟୁଆ — ବି, ସଂ ଝାଟ > ? ଝାଟ—ବଣ, ଗୁଳ୍ମାଦି ପରିପୂର୍ଣ୍ଣ ସ୍ଥାନ। କୁଟା, କାଠି ପ୍ରଭୃତି ଅଳିଆ ପଦାର୍ଥ। ନାମଧା କ୍ରି—ଝାଟୁଆଇଦେବ ୧୩୭୭।୧

ଝାଟ — କ୍ରି ବିଂ, ସଂ ଝଟିତ > ପ୍ରା ଝଟ୍ଟି, ୫୦୪।୨

ଝାଟକାରେ — କ୍ରି ବିଂ, ସଂ ଝଟିତକାର > (+ ଅଧି -ଏ), ୨୯୮।୨, ଶୀଘ୍ର, ଶୀଘ୍ର ଭାବରେ।

ଝାସ — ବି, ଦେ, (ସଂ 'ଝମ୍ପ୍' > ?), ଝମ୍ପ୍—Sudden movement, (S. E D.), ଅଗ୍ନି, ଜଳ ପ୍ରଭୃତିରେ ଡେଇଁ ଆତ୍ମବିସର୍ଜନ କରିବା, ୭୭୧।୨

ଝୁଣ୍ଟ୍ — କ୍ରି, ଅକ, ଦେ, ୧୩୯୧।୨।

## ଟ

ଟମକ — ବି, ଦେ, ୫୫୩।୧, ଟମ୍ ଟମ୍ ବାଜିବା ବାଦ୍ୟ ବିଶେଷ।

ଟଳମଳ — ବିଂ, ଦେ, 'ଟଳଟଳ'ର ରୂପାନ୍ତର। ପ୍ରା ଧାତୁ 'ଟଲ୍' ୧୯୨।୨, ଯାହା ଟଳିବା ଅବସ୍ଥାରେ ଥାଏ।

ଟୁପଟୁପ  ବି, ଦେ, ଅନୁକାର୍ଯ୍ୟ (ଟୋ ଟୋ ?), ୫୭୨।୧ 'ମୁଷ୍ଟି କରି ଟୋକେ ଭୁଜ ବେନି ଟୁପ ଟୁପ ହସେ' ସ. ବ.—ଶ

-ଟି  ପ ନ, ୯୫।୨

ଟେକ୍-  କି, ସକ, ଦେ, ୨୪୩।୨ ।



ଠାକୁର  ବି, ସ ଠକ୍କୁର > ତୁର୍କୀ ତଗିର୍ ? ୫୩୦।୧ *

ଠାକୁରାଣୀ  ବି, 'ଠାକୁର'ର ସ୍ତ୍ରୀଲିଙ୍ଗ, ୮୩୩।୨

ଠାବ  ବି, ସ ସ୍ଥାନ > ପ୍ରା ଠାଣ, ୨୦୪।୧ ।



ଡଗର  ବି, ଦେ, ୫୩।୧, ଦ୍ରୁତ, ଚର । ସି ଡଗର୍ Quickly and with force, (S. D·)

ଡମ୍ବରୁ  ବି, ସ ଡମରୁ, ଡମ୍ ଡମ୍ ଶବ୍ଦ କରିବା ବାଦ୍ୟ ବିଶେଷ, ୫୬୪।୨

ଡର  ବି, ସ ଦର, ୩୫୮।୧

ଡଂଶ୍-  କି, ସକ, ସ ଦଂଶ୍, ୨୨୫୭।୧

ଡାକ  କି, ସକ, ଦେ, ୫୫୦।୧

ଡାକେଣୀ  ବି, ସଂ ଡାକନୀ, ୫୭୦।୧ ଡାହାଣୀ

ଡାକେଶ୍ୱର  ବି, ଡାକ + ଈଶ୍ୱର, ୫୬୫।୨ ଡାକବାରେ ନିପୁଣ ।

ଡାଳ  ବି, ଦେ, ୨୩୬୨।୨ ବୃକ୍ଷର ଶାଖା

ଡାହାଣାବ୍ରତେକ  ବିଂ, ସ ଦକ୍ଷିଣାବର୍ତ୍ତିକ (ଶଙ୍ଖ), ଯେଉଁ ଶଙ୍ଖର ଆବର୍ତ୍ତ ବା ମୋଡ଼ ଡାହାଣ ଅଡ଼କୁ ଥାଏ, ୬୦୬।୨

ଡାହାଣ  ବିଂ, ସ ଦକ୍ଷିଣ ୨୭୮୦।୨

ଡିଣ୍ଡିମ  ବି, ଦେ, ୫୬୪।୨ ଡମ୍ବୁରୁର ଧ୍ୱନି

ଡେଂ  କି, ଅକ, ସ ଡୀ, ୮୮୩।୧

ଡୋଲା  ବି, ସ ଦୋଲକ > ପ୍ରା ଡୋଲଅ, ୯୯୯।୧



ଢଳ୍-  କି, ଅକ, ଦେ, ୯୮୨।୧

ଢଳଢଳ  ବିଂ, ଦେ, 'ଢଳଢଳ'ର ରୂପାନ୍ତର, ୫୬୮।୨, ଯାହା ଢଳିବା ଅବସ୍ଥାରେ ଥାଏ ।

---

* ଭାଷାର ଉପକ୍ରମ ୧୬୮ ପୃଷ୍ଠା ।

ଝାଳ୍- କ୍ରି, ସକ, 'ଝଳ୍'ର ପ୍ରେରଣାର୍ଥକ, ୫୮୨।୧



ତ ଅ, ସ ତତ୍, ତାବତ୍ > ପ୍ରା ତା, ୧୩୮।୧
ତତଟ କ୍ରି ବି°, ସ ତତ୍ତତ୍, ୫୩୫, ଅତିଶୀଘ୍ର, ଅଦ୍ଭୁତ୍ ବେଗରେ ।
ତତକ୍ଷଣି କ୍ରି ବି°, ସ ତତ୍କ୍ଷଣ (+ସ୍ୱାର୍ଥେ -ଇ), ୭୬୪।୨
ତତକ୍ଷଣାନ୍ତ କ୍ରି ବି°, ସ ତତ୍କ୍ଷଣାତ୍ ୧୧୯୧।୨, ଅତି ଶୀଘ୍ର, ସଙ୍ଗେ ସଙ୍ଗେ ।
ତରୁଲ୍ୟ ବି, ସ° ତୈଧିଲ, ୯୧୬।୧, କ୍ୟୋତିଷ ଶାସ୍ତ୍ରୋକ୍ତ କରଣବିଶେଷ ।
ତଥି 'ସେ'ର ଅଧିକରଣାତ୍ମକ ପ୍ରାଚୀନ୍ ରୂପ, ୧୩୨୧।୨; ଅଶେଷ ବ୍ରହ୍ମାଣ୍ଡ ଭୁବନ୍ଦକନ୍ଦ, ତଥିରେ ଭଜସ୍ୱ ପରମାନନ୍ଦ (ହ. ଭ. ୧-୩)
ତନୁ ବି, ସ 'ତନୁଜ' ଅର୍ଥରେ ବ୍ୟବହୃତ, ୯୬୮।୨, ପୁତ୍ର
ତପନଷ୍ଟି ବି, ସ ତପୋନଷ୍ଠ, ୩୬୩।୧, ତପସ୍ୟାରେ ନିଷ୍ଠା ଯାହାର, ଋଷି ।
ତପୋଧନ ବି, ସ, ତପୋଧନ + ଓ ଆଦରାର୍ଥେ -ଇ, ତପ ହିଁ ଧନ ଯାହାର, ଋଷି ୩°୫।୧
ତବ ସ ପ, 'ଯୁଷ୍ମଦ' ଶବ୍ଦର ସମ୍ବନ୍ଧ ଏକବଚନ ରୂପ, ୨୭।୧, ତୁମ୍ଭର, ଆପଣଙ୍କର ।
ତମତମ ବି°, ସ ତମଃ > ଓ ତମ, ପୁନରାବୃତ୍ତିରେ ଗଠିତ ବିଶେଷଣ, ୫୭୭।୧ କ୍ରୁଦ୍ଧ, କୁପିତ ।
ତମ୍ବା ବି, ସ ତାମ୍ର > ପ୍ରା ତମ୍ବ, ୧୩°।୨
ତର୍- କ୍ରି, ଅକ, ସ ତୃ > ପ୍ରା ତର୍, ୨୨।୧
ତରା- କ୍ରି, ଅକ, 'ତର୍'ର ପ୍ରେରଣାର୍ଥକ, ୨୨।୨
ତଲେ ପା ପ, ଅଧିକରଣ ଦ୍ୟୋତକ, ୧୫।୧
ତହିଁ 'ସେ'ର ଅଧିକରଣାତ୍ମକ ପ୍ରାଚୀନ୍ ରୂପ, ୨୫୪।୧ କେ ଅବା ଲଭିବ ତହିଁର ପାର (ହ. ଭ: ୧-୨°)
ତହିଁ କ୍ରି ବି°, ସ୍ଥାନବାଚକ ୨°୨।୨
ତହିଁ ପା ପ, କର୍ମ-ଅଧିକରଣ ଦ୍ୟୋତକ ୭୨।୨ ସେ ସୂର୍ଯ୍ୟ ନାଡ଼ୀ ତହିଁ ପବନ ଥିବ (ବ୍ରୁ: ସୁ. ୧୨୯) ବାସୁଦେବର ତହିଁ ମନବୃତ୍ତି ଦେଇ (ବ୍ରୁ. ସୁ: ୧୩୬)
ତହୁଁ କ୍ରି ବି°, ସର୍ବନାମଜ. କାରଣବାଚକ, ୫୬।୨
ତହୁଁ ପା ପ, ଅପାଦାନ ଦ୍ୟୋତକ, ୫୬।୧

ତାଡ	ବି, ସଂ ତାଟଙ୍କ > ପ୍ରା ତାଡଙ୍କ, ୫୭୯।୧, ବାହୁରେ ପିନ୍ଧାହେବା ଅଳଙ୍କାର ବିଶେଷ ।

ତାଣ୍ଡବ	ବି, ସଂ ତାଣ୍ଡବ, ୧୦୭।୨ ରୁଦ୍ରଙ୍କର ନୃତ୍ୟ ।

ତାର୍-	କ୍ରି, ସକ, ସଂ ତୃ + ଣିଚ୍, ୧୩୧।୬।୨

ତିଅର୍-	କ୍ରି, ସକ, ଆ, ୧୦୨।୫।୧

ତିନ	ସଂଖ୍ୟା ୩, ସ ତ୍ରୀଣି > ପ୍ରା ତିଣ୍ଣି, ୭୦।୨

ତିରିଶି	ସଂଖ୍ୟା ୩୦, ସ ତ୍ରିଂଶତ୍ (*ତ୍ରିଂଶତ), ୭୩।୫।୧

ତୁ	୨ୟ ପୁ ସ, ୧୧।୨, ତୁହ୍ମ ୧୯୮।୮, ତୁମ୍ଭେ ୧୬।୧, କର୍ତ୍ତା; ତୁହ୍ମ, ୮୧୧।୧

ତୁଟ୍-	କ୍ରି, ଅକ, ସ ତ୍ରୁଟ୍ (ତ୍ରୁଟ୍ୟତି) > ପ୍ରା ତୁଟ୍ଟ, ୭୩୧।୨

ତୁଣ୍ଡ	ବିଂ, ସଂ ତୁଣ୍ଡୀ > ପ୍ରା ତୁଣ୍ଡ, ୩୭।୧, ମୁଖ ।

ତୁମ୍ହେ	'ତୁ'ର ବହୁବଚନ ପର୍ଯ୍ୟାୟ ରୂପ । ସ *ତୁଷ୍ମାକଂ > ପ୍ରା ତୁମ୍ହଂ > ୩୭।୫।୨

ତୁର	ବି, ସଂ ତୂର୍ଯ୍ୟ > ପ୍ରା ତୂର, ୪୬।୫।୧

ତୁରି	ବି, ତୁର + କ୍ଷୁଦ୍ରାର୍ଥେ-ଇ, ୫୬।୩।୧, କ୍ଷୁଦ୍ର ତୂର ।

ତୁଲ୍-	କ୍ରି, ସକ, ତଦ୍ଭବ, ୪୯।୨

ତୁଲ-	ନାମଧା କ୍ରି, ସ ତୁଲ୍ୟ > ଓ ତୁଲ + ନାମଧାତୁ ପ୍ରତ୍ୟୟ-ଆ, ୪୯।୧।୨

ତୁଲେ	ପା ପ, ଅସ୍ଥା ଦ୍ୟୋତକ, ୯୮।୧

ତୃପ୍ତି	ବି, ସଂ ତୃପ୍ତି, ୫୬।୫।୨

ତୃଷ୍ଣ	ବିଂ, ସଂ ତୃଷ୍ଣା, ୧୦୨।୬।୧

-ତେ	୨ୟା ବିଭକ୍ତି—୪୩।୧, ୧୦।୨, ୭ମୀ ବିଭକ୍ତି—୯।୨
ଦ୍ୱାଜଲଭ ବିଷ୍ଣୁ ସବତେ ଗରୁ ଜାଣ (ଭ, ମ ୨୪-୩୭)
ସୁଖଦୁଃଖତେ ନଚତ ମଣିଅଇ (ଲୁଇପା ଚର୍ଯ୍ୟା ୧)

ତେଜ୍-	କ୍ରି, ସକ, ସଂ ତ୍ୟଜ୍, ୨୮୩।୧,

ତେଜ୍ୟା	ବି, ସଂ ତ୍ୟାଜ୍ୟ, ୭୪।୨

ତେଣୁ	କ୍ରି ବିଂ, ସର୍ବନାମଜ, କାରଣବାଚକ, ୧୫୯।୧

ତେତେ	କ୍ରି ବିଂ, ସର୍ବନାମଜ, ସ୍ଥାନବାଚକ, ୭୬।୨

ତେବେ	କ୍ରି ବିଂ, ସର୍ବନାମଜ, କାରଣବାଚକ, ୮୦।୯।୨

ତେର	ସଂଖ୍ୟା ୧୩, ସ ତ୍ରୟୋଦଶ > ପ୍ରା ତେରହ, ୨୮।୨।୧

ତେନ୍ତେ   କ୍ରି ବି°, ସର୍ବନାମଜ, ପ୍ରକାରବାଚକ, 'ତେସନେ'ର ପରବର୍ତ୍ତୀ ବିକାଶ, ୧୩୧୬।୨

ତୈତୁଲା   ବି, ସଂ ତୈତିଳ, ୨୧୪।୨, ଜ୍ୟୋତିଷ ଶାସ୍ତ୍ରୋକ୍ତ କରଣ ବିଶେଷ ।

ତୈଲୋକ୍ୟ   ବି, ସଂ ତ୍ରୈଲୋକ୍ୟ, ୪୫୯।୨, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ।

ତୋ   'ତୁ'ର ଉର୍ଫିକ୍‌ରୂପ, ସଂ ତୁଭ୍ୟଂ > ପ୍ରା ତୁଜ୍ଝ > ୨।୬।୨, ୫୩୭।୧

ତୋଟି   ବି, ସଂ ଜୋଟି, ୩୯୯।୨, ପାଟି, ମୁଖରନ୍ଧ୍ର, ତା ତୋଣ୍ଟିଇ, throat, (D. E. D. 2879)

ତୋଡର   ବି, ଦେ, ୫୭୯।୧ ପାଦଭୂଷଣ ବିଶେଷ, ତୋଡ—thigh, (T. D.)

ତୋଲ୍-   କ୍ରି, ସକ, 'ତୁଲ୍'ର ପ୍ରେରଣାର୍ଥକ, ୫୬୫।୧

ତୋୟା   ବି, ସଂ ତୋୟ—ଜଳ, ତୋୟା—ଜଳଦେବୀ, ଗଙ୍ଗା, ୨୭୩।୧

ତ୍ରୟୋଦଶୀ   ବି, ସଂ ତ୍ରୟୋଦଶୀ, ୯୮୫।୧

ତ୍ରିଦଶ୍ୟ   ବି, ସଂ, ତ୍ରିଦଶ, ୮।୨, ଦେବତା

ତ୍ରିପଣ୍ଡ   ବି°, ଦେ, ୮୭୯।୧, ହିଙ୍କଟ, ହି ଉର୍ପଟ୍

ତ୍ରିପ୍ତଠ   ବି, ସଂ ତୃପ୍ତି, ୧୩୦୯।୧

ତ୍ରିଶୂଳ   ବି, ୭୬୪।୨, ସ୍ଥାନବିଶେଷ ?

ତ୍ରେତୟା   ବି, ସଂ ତ୍ରେତା, ୧୧୫।୧, ଯୁଗବିଶେଷ ।

## ଥ

ଥଳ   ବି, ସଂ ସ୍ଥଳ > ପ୍ରା ଥଲ, ୮୭୭।୧

ଥମ୍ଭୀଭୂତ   ବି°, ସଂ ସ୍ତମ୍ଭୀଭୂତ, ୬୮୫।୨

ଥମ୍ଭନ   ବି, ସଂ ସ୍ତମ୍ଭନ, ୯୭୨।୧, ମନ୍ତ୍ରବିଦ୍ୟା ବିଶେଷ ।

ଥା-   କ୍ରି, ଅକ, ସଂ ସ୍ଥା, ୪୩୯।୧

ଥାଠ   ବି, ସଂ *ତଷ୍ଟ > ? (N. D.) ସୈନ୍ୟଦଳ, ୯୮।୧, ବର୍ତ୍ତମାନ ଓଡ଼ିଆରେ ଥାଟ, ମ: ଥାଟ, ନେ: ଠାଟ୍, ହି: ଠାଠ୍, ବ: ଠାଟ୍ ।

ଥାନ   ବି, ସଂ ସ୍ଥାନ, ୧୪।୧

ଥାପ୍-   କ୍ରି, ସକ, ସଂ ସ୍ଥାପ୍ (ସ୍ଥା + ଣିଚ୍), ୮୬୫।୨

ଥିର-   ବି°, ସଂ ସ୍ଥିର, ୮୦୨।୧

ଥୋ-   କ୍ରି, ସକ, ସଂ ସ୍ଥାପ୍ > ଥାବ୍ > ୫୫।୧

ଥୋର   ବି, ସଂ ସ୍ଥୂଳ, ୧୪୦୪।୨ ହାତୀର ଶୁଣ୍ଢ, ଥୋର—କ୍ରମଶଃ ବର୍ତ୍ତୁଳ ଅଥଚ ଗୋଲ (P. D.) great, large (M. E. D.), 'ସ୍ଥୂଳ ହସ୍ତ'ରୁ ସମ୍ଭବତଃ 'ହସ୍ତ' ବିଚ୍ଛିନ୍ନ ହୋଇଯାଇଛି ।

# ଦ

{ ଦତ୍ୟ / ଦଇତ / ଦଇତ୍ୟ } ବି, ସଂ ଦୈତ୍ୟ, ଦିତିଙ୍କ ଅପତ୍ୟ, ଅସୁର, ୯୨୨୩।୨, ୧୬୭।୧, ୧୫୪୦।୨

ଦଇନ ବି, ସଂ ଦୈନ୍ୟ, ୮୩୨।୧

ଦଇବତ ବି, ସଂ ଦୈବତ, ୨୨୨।୧, ଦେବତା।

ଦଛ ବି, ସଂ ଦକ୍ଷ, ୭୨।୨ ଦକ୍ଷ ପ୍ରଜାପତି, ବ୍ରହ୍ମାଙ୍କ ପୁତ୍ର

ଦଧିମଙ୍ଗଳ ଉତ୍କଳୀୟ ସଂସ୍କୃତିରେ ଦଧି ଓ ମତ୍ସ୍ୟ ମଙ୍ଗଳ ସୂଚକ। ତେଣୁ ଗ୍ରନ୍ଥର ଆରମ୍ଭରେ 'ଦଧି' ନାମ ଗ୍ରହଣ କରାଯାଇଅଛି । ତୃତୀୟ ପଦରେ 'ମତ୍ସ' ତଥା 'ଶଙ୍ଖ' ଆଦି ଅନ୍ୟାନ୍ୟ ମଙ୍ଗଳସୂଚକ ବସ୍ତୁର ନାମ ଗ୍ରହଣ କରାଯାଇଅଛି । ୫୮୧ ପଦରେ 'ଦଧିମାଛ'ର ମଧ୍ୟ ଉଲ୍ଲେଖ ଅଛି। ୯/୧

ଦଧିବାମନ ବି, ଦଧିବାହକ ବାମନ, ବାମନ ଅବତାରରେ ବିଷ୍ଣୁ ଦଧି ବହନ କରିଥିଲେ (ବାମନ ପୁରାଣରେ ବର୍ଣ୍ଣିତ), ୫୮୪।୧

ଦରଶନ ବି, ସଂ ଦର୍ଶନ, ୧୪।୨

ଦରଣ୍ଡ୍- କ୍ରି. ସକ, ଦେ, ପ୍ରା ଢୁଣ୍ଢୁଲ୍, ଖୋଜିବା, ହସ୍ତ ପ୍ରକ୍ଷିପ୍ତଦ୍ୱାରା ଅଣ୍ଡାଳିବା, ୧୩୦୩।୧

ଦାଢ ବି, ସଂ ଦଂଷ୍ଟ୍ରା > ପ୍ରାଃ ଦଂଟ୍ଠ, ୫୬୭।୨, ଦାନ୍ତ, ଦାଢ଼, a molar tooth, (M. E. D.)

ଦାରେଣି ବି ଦାର+ସ୍ୱାର୍ଥେ ସ୍ତ୍ରୀ ପ୍ରତ୍ୟୟ -ଏଣି (ଏଣୀ), ୮୫୮।୨, ଭାର୍ଯ୍ୟା

ଦିନ ବି, ସଂ ଦିନ, ୨୪୮।୧, 'ଦିନ' ଶବ୍ଦର ପରେ ଅନିର୍ଦ୍ଦିଷ୍ଟତା ଅର୍ଥରେ ସଂଖ୍ୟା ଶବ୍ଦ ବ୍ୟବହୃତ ହୋଇଛି ଏବଂ 'ଦିନ' 'ଦିନା'ରେ ପରିଣତ ହୋଇଛି । ଯଥା—'ଦିନା ପାଞ୍ଚ ସାତ ସାଠ ଗଲେ ନିଜ ଦେଶ' ୨୪୮।୧, ଏଥି 'ଦିନା' ସମ୍ଭବତଃ ସଂ 'ଦିନାଦି'ରୁ ଉତ୍ପନ୍ନ ।

ଦିବାକରା ବି, ସଂ ଦିବାକର + ସ୍ୱାର୍ଥେ ବା ପଦପୂର୍ତ୍ତି ନିମନ୍ତେ -ଆ, ୭୨୯।୨ ସୂର୍ଯ୍ୟ ।

ଦିବ ବି, ସଂ 'ଦିବ୍' ଶବ୍ଦର ୭ମୀ ଏକବ ରୂପ, ୧୦୭୬।୨, ସ୍ୱର୍ଗରେ ।

ଦିଶ୍- କ୍ରି, ଅକ, ସଂ ଦୃଶ୍, ପ୍ରା ଦିସ୍ (ଦୃଶ୍ୟତେ > ଦିସଇ), ୫୭୯।୨

ଦୁଇ ସଂଖ୍ୟା ୨, ସଂ ଦ୍ୱେ > ପ୍ରା ଦୁବେ >, ସାହାବାଜଗଢ଼ି ଅଶୋକାନୁଶାସନ—ଦୁବ, ୧୭୧।୨

ଦୁଆର ବି, ସଂ ଦ୍ୱାର, ୧୩୭୬।୨

{ ଦୁତି / ଦୁତିଅ } ବି, ସଂ ଦ୍ୱିତୀୟ, ୧୯୭।୨, ୭୩୭।୧

**ଦୁଣ୍ଡସ୍ତା** ବି, ସଂ ଦ୍ୱିଣ୍ଡସ୍ତା, ୩୭।୧ ତଥିବିଶେଷ

**ଦୁଲଣା** ବି, ସଂ ଦୁର୍ଲାଳନ, ୧୪୮୩।୨ ଗେହ୍ଲା ପୁଅ ।

**ଦୁଲଣୀ** ବି, 'ଦୁଲଣା'ର ସ୍ତ୍ରୀଲିଙ୍ଗ, ୧୩୦।୧

**ଦୁବ** ବି, ସଂ ଦୂର୍ବା > ପ୍ରା ଦୁବ୍ବା, ୧୨୮୧।୧

**ଦୁସ୍ୱପତ** ବିଂ, ୧୦୯୭।୧, ଏହା ସାରଳାଦାସଙ୍କର ଗୋଟିଏ ସ୍ୱ-ଉଦ୍ଭାବିତ ଶବ୍ଦ ବୋଲି ମନେହୁଏ । ଶବ୍ଦଟି 'ଯାହାକୁ ଦୂର କରିହେବ ନାହିଁ' ଏହି ଅର୍ଥରେ ବ୍ୟବହୃତ ହୋଇଛି । ଯଥା—ଦୁସ୍ୱପଦ ପାତକ ।

**ଦୁହେଁ / ଦୋହେଁ** ସ, ଦୁହୁଁ + ୧ମା ବହୁବଚନ -ଏ ୮୩୭।୧, ଦୁହନ୍ତ ୭୬୮।୨, ଦୁହିଁଙ୍କର ୯୭୪।୨

**ଦୂଷିଣ** ବିଂ, ସ ଦୂଷିକା, ୧୦୯୭।୨

**ଦୁଜନ** ବି, ସଂ ଦୁର୍ଜନ, ୨୭୦।୧

**ଦୁବ୍ବସ୍ୟା** ବି, ସଂ ଦୁର୍ବାସା, ୨୧୨।୨

**ଦୁବ୍ବାର** ବିଂ, ସ ଦୁର୍ବାର, ୨୭୨।୧

**ଦୁଷିତ** ବିଂ, ସ ଦୂଷିତ, ୮୪୯।୧

**ଦେ-** କ୍ରି, ସକ, ସ ଦା > ପ୍ରା ଦେ, ୩୯।୨

**ଦେଇ** ବି, ସ ଦେବୀ, ୨୧୮।୨

**ଦେଖ୍-** କ୍ରି, ସକ, ସ *ଦୃଷ୍ > ପ୍ରା *ଦେକ୍ଖ୍, ୧୭୭।୨, ୧୭୦।୨

**ଦେଢ଼** ବିଂ, ଭଗ୍ନାଂଶିକ ସଂଖ୍ୟା, ସ ଦ୍ୱ୍ୟର୍ଦ୍ଧ > ପ୍ରା: ଦିଅଡ୍ଢ, ୩୭।୨

**ଦେଣାହର** ବି, ସ ଦେଣଚର > ? ୬୧୧।୧, ଦୂତ, ଚର, ଡଗର

**ଦୋହୁତ / ଦୋହୁତା / ଦୋହୁଡ** ବି, ସ ଦୁହିତା ୨୪୫।୨, ୮୦।୧, ୮୯।୨

**ଦ୍ରଶନ** ବି, ସଂ ଦର୍ଶନ, ୨୫।୨

## ଧ

**ଧଇର୍ଯ୍ୟ** ବି, ସଂ ଧୈର୍ଯ୍ୟ, ୩୩୭।୨

**ଧନ** ବିଂ, ସଂ ଧନ୍ୟା, ୬୧୪।୧

**ଧବଳ** ବିଂ, ସଂ ଧବଳା, ୩୦୭।୧ ବିଶେଷ୍ୟରୂପେ ବ୍ୟବହୃତ, ଧବଳବର୍ଣ୍ଣା ଗଙ୍ଗା ।

**ଧର୍-** କ୍ରି, ସକ; ସଂ ଧୃ > ପ୍ରା ଧର୍, ୪୩୭।୧

**ଧଂସ୍-** କ୍ରି, ସକ, ସଂ ଧ୍ୱଂସ୍, ୮୨୪।୨

**ଧାଡକାର** ସଂ ଝଣ୍ଟିଡକାର > ଝାଡକାର >, ୭୪୧।୨

